# ଉତ୍କଳ ଖଣ୍ଡ ଓ ଆଠଗଡ଼



ଶ୍ରୀ ବୃନ୍ଦାବନ ନାୟକ

# ଉତ୍କଳ ଘଣ୍ଟ ଓ ଆଠଗଡ଼

ସଙ୍କଳନ :

**ଶ୍ରୀ ବୃନ୍ଦାବନ ନାୟକ**, ଏମ୍. ଏ. ବି. ଇଡ଼.
(ଅବସରପ୍ରାପ୍ତ ବିଜ୍ଞାନ ଶିକ୍ଷକ)
ଆଠଗଡ଼ ପାଟଣା, ଗଞ୍ଜାମ

ପ୍ରକାଶିକା :

**ଶ୍ରୀମତୀ ରତ୍ନମାଳା ନାୟକ**

ମୁଦ୍ରଣ :

**ତାରା ପ୍ରେସ୍**
ଫାୟାର ଷ୍ଟେସନ ରୋଡ଼, ବ୍ରହ୍ମପୁର-୭୬୦ ୦୦୧, ଗଞ୍ଜାମ

ଶୁଭମୁକ୍ତି :

**ପବିତ୍ର ବସନ୍ତ ପଞ୍ଚମୀ, ୨୦୦୩ ମସିହା**

ସାହିତ୍ୟାନୁରାଗୀ ବନ୍ଧୁଗଣ,

ଅଷ୍ଟଦୁର୍ଗ ତଥା ଆଠଗଡ଼ର ଐତିହ୍ୟ ଓ ଅବସ୍ଥିତି ଅତୀବ ବିଚିତ୍ରମୟ, ଚିତ୍ତାକର୍ଷକ, ମନମୁଗ୍‌ଧକର ଓ ହୃଦୟସ୍ପର୍ଶୀ । ଏହି ପାର୍ବତ୍ୟ ଭୂଖଣ୍ଡର ତିନି ପାର୍ଶ୍ୱରେ ସୁଉଚ୍ଚ ପର୍ବତ ଆଚ୍ଛାଦିତ ତମାଳ, ମାଳତୀ, କେତକୀ, ନାଗେଶ୍ୱର, ଚମ୍ପା, ଚୂତ ଓ କନିଅର ବନରାଜିର ଶ୍ୟାମାୟମାନ ମାଧୁରୀ । ଅନ୍ୟ ପାର୍ଶ୍ୱରେ ପ୍ରକୃତି ରାଣୀର ଗଳାହାର ଶତଦଳ ପଦ୍ମ ବିମଣ୍ଡିତ ମରାଳମାଳିନୀ ଗୁଞ୍ଜରିତ ମାନସରୋବର ସଦୃଶ୍ୟ ବିଶାଳ ରଘୁନାଥ ସାଗର ବା ଭିତର ସାଗରର ସ୍ୱର୍ଗୀୟ ସୁଷମା ପରିବେଷ୍ଟିତ ବସୁନ୍ଧରା ମଧ୍ୟସ୍ଥ 'ଗୋଠି ଝଡ଼ଙ୍କା ସାହି' ଯଦୁକୃଷ୍ଣ ମଢର ପରିବାର ମଧ୍ୟରେ ଜନ୍ମଗ୍ରହଣ କରି ଯଦୁମଣି ହୟଗ୍ରୀବ ମନ୍ତ୍ର ଉପାସନା ବଳରେ ସ୍ୱୟଂ ନାରଦଙ୍କୁ ହୟଗ୍ରୀବ ରୂପରେ ଦର୍ଶନ ଲାଭକରି ଅଲୌକିକ ପାଣ୍ଡିତ୍ୟର ଅଧିକାରୀ ହୋଇ ଅସାଧାରଣ କବିତ୍ୱ ପ୍ରତିଭା ମାଧ୍ୟମରେ ସାରା ଓଡ଼ିଶାରେ 'ଉତ୍କଳ ଭଣ୍ଡ' ନାମରେ ସୁବିଦିତ ।

ଏହି ପବିତ୍ର ଅଷ୍ଟଦୁର୍ଗ ଭୂଖଣ୍ଡର ଦାୟାଦ ହିସାବରେ ସେହି ମହାନ୍ କବି ଯଦୁମଣି ମହାପାତ୍ରଙ୍କ ସାହିତ୍ୟକୃତି ଓ ଆଠଗଡ଼ ଇତିହାସକୁ ଲୋକ ଲୋଚନରେ ପ୍ରକାଶ କରିବା ପାଇଁ ମନବଳାଇ ପୂର୍ବରୁ ପ୍ରଣୋଦିତ ଶ୍ରୀ ଚକ୍ରଧର ମହାପାତ୍ର ଓ ଶ୍ରୀ ହରିନାଥ ପଟ୍ଟନାୟକ ପ୍ରଭୃତି ଗ୍ରନ୍ଥକାରମାନଙ୍କ ଗ୍ରନ୍ଥର ସହାୟତାରେ ଆଶୁକବି ସାହିତ୍ୟ କଳାଚାହାଡ଼ ବୈତଣ୍ଡିକ ସ୍ୱର୍ଗତ ରାମକୃଷ୍ଣ ଦାଶ, ମୋର ପୂଜ୍ୟ ପିତୃଦେବ ସ୍ୱର୍ଗତ ବିନାୟକ ନାୟକଙ୍କ ଶୁଭାଶୀଷ, କବିସୂର୍ଯ୍ୟ ଉଚ୍ଚ ଇଂରାଜୀ ବିଦ୍ୟାଳୟ ସହକର୍ମୀ ବନ୍ଧୁଗଣ ଓ କବିସୂର୍ଯ୍ୟ ସାହିତ୍ୟ ସଂସଦର କର୍ମକର୍ତ୍ତାଙ୍କ ଆନ୍ତରିକ ଶୁଭେଚ୍ଛା କବିଙ୍କ ସାହିତ୍ୟକୃତି ଓ ଆଠଗଡ଼ ଇତିହାସ ସଂଗ୍ରହକରି "ଉତ୍କଳ ଭଣ୍ଡ ଓ ଆଠଗଡ଼" ନାମକ ପୁସ୍ତକ ଖଣ୍ଡିକ ସଂକଳନ କରିବାପାଇଁ ମୁଁ ସକ୍ଷମ ହୋଇପାରିଛି ।



# ଶ୍ରୀରାମଚନ୍ଦ୍ରାଷ୍ଟକ

ସୁଗ୍ରୀବ ମିତ୍ରଂ ପରମଂ ପବିତ୍ରଂ ସୀତାକଳତ୍ରଂ ନବମେଘ ଗାତ୍ରମ୍ ।
କାରୁଣ୍ୟପାତ୍ରଂ ଶତପତ୍ର ନେତ୍ରଂ ଶ୍ରୀରାମଚନ୍ଦ୍ରଂ ସତତଂ ନମାମି ॥
ସଂସାରସାରଂ ନିଗମ ପ୍ରଚାରଂ ଧର୍ମାବତାରଂ ହୃତ ଭୂମି ଭାରମ୍ ।
ସଦାଽବିକାରଂ ସୁଖସିନ୍ଧୁ ସାରଂ ଶ୍ରୀରାମଚନ୍ଦ୍ରଂ ସତତଂ ନମାମି ॥
ଲକ୍ଷ୍ମୀବିଳାସଂ ଜଗତାଂ ନିବାସଂ ଲଙ୍କା ବିନାଶଂ ଭୁବନ ପ୍ରକାଶମ୍ ।
ଭୂଦେବ ବାସଂ ଶରଦିନ୍ଦୁହାସଂ ଶ୍ରୀରାମଚନ୍ଦ୍ରଂ ସତତଂ ନମାମି ॥
ମନ୍ଦାରମାଳଂ ବଚନେ ରସାଳଂ ଗୁଣୈର୍ବିଶାଳଂ ହୃତସପ୍ତ ତାଳମ୍ ।
କ୍ରବ୍ୟାଦକାଳଂ ସୁରଲୋକପାଳଂ ଶ୍ରୀରାମଚନ୍ଦ୍ରଂ ସତତଂ ନମାମି ॥
ବେଦାନ୍ତଗାନଂ ସକଳୈଃ ସମାନଂ ହୃତାରିମାନଂ ତ୍ରିଦଶ ପ୍ରଧାନମ୍ ।
ଖଗେନ୍ଦ୍ରଯାନଂ ବିଗତା ବସାନଂ ଶ୍ରୀରାମଚନ୍ଦ୍ରଂ ସତତଂ ନମାମି ॥
ଶ୍ୟାମାଭିରାମଂ ନୟନାଭିରାମଂ ଗୁଣାଭିରାମଂ ବଚନାଭିରାମମ୍ ।
ବିଶ୍ୱପ୍ରଣାମଂ କୃତଭକ୍ତ କାମଂ ଶ୍ରୀରାମଚନ୍ଦ୍ରଂ ସତତଂ ନମାମି ।
ଲୀଳା ଶରୀରଂ ରଣରଙ୍ଗଧୀରଂ ବିଶ୍ୱୈକସାରଂ ରଘୁବଂଶ ହାରମ୍ ।
ଗମ୍ଭୀରନାଦଂ ଜିତସର୍ବବାଦଂ ଶ୍ରୀରାମଚନ୍ଦ୍ରଂ ସତତଂ ନମାମି ॥
ଖଲେ କୃତାନ୍ତଂ ସ୍ୱଜନେ ବିନୀତଂ ସାମୋପଗୀତଂ ମନସା ପ୍ରତୀତମ୍ ।
ରାଗେଣ ଗୀତଂ ବଚନାଦତୀତଂ ଶ୍ରୀରାମଚନ୍ଦ୍ରଂ ସତତଂ ନମାମି ॥
ଶ୍ରୀରାମଚନ୍ଦ୍ରସ୍ୟ ବରାଷ୍ଟକଂ ତ୍ୱାଂ ମୟେରିତଂ ଦେବ ମନୋହରଂ ଯେ ।
ପଠନ୍ତି ଶୃଣ୍ୱନ୍ତି ଗୃଣନ୍ତି ଭକ୍ତ୍ୟା ତେ ସ୍ୱୀୟ କାମାନ ପ୍ରଲଭନ୍ତି ନିତ୍ୟମ୍ ॥

ଇତି ଶ୍ରୀରାମଚନ୍ଦ୍ରାଷ୍ଟକଂ ସମ୍ପୂର୍ଣ୍ଣମ୍

ନମସ୍ତେ ବ୍ରହ୍ମ ରୂପାୟ ବିଷ୍ଣୁ ରୂପାୟତେ ନମଃ
ନମସ୍ତେ ରୁଦ୍ର ରୂପାୟ କର ରୂପାୟତେ ନମଃ ।

ବିଶ୍ୱରୂପ ସ୍ୱରୂପାୟ ନମସ୍ତେ ବ୍ରହ୍ମଚାରିଣେ
ଭକ୍ତ ପ୍ରିୟାୟ ଦେବାୟ ନମୋଽସ୍ତୁଭ୍ୟଂ ବିନାୟକ ।

ଲମ୍ବୋଦର ନମସ୍ତୁଭ୍ୟଂ ସତତୋ ମୋଦକପ୍ରିୟ
ନିର୍ବିଘ୍ନ କରମେ ଦେବ ସର୍ବ କାର୍ଯ୍ୟେଷୁ ସର୍ବଦା ।

•

ଦେବ ଦେବ ଜଗନ୍ନାଥ ପ୍ରପନ୍ନାର୍ତ୍ତି ବିନାଶନଂ
ତ୍ରାହିମାଂ ପୁଣ୍ଡରୀକାକ୍ଷଂ ପତିତଂ ଭବସାଗରେ ।

ଜଗଦାନନ୍ଦ କନ୍ଦାୟ ପ୍ରଣତାର୍ତ୍ତି ହରାୟଚ
ନୀଳାଚଳ ନିବାସାୟ ଜଗନ୍ନାଥାୟତେ ନମଃ ।

# ସୂଚୀପତ୍ର







# ଶ୍ରୀ ଜଗନ୍ନାଥ ଜଣାଣ

( ରାଗ-ପଞ୍ଚମ ବରାଡ଼ି, ତାଳ-ତ୍ରିପୁଟା )

ଅଖିଳ ବ୍ରହ୍ମାଣ୍ଡ ନାଥ ଅନ୍ତର୍ଯାମୀ ଜଗନ୍ନାଥ
ଅନ୍ତରରୁ କଳଙ୍କ ଅନ୍ତର
ଅନାଥର ବନ୍ଧୁ ପଣେ ଅବନୀରେ ନାହିଁ ଜଣେ
ଅହିତ ନାଶନେ ବଳିଆର
ହେ, ଅଣାକାର !
ଅବିରତେ ତୁମ୍ଭ ନାମ ଗାଇ ଅମର ପୁର ଲଭିଲେ ଯାଇ
ଅକୁଣ୍ଠିତ ନୋହି ମୋରେ ଅବହେଳେ ତାର ବାରେ
ଅଚିରେ କରୁଣା ନାବେ ନେଇ । ହେ, ଅଣାକାର । ୧ ।

ଆରତ ଭଞ୍ଜନ ହରି ଆତୁରେ ନାମ ଉଚ୍ଚରି
ଆରମ୍ଭ କରେ ଯେ ନିଶିଦିନ
ଆଦରେ ସେ ପଦେ ଧାୟି ଆଜୀବନ ଭଜୁଥାଇ
ଆର୍ତ୍ତତ୍ରାଣ କରନ୍ତି କାରଣ
ସେ, ଆର୍ତ୍ତବନ୍ଧୁ !
ଆଦି ଅନ୍ତ କେବା ପାରେ କଳି ଆଶିଷ ପ୍ରଦାନେ ମହାବଳୀ
ଆଜ୍ଞାରେ ଜୀବ ଚଳଇ ଆତଜାତ ହେଉଥାଇ
ଆଦରେ ଜଗତ ଜନ ପାଳି । ସେ, ଆର୍ତ୍ତବନ୍ଧୁ । ୨ ।

# ଅଷ୍ଟଦୁର୍ଗ ନୀଳାଦ୍ରୀ ବଡଦେଉଳ

ଆଠଗଡ଼ ଇତିହାସରୁ ଜଣାଯାଏ ଯେ, ଗୋପୀନାଥ ହରିଚନ୍ଦନ ଜଗଦେବ ୨୭ ବର୍ଷ ବୟସରେ ମୃତ୍ୟୁ ବରଣ କରିଥିଲେ । ସେତେବେଳକୁ ତାଙ୍କର ଭାଇ ରଘୁନାଥଙ୍କୁ ୨୪ ବର୍ଷ ବୟସ ହୋଇଥିଲା । ଗୋପୀନାଥଙ୍କ ପରେ ରଘୁନାଥ ୧୭୧୨ ଖ୍ରୀଷ୍ଟାବ୍ଦରେ ଅଷ୍ଟଦୁର୍ଗ ରାଜସିଂହାସନ ଆରୋହଣ କରିଥିଲେ । ରଘୁନାଥ ଅତ୍ୟନ୍ତ ଗୁଣବାନ, ସୁଚତୁର, ପ୍ରଗାଢ଼ ବୁଦ୍ଧିମତା, ଦୂରଦର୍ଶୀ, ଅଦ୍ୱିତୀୟ ପରାକ୍ରମୀ, ସାହସୀ, ଧାର୍ମିକ, ଚିନ୍ତନଶୀଳ, ପ୍ରଜାବତ୍ସଳ ଓ ବିଶ୍ୱର ମନ୍ତ୍ରଣାରେ ଅସାଧାରଣ ଶକ୍ତିସମ୍ପର୍ଣ୍ଣ ଥିଲେ । ସକଳ ଗୁଣର ଅଧିକାରୀ ହୋଇଥିବାରୁ ଅଳ୍ପଦିନ ମଧ୍ୟରେ ରାଜ୍ୟରେ ଓ ରାଜ୍ୟ ବାହାରେ ସୁନାମ ଅର୍ଜନ କରି ପାରିଥିଲେ ।

ରାଜତ୍ୱର କିଛିଦିନ ପରେ ରଘୁନାଥ ଶ୍ରୀକ୍ଷେତ୍ରକୁ ଯାଇ ଜଗତ୍ ଠାକୁର ଶ୍ରୀଜଗନ୍ନାଥ ଓ ପୁରୀ ଜଗପତିଙ୍କୁ ଦର୍ଶନ କରିବାକୁ ଶୁଭବେଳ ଦେଖି ଧନ ରତ୍ନ ସହ ରାଜ୍ୟର ଶାସନଭାର ପାତ୍ରଙ୍କୁ ଅର୍ପଣ କରି ଶ୍ରୀକ୍ଷେତ୍ର ପୁରୁଷୋତ୍ତମକୁ ଯାତ୍ରା କରିଥିଲେ । ସେତେବେଳେ ଗଜପତି ମୁକୁନ୍ଦଦେବ ଉତ୍କଳର ସିଂହାସନ ଆରୋହଣ କରିଥିଲେ । ଗଜପତି ମୁକୁନ୍ଦଦେବ ରଘୁନାଥଙ୍କୁ ସାଦରେ ରାଜ୍ୟର କୁଶଳବାର୍ତ୍ତା ପଚାରି ଶ୍ରୀକ୍ଷେତ୍ରରେ କିଛିଦିନ ରହିବାକୁ ଅନୁରୋଧ କରିଥିଲେ । ରଘୁନାଥ କିଛିଦିନ ଶ୍ରୀକ୍ଷେତ୍ରରେ ରହି ଜଗନ୍ନାଥଙ୍କୁ ଦର୍ଶନ କରି ନିଜକୁ ଭାଗ୍ୟବାନ ମନେ କରିଥିଲେ । ଶ୍ରୀଜଗନ୍ନାଥଙ୍କ ସେବାପୂଜା ଓ ରୀତିନୀତିରେ ବିଭୋର ହୋଇ ପଡ଼ିଥିଲେ । ଶ୍ରୀକ୍ଷେତ୍ରରୁ ଫେରି ଅଷ୍ଟଦୁର୍ଗରେ ସେହିପରି ଏକ ମନ୍ଦିର ନିର୍ମାଣ କରାଇ ଠାକୁରମାନଙ୍କୁ ସ୍ଥାପନ କରି ଶ୍ରୀକ୍ଷେତ୍ରର ରୀତି ନିୟମ ପ୍ରକାରେ ପୂଜାର୍ଚ୍ଚନା କରିବା ପାଇଁ ମନସ୍ଥ କରିଥିଲେ । ରାଜା ରଘୁନାଥ ଶ୍ରୀକ୍ଷେତ୍ରର ଗଜପତିଙ୍କ ଠାରୁ ସ୍ୱୀକୃତି ଲାଭକରି ଅଷ୍ଟଦୁର୍ଗକୁ ଫେରି ଆସିଲେ ।

ରଘୁନାଥ ହରିଚନ୍ଦନ ଜଗଦେବ ଅଷ୍ଟଦୁର୍ଗରେ ପଦାର୍ପଣ କରି ନଗରର ଆରାଧ୍ୟ ଦେବୀ ଘରମୁଣ୍ଡୀ ଠାକୁରାଣୀ ବା ଭଣ୍ଡୀ ଠାକୁରାଣୀଙ୍କ ନିକଟରେ ନିଜ ରାଜ୍ୟରେ କପରି ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ମନ୍ଦିର ନିର୍ମାଣ ଓ ସେବା ପୂଜା ଶ୍ରୀକ୍ଷେତ୍ରର ନୀତି ନିୟମ ରୂପେ ପାଳିତ ହେବ ସେଥିପାଇଁ ନିବେଦନ କରି ଠାକୁରାଣୀଙ୍କ କଞ୍ଚିତ ଫଳକ ଲାଭ କରିଥିଲେ ।

ରାଜା ରଘୁନାଥ ହରିଚନ୍ଦନ ଜଗଦେବ ଅଷ୍ଟଦୁର୍ଗରେ ଜଗନ୍ନାଥ ମନ୍ଦିର ନିର୍ମାଣ କରିବା ପାଇଁ ରାଜଗୁରୁଙ୍କୁ ଡାକି ଏହି ଉପରେ ପରାମର୍ଶ କରିଥିଲେ । ମନ୍ଦିର ନିର୍ମାଣ ଓ ମନ୍ଦିର ମଧ୍ୟରେ ଦାରୁବ୍ରହ୍ମ ସ୍ଥାପନ କରିବା ପାଇଁ ରାଜଗୁରୁଙ୍କୁ ଅନୁରୋଧ କରିଥିଲେ । ରାଜଗୁରୁ ପାଞ୍ଜିଆଙ୍କୁ ଡାକି ଶୁଭଦିନ ସ୍ଥିର କରିବା ପାଇଁ କହିଥିଲେ । ପାଞ୍ଜିଆ ଗଣନାକରି ବୈଶାଖ ମାସ, ଶୁକ୍ଳପକ୍ଷ ଦ୍ୱିତୀୟା, ରବିବାର, ରୋହିଣୀ ନକ୍ଷତ୍ର ଦିନ ଦଶ ଦଣ୍ଡକୁ ମହେନ୍ଦ୍ର ଲଗ୍ନ ଦେଖି ଯୋଗ ନିରୂପଣ କରିଥିଲେ ।

## ନୀଳଚକ୍ରସ୍ଥ ଖୋଦିତ ଲିପିରୁ—

"ରାମନାମ ମହୀପତେ ଯଦୁନ୍ଦସ୍ୟେ ପୂର୍ବାଚଳେ ଚନ୍ଦ୍ରମା
ଦେବାସ୍ୟ ସୁଷୁଦେ ସୁଧାକର ମିଦ ପ୍ରାଚୀକଳା କୋମଳଂ ।"

ପଞ୍ଚାଶୋତ୍ତର ଷୋଳଶତ ଶତାବ୍ଦରେ ଏହି ଦେଉଳ ରଘୁନାଥ ନରସାଇଁ ନିର୍ମାଣ କରିଥିଲେ ।

ଗୃହଦେବସ୍ୟଗୁରୁ, ବଶିପାଟଯୋଶୀ ଦୁହିଁଙ୍କୁ ଦକ୍ଷିଣା ଦେଇ ମନତୋଷ କରିଥିଲେ । ମଦନ ପଟ୍ଟନାୟକଙ୍କୁ ଦେଉଳ କାର୍ଯ୍ୟ ପରିଚାଳନା କରିବା ପାଇଁ ନିଯୁକ୍ତ କରିଥିଲେ । କାରିଗରମାନଙ୍କୁ ଆଦେଶ ଦେଇ ରାଜାଙ୍କ ପ୍ରତିମୂର୍ତ୍ତି ଓ ରାଣୀଙ୍କ ପ୍ରତିମୂର୍ତ୍ତି ରାଜବେଶ ଢଙ୍ଗରେ ନିର୍ମାଣ କରାଇଥିଲେ । ରାଜାଙ୍କ ପ୍ରତିମୂର୍ତ୍ତି ଦୁଇହାତ ଯୋଡ଼ି ଠାକୁରଙ୍କୁ ପ୍ରଣାମ କଲାପରି ଓ ରାଣୀଙ୍କ ପ୍ରତିମୂର୍ତ୍ତି ଠାକୁରଙ୍କ ନିକଟରେ ଚାମର ଧରି ଶ୍ରୀଚରଣ ସେବା କଲାପରି ରତ୍ନସିଂହାସନ ତଳେ ସ୍ଥାପନ କରାଯାଇଛି ।

ରାଜଗୁରୁ ସକଳ ପ୍ରକାର ବିଧିବିଧାନର ଆୟୋଜନ କରିବା ପାଇଁ ରାଜ କର୍ମଚାରୀଙ୍କୁ କହିଥିଲେ । ପ୍ରଥମେ ମନ୍ଦିରର ସ୍ଥାନଟିକୁ ଶୁଦ୍ଧ କରାଗଲା । ବୀଜ ବୁଣାଗଲା, ବୀଜ ଅଙ୍କୁର ହେବାରୁ ପାଣାପାର୍ଦ୍ଧ କରାଗଲା । ସେହି ସମୟରେ ଶିଳ୍ପୀକାର ଆନନ୍ଦ ମହାରଣାଙ୍କୁ ଦୂତ ପଠାଇ ଡକାଇ ଅଣାଗଲା । ମନ୍ଦିର ନିର୍ମାଣ କଥାଶୁଣି ଆନନ୍ଦ ମହାରଣା ପରମ ଆନନ୍ଦରେ ରାଜ୍ୟମଧ୍ୟରୁ ବିଭିନ୍ନଗ୍ରାମରୁ ବହୁତ ବାନ୍ଧାଣି ଡକାଇଥିଲେ । ନୂତନ ଦାରୁମୂର୍ତ୍ତି ନିର୍ମାଣ କରିବା ପାଇଁ ଶ୍ରୀକ୍ଷେତ୍ରରୁ ଦୁଇଜଣ ବିଶ୍ୱକର୍ମାଙ୍କୁ ଡକାଇ ଅଣାଯାଇ ଥିଲା । ସେହି ବିଶ୍ୱକର୍ମା ଦୁଇଜଣ ତିନି ଠାକୁରଙ୍କ ମୂର୍ତ୍ତିମାନଙ୍କୁ ଗଠନ କରିଥିଲେ । ରାଜା ରଘୁନାଥ ସେମାନଙ୍କୁ ଘର, ଜମି ଓ ଜାଗିର ପ୍ରଭୃତି ପ୍ରଦାନ କରିଥିଲେ । ସେ ଦୁହେଁ ପରିବାର ସହ ଅଷ୍ଟଦୁର୍ଗର ସ୍ଥାୟୀବାସିନ୍ଦା ହୋଇଥିଲେ । ଅଷ୍ଟଦୁର୍ଗସ୍ଥିତ ଗୋଟି ଝଡ଼କା ସାହିରେ ସେ ମାନେ ବସତି ସ୍ଥାପନ କରିଥିଲେ । ଶ୍ରୀକ୍ଷେତ୍ରରୁ ଆସିଥିବାରୁ ସେମାନଙ୍କୁ ମର୍ଯ୍ୟାଦା ସହ ରଖାଯାଇ ଥିଲା । କାଳକ୍ରମେ ସେମାନଙ୍କ ମଧ୍ୟରୁ ଆର୍ତ୍ତବନ୍ଧୁ ମହାପାତ୍ରଙ୍କ ସମ୍ପତ୍ତି ସରିଆସିଲା । ଏଣେ ତାଙ୍କର କୌଣସି ପୁତ୍ର ସନ୍ତାନ ଜାତ ହୋଇ ନଥିଲେ । ଉକ୍ତ ପରିବାର ଶେଷରେ ରଘୁମଣି ନାମକ ଏକ ପିଲାକୁ ପୋଷ୍ୟ ପୁତ୍ର କରି ସେହି ଗୋଟି ଝଡ଼କା ସାହିରେ ରହିଥିଲେ । କିଛିଦିନ ପରେ ଆର୍ତ୍ତବନ୍ଧୁ ମହାପାତ୍ରଙ୍କର ମୃତ୍ୟୁଘଟିଥିଲା । ଆଶ୍ଚର୍ଯ୍ୟର କଥା ଦ୍ୱିତୀୟ ପରିବାରଙ୍କ ବଂଶଟି ପଦ୍ମବନ ପରି ବଢ଼ିଚାଲିଲା । କାଳକ୍ରମେ ସେମାନେ ସୁବିଧାରେ ପଥର ପାଇବାରୁ ମୂର୍ତ୍ତି ତିଆରି କରିବା ପାଇଁ ପୋଲସରା ନିକଟବର୍ତ୍ତୀ ମଥୁରା ଗ୍ରାମରେ ବସବାସ କରି ରହିଥିଲେ । ବର୍ତ୍ତମାନସୁଦ୍ଧା ସେହି ପରିବାରଙ୍କ ବଂଶଧରମାନେ ମଥୁରାରେ ରହି ବିଭିନ୍ନ ପ୍ରକାର ପଥର ମୂର୍ତ୍ତି ତିଆରି କରୁଛନ୍ତି ଯାହାକି ଆଜି ଓଡ଼ିଶାର ସର୍ବତ୍ର ସୁପରିଚିତ ।

## ରଘୁମଣିଙ୍କ ବଂଶ ପରିଚୟ—

ଅଷ୍ଟଦୁର୍ଗର ତତ୍କାଳୀନ ରାଜା ରଘୁନାଥ ହରିଚନ୍ଦନ ଜଗଦ୍ଦେବ ଶିଳ୍ପୀକାର ରଘୁମଣି ମହାପାତ୍ରଙ୍କୁ ପାଟଶାଢ଼ୀ ପୌଟିଣ୍ଡ ପ୍ରଦାନ କରି ତାଙ୍କଦ୍ୱାରା ରାଧାବଲ୍ଲଭ ମୂର୍ତ୍ତି ଖୋଦିତ କରାଇ ସୁବିଧାରେ ଚଳିବା ପାଇଁ

ଭୂସମ୍ପତ୍ତି ଦାନ କରିଥିଲେ । ରଘୁନାଥ ହରିଚନ୍ଦନ ଜଗଦ୍ଦେବଙ୍କ ନାତି ମଧୁସୂଦନ ହରିଚନ୍ଦନ ଜଗଦ୍ଦେବ, ରଘୁମଣିଙ୍କ ଭୂସମ୍ପତ୍ତିର କୌଣସି ସନନ୍ଦ ନଥିବାରୁ ଏଣେ ରଘୁମଣିଙ୍କ ଜ୍ଞାତିଶତ୍ରୁଙ୍କ କୁମନ୍ତ୍ରଣାରେ ପ୍ରଭାବିତ ହୋଇ ରଘୁମଣିଙ୍କୁ ଦିଆଯାଇଥିବା ଭୂସମ୍ପତ୍ତିକୁ ଖାରଜ କରିଦେଲେ । ଯା'ଫଳରେ ରଘୁମଣି ନିରୁପାୟ ହୋଇ ଆଠଗଡ଼ ପରିତ୍ୟାଗ କରି ରଣପୁର ନରେନ୍ଦ୍ରଙ୍କ ଆଶ୍ରୟରେ ସୁନାଖଳା ଗ୍ରାମରେ ଅବସ୍ଥାନ କଲେ ଓ କିଛିଦିନ ପରେ ସେ ମୃତ୍ୟୁବରଣ କଲେ ।

ରଘୁମଣିଙ୍କ ଯୁବକ ପୁତ୍ର ମୁକୁନ୍ଦ ମହାପାତ୍ର ତାଙ୍କ ବିଧବା ମାତାଙ୍କୁ ଧରି ପୁଣି ଆଠଗଡ଼କୁ ଫେରଆସିଲେ । ସେତେବେଳକୁ ଆଠଗଡ଼ରେ ମଧୁସୂଦନଙ୍କ ପୁତ୍ର ବୃନ୍ଦାବନ ହରିଚନ୍ଦନ ଜଗଦ୍ଦେବ ରାଜଗାଦି ଅଳଂକୃତ କରିଥିଲେ । ସେ ଜଣେ ଦୟାଳୁ ଓ ପରୋପକାରୀ ପ୍ରଜାବତ୍ସଳ ରାଜାଥିଲେ । ମୁକୁନ୍ଦ ମହାପାତ୍ର ତାଙ୍କ ବିଧବା ମାତାଙ୍କ ସହ ରାଜାଙ୍କ ଶରଣାପନ୍ନ ହୋଇଥିଲେ । ରାଜାଙ୍କ ଆଶ୍ରୟ ଲଭକରି ମୁକୁନ୍ଦ ମହାପାତ୍ର ଆଠଗଡ଼ରେ ପଥରରେ ବିଭିନ୍ନ ପ୍ରକାର ମୂର୍ତ୍ତି ଖନନ କରି ସମସ୍ତଙ୍କ ଦ୍ୱାରା ଆଦୃତ ହୋଇ ସୁଖିଦୁଃଖିରେ ଜୀବନଯାପନ କରିବାକୁ ଲାଗିଲେ ।

ମୁକୁନ୍ଦ ମହାପାତ୍ର ରଣପୁର ଗଡ଼ ନିବାସୀ ଯୋଗୀ ରତ୍ନଙ୍କ କନ୍ୟା ଶୋଭାଦେବୀଙ୍କୁ ବିବାହ କରିଥିଲେ । ଶୋଭାଦେବୀ ଯେପରି ସୁନ୍ଦରୀ ସେହିପରି ଗୁଣବତୀ ଥିଲେ । ତେଣୁ ଶାଶୁ ତାଙ୍କୁ ନିଜ କନ୍ୟା ଠାରୁ ଅଧିକ ସ୍ନେହ କରୁଥିଲେ । ମୁକୁନ୍ଦ ଓ ଶୋଭାଦେବୀ ହେଲେ ସଦୁମଣିଙ୍କ ପିଅର ଓ ଜନନୀ । ମୁକୁନ୍ଦ ମହାପାତ୍ର ପଥର ଦେହରେ ସୁନ୍ଦର ସୁନ୍ଦର ମୂର୍ତ୍ତି ଗଢ଼ିବା ଓ କାଠର ପ୍ରତିମା ନିର୍ମାଣ କରି ବିଗ୍ରହମାନଙ୍କୁ ଚିତ୍ରଣ କରିବା ଇତ୍ୟାଦି କୌଳିକ ବୃତ୍ତିରେ ନିପୁଣ ଥିଲେ । ଏତଦ୍ ବ୍ୟତୀତ ବିଭିନ୍ନ ମନ୍ଦିର ଗାତ୍ରରେ ଉପାଖ୍ୟାନ ଚିତ୍ରଣ କରିବାରେ ମଧ୍ୟ ସିଦ୍ଧହସ୍ତ ଥିଲେ ।

୧୭୭୫ ଖ୍ରୀଷ୍ଟାବ୍ଦ ବେଳକୁ ମୁକୁନ୍ଦ ମହାପାତ୍ର ଅଷ୍ଟଦୁର୍ଗରେ ବିଶେଷ ପ୍ରତିପତ୍ତିଶାଳୀ ହୋଇ ପାରିଥିଲେ । ସେ ବିବାହ କରିବାର ପାଞ୍ଚବର୍ଷ

ବହୁତ ଯାଇଥିଲେ ମଧ୍ୟ ତାଙ୍କର କୌଣସି ସନ୍ତାନ ହୋଇ ନଥିବାରୁ ସେ ଦୁଃଖରେ ମ୍ରିୟମାଣ ହୋଇ ପଡ଼ିଥିଲେ । ଏହା ଦେଖି ମୁକୁନ୍ଦଙ୍କ ମାଆ ଦୁଲଣା ମଧ୍ୟ ଭାରି ଚିନ୍ତିତ ରହୁଥିଲେ । ଦୁଲଣା ହେଉଛନ୍ତି ଦଶପଲ୍ଲ ଗଡ଼ର ଝିଅ । ବୋହୂ ଶୋଭାର ଚିନ୍ତିତ ଭାବ ଦେଖି, ଦୁଲଣା ଶୋଭାଙ୍କୁ କୌଣସି କାମ କରିବାକୁ ଦେଉନଥିଲେ । କାଳକ୍ରମେ ଘରେ ଧନସମ୍ପଦ ବଢ଼ିବାରେ ଲାଗିଥାଏ । କିନ୍ତୁ ଯାହାପାଇଁ ଘର ସୁନ୍ଦର, ତାହାର ଅଭାବ ସମସ୍ତଙ୍କ ହୃଦୟରେ ଦୁଃଖ ଭରି ଦେଉଥାଏ । ଏଣେ ଲୋକମାନେ କହନ୍ତିଯେ ଠାକୁର ବିଗ୍ରହ ଗଢ଼ିଲେ ଲୋକର ବଂଶରେ ତିନି ପୁରୁଷ ଯାଏଁ କେହି ରହିବେ ନାହିଁ । ଲୋକଙ୍କ ମୁହଁରୁ ଏପରି କଥା ଶୁଣି ଦୁଲଣାଙ୍କ ହୃଦୟ ଭୟରେ ଥରି ଯାଉଥାଏ । ଯେଉଁ ଦୁଇଜଣ ଚିତ୍ରକାର ପୁରୀରୁ ଆସି ଅଷ୍ଟଦୁର୍ଗରେ ଜଗନ୍ନାଥ ବିଗ୍ରହ ତିଆରି କରିଥିଲେ, ସେଥି ମଧ୍ୟରୁ ଜଣଙ୍କର ବଂଶ ପ୍ରକାରାନ୍ତରେ ବଢ଼ି ଚାଲିଥିଲେ ମଧ୍ୟ ସେହି ବଂଶରେ କେତେକ ବିଧବା ସ୍ତ୍ରୀ ରହୁଥିବାର ଦେଖିବାକୁ ମିଳୁଥିଲା । ତେଣୁ ଦୁଲଣାଙ୍କ ମନରେ ଗଭୀର ବିଶ୍ୱାସ ଥିଲା ଯେ ଦିନେ ନା ଦିନେ ଠାକୁର ନିଶ୍ଚୟ ତାଙ୍କ ଡ଼ାକ ଶୁଣି ମନସ୍କାମନା ପୂର୍ଣ୍ଣ କରିବେ ।

ମୁକୁନ୍ଦ ମହାପାତ୍ର ରହୁଥିବା ସାହିର ଦୁଇ ପାର୍ଶ୍ୱରେ ଦୁଇଟି ପୋଖରୀ ଅବସ୍ଥିତ । ସେହି ସାହିର ଅନତି ଦୂରରେ କେତକୀଝର ପୋଖରୀ । ସେହି ପୋଖରୀଟି ବଡ଼ ଆକୃତି ଓ ନିର୍ମଳ ଝରପାଣି ଦ୍ୱାରା ଆବୃତ । ଅନ୍ୟଟି ପଦୁଗଡ଼ିଆ ନାମରେ ପରିଚିତ । ଦୁଲଣା ପ୍ରତିଦିନ ଭୋରରୁ ବୋହୂ ଶୋଭାଙ୍କୁ ସଙ୍ଗରେ ଧରି କେତକୀଝର ପୋଖରୀକୁ ସ୍ନାନ କରିବା ପାଇଁ ଯାଆନ୍ତି । ସେହି ପୋଖରୀ କୂଳରେ ଶିବ ମନ୍ଦିରଟିଏ ଅବସ୍ଥିତ । ସ୍ନାନ ସାରି ଠାକୁରଙ୍କୁ ଦର୍ଶନ କରି ଆସନ୍ତି । ବେଳେବେଳେ ଶୋଭାଙ୍କର ଡେରି ହୋଇଗଲେ ସେହି ପୋଖରୀକୁ ନଯାଇ ସାହିର ଅନ୍ୟ ସ୍ତ୍ରୀମାନଙ୍କ ସହ ମିଶି ପଦୁଗଡ଼ିଆ ପୋଖରୀକୁ ସ୍ନାନ କରିବାକୁ ଚାଲିଯାଆନ୍ତି ।

## ପଦୁମଣିଙ୍କ ଜନ୍ମ—

ଦୁଇବର୍ଷ ହେଲା ପଦୁଗଡ଼ିଆ ପୋଖରୀ ପୂର୍ବପଟ ହିଡ଼ ଉପରେ ଜଣେ ପଶ୍ଚିମା ବୈଷ୍ଣବୀ ମାତା ଗୋଟିଏ ଛୋଟ ମନ୍ଦିରଟିଏ ନିର୍ମାଣ କରାଇ ସେହି

ମନ୍ଦିର ମଧ୍ୟରେ ଏକ ଦାରୁ ନିର୍ମିତ କୃଷ୍ଣମୂର୍ତ୍ତିକୁ ସେ ପୂଜା କରୁଥାନ୍ତି । ସେହି ମୂର୍ତ୍ତିର ନାମ 'ଯଦୁକୃଷ୍ଣ' ବୋଲି ସେ କହୁଥାନ୍ତି । ସେହି ପୋଖରୀକୁ ସ୍ନାନ କରିବାକୁ ଆସୁଥିବା ଝିଅ, ବୋହୂମାନଙ୍କୁ ବୈଷ୍ଣବୀମାତା ଅତ୍ୟନ୍ତ ସ୍ନେହ ପ୍ରଦର୍ଶନ କରି ନିଜ ଘରେ ଯଦୁକୃଷ୍ଣଙ୍କୁ ଦର୍ଶନ କରାଉଥାନ୍ତି । ଶୋଭାଦେବୀ ପ୍ରତିଦିନ ସେଠାକୁ ସ୍ନାନ କରିବାକୁ ଯାଉଥିବାରୁ ତାଙ୍କୁ ଅଧିକ ସ୍ନେହ କରୁଥାନ୍ତି । ଶୋଭା ଟିକିଏ ଅଳସେଇ ହେଲେହେଁ ସ୍ନାନପରେ ଯଦୁକୃଷ୍ଣ ଠାକୁରଙ୍କୁ ଦର୍ଶନ ନ କରି ଘରକୁ ଫେରନ୍ତି ନାହିଁ । ସନ୍ତାନହୀନା ସମସ୍ତଙ୍କ ଦ୍ୱାରା ଅପମାନିତା ଶୋଭା ନିଜର ଅନ୍ତରର ଦୁଃଖ ଏହି ଯଦୁକୃଷ୍ଣଙ୍କ ନିକଟରେ ପ୍ରତିଦିନ ଜଣାଇ ଫେରୁଥାନ୍ତି । ଏହିପରି କିଛିଦିନ ବିତିଯିବା ପରେ ହଠାତ୍ ଶୋଭାବତୀ ହେଲେ ଗର୍ଭବତୀ । ଗର୍ଭରେ ଛୁଆକୁ ପାଞ୍ଚମାସ ହେବା ବେଳକୁ ରାଜ୍ୟରେ ଘୋର ଦୁର୍ଭିକ୍ଷ ଦେଖାଦେଲା । ଏହି ପରିସ୍ଥିତିରେ ରାଜା ବୃନ୍ଦାବନ ହରିଚନ୍ଦନ ଜଗଦେବ ନିଜକୁ ଅସହାୟ ମନେ କରୁଥିଲେ । ରାଜ୍ୟର ସବୁ ସ୍ଥାନରେ ଚୋରି, ଡକାୟତି ଲାଗିରହିଲା । ପ୍ରଜାମାନେ ସର୍ବଦା ଅଶାନ୍ତିରେ କାଳାତିପାତ କରୁଥାନ୍ତି । ଗ୍ରାମ ଗ୍ରାମ ମଧ୍ୟରେ ଅସନ୍ତୋଷର ବହ୍ନି ଜଳିବାକୁ ଲାଗିଲା । ଅନାହାରରେ ମୃତ୍ୟୁ ସାଙ୍ଗକୁ ଯେଉଁମାନଙ୍କ ଅବସ୍ଥା ମଳିନ ସେମାନଙ୍କ ଉପରେ ଉପଦ୍ରବ ଦେଖି ରାଜା କିଂକର୍ତ୍ତବ୍ୟ ବିମୂଢ଼ ହୋଇ ପଡ଼ିଲେ ।

ଦିନେ ଶିରକାର ମୁକୁନ୍ଦ ମହାପାତ୍ରଙ୍କ ଗୃହରେ ଡକାୟତମାନେ ପଶି ତାଙ୍କୁ ମାଡ଼ମାରି ସର୍ବସ୍ୱ ଲୁଣ୍ଠନ କରି ନେଇଗଲେ । ଏଥିରେ ବିଚଳିତ ହୋଇ ମୁକୁନ୍ଦ ମହାପାତ୍ର ହତୋତ୍ସାହ ହୋଇ ପଡ଼ିଲେ । ଏପରି ଅବସ୍ଥାରେ ରାଜା ଅନୁଗ୍ରହ କରିବେ ବୋଲି ସେ ମନେ ମନେ ଚିନ୍ତା କରୁଥାନ୍ତି । କିନ୍ତୁ ତାଙ୍କର ଏହି ଆଶା ମଉଳିଗଲା, କାରଣ ରାଜ ଦରବାରରେ ମଧ୍ୟ ଡକାୟତମାନେ ପଶି ଧନସମ୍ପତ୍ତି ଲୁଣ୍ଠନ କରିନେଲେ । ଲୋକମାନଙ୍କ ମଧ୍ୟରେ ଆତଙ୍କ ଖେଳିଗଲା । ରାଜ୍ୟର ଏପରି ଅବସ୍ଥା ଦେଖି ରାଜପୁତ୍ର ଧନଞ୍ଜୟ ଗୋଟିଏ ପାଇକ ଦଳ ଗଠନ କଲେ ଡକାୟତମାନଙ୍କ ଆତଙ୍କରୁ ରାଜ୍ୟକୁ ରକ୍ଷା କରିବା ପାଇଁ । ଏହି ପାଇକ ଦଳ ଡକାୟତମାନଙ୍କୁ ଧରି ପାରି ନଥିଲେ କି ଲୁଣ୍ଠନ ହୋଇଥିବା ସମ୍ପତ୍ତି ମଧ୍ୟ ଉଦ୍ଧାର କରିପାରି

ନଥିଲେ । କିନ୍ତୁ ଆଶ୍ଚର୍ଯ୍ୟର କଥା ସେହିଦିନ ଠାରୁ ଯଦୁକୃଷ୍ଣ ମନ୍ଦିରରେ ରହିଆସୁଥିବା ବୈଷ୍ଣବୀ ମାତାଙ୍କର କୌଣସି ସନ୍ଧାନ ମିଳିଲାନାହିଁ ।

ପୂର୍ବଦିନମାନଙ୍କ ପରି ଶୋଭାଦେବୀ ପଦ୍ମଗଡ଼ିଆ ପୋଖରୀରେ ସ୍ନାନ ସମାପନ କରି ଯଦୁକୃଷ୍ଣଙ୍କ ମନ୍ଦିରକୁ ଯାଇ ଠାକୁରଙ୍କୁ ଫୁଲ ଚନ୍ଦନାଦି ଦ୍ୱାରା ସଜାଇ ଦିଅନ୍ତି । ଯାହାମିଳେ ତାହା ଠାକୁରଙ୍କୁ ଭୋଗ ଦିଅନ୍ତି । ଯଦୁକୃଷ୍ଣଙ୍କ ଉପରେ ଶୋଭାଦେବୀଙ୍କ ପ୍ରଗାଢ଼ ଭକ୍ତି । ତେଣୁ ବୈଷ୍ଣବୀ ମାତାଙ୍କ ପରେ ସେ ଠାକୁରଙ୍କ ପୂଜାର୍ଚ୍ଚନା ବଡ଼ ଭୋରରୁ ସାରି ଫେରି ଆସୁଥାନ୍ତି । ସାହିର ଅନ୍ୟମାନେ ପୋଖରୀକୁ ସ୍ନାନ କରିବାକୁ ଗଲେ ଦେଖନ୍ତି ଠାକୁରଙ୍କ ପୂଜାର୍ଚ୍ଚନା ସରିଯାଇଛି । ତେଣୁ ଲୋକଙ୍କ ମନରେ ସନ୍ଦେହ ହେଲା ବୈଷ୍ଣବୀ ମାତା ନିକଟ ଅରଣ୍ୟରେ ରହି ଠାକୁରଙ୍କ ସେବା କରୁଛନ୍ତି । ଲୋକମାନଙ୍କ ମଧ୍ୟରେ ଏହି ବିଷୟ ଆଲୋଚନା ହେଉଥିବା କଥା ଯୁବରାଜ ଧନଞ୍ଜୟଙ୍କ ନିକଟରେ ପହଞ୍ଚିଲା । ସେ ଏହାର କାରଣ ଜାଣିବା ପାଇଁ କେତେକ ବର୍ଚ୍ଚାଧାରୀ ପାଇକମାନଙ୍କ ସହ ମନ୍ଦିରକୁ ଜଗି ରହିଲେ ।

ଶୋଭା ଠାକୁରଙ୍କ ସେବା ପୂଜା ସାରିବା ପରେ ହଠାତ୍ ପାଇକ ମାନଙ୍କର ଝନତ୍କାରରେ ସେ ସ୍ଥାନଟି କମ୍ପିତ ହୋଇ ଉଠିଲା । କୋମଳାଙ୍ଗୀ ଶୋଭା ଭୟରେ ଏକାନ୍ତ ଅସ୍ଥିର ହୋଇ ପଡ଼ିଲେ । କିନ୍ତୁ ମନରେ ସାହସ ବାନ୍ଧିଲେ ଯେ ନିଶ୍ଚୟ ତାଙ୍କର ଆରାଧ୍ୟ ଦେବତା ଯଦୁକୃଷ୍ଣ ଏ ବିପଦରୁ ଉଦ୍ଧାର କରିବେ । କିନ୍ତୁ ତାଙ୍କର ସକଳ ପ୍ରକାର ଚେଷ୍ଟା ବିଫଳ ହୋଇଗଲା । ଶେଷକୁ ସେହି ମନ୍ଦିରରେ ବିରାଜିତ ଯଦୁକୃଷ୍ଣ ମୂର୍ତ୍ତି ସମ୍ମୁଖରେ ଗୋଟିଏ ଶିଶୁ କୁଆଁ କୁଆଁ ଧ୍ୱନି କରିବାର ଶୁଣାଗଲା । ଯୁବରାଜ ଧନଞ୍ଜୟ ହଠାତ୍ ପାଇକ ଦଳ ସହିତ ଲୁଚିଗଲେ । କାରଣ ରାଜା ଜାଣିଲେ ବିପଦ ହେବ । ସାଧାରଣ ବେଶରେ ଥିବା ଜଣେ ପାଇକ ଦ୍ୱାରା ଏହି ଖବର ସାହିରେ ପ୍ରଚାର କରିଦେଲେ । ଦୁଲଣୀ ଏହାଶୁଣି ଦୌଡ଼ି ଆସି ନିଜ ବଂଶର ଶୁଭଫଳ ଦେଖି ଆନନ୍ଦରେ ବିଭୋର ହୋଇ ନାଚି ଉଠିଲେ । ସେ ଦିନ ଥିଲା ବୀର କିଶୋର ଦେବଙ୍କ ୫୫ ଅଙ୍କ ଧନୁ ୨୮ ଦିନ ପୌଷ ଶୁକ୍ଳ ତ୍ରୟୋଦଶୀ ସୋମବାର । ଇଂରାଜୀ ଗଣନାରେ ୧୭୮୧ ଖ୍ରୀଷ୍ଟାବ୍ଦ ଜାନୁୟାରୀ ମାସ ଆଠ ତାରିଖ (ତା ୮-୧-୧୭୮୧) ।

## ନାମକରଣ ଓ ବାଲ୍ୟଶିକ୍ଷା—

ମୁକୁନ୍ଦ ମହାପାତ୍ର ଓ ଶୋଭାଦେବୀଙ୍କ ଆନନ୍ଦ କହିଲେ ନସରେ । ଏଣେ ଦୁଲଣା ଦେବୀ ନାତିକୁ ଦେଖି ସ୍ୱର୍ଗର ଚନ୍ଦ୍ର ପାଇଲାପରି ଘୋର ଆନନ୍ଦ ଅଣ୍ଟିରେ ନଥାଉ ଧନ ନା ପୁଅ ବାହା କରିବାକୁ ପନ । ପୁଅର ଏକୋଇଶା କରିବାକୁ ହେବ । ଏଣେ ପାଖରେ ଧନ ନାହିଁ । ବ୍ରହ୍ମପୁରରୁ ତେଲିଙ୍ଗି ବାଜା ଆଣିବାକୁ ସ୍ଥିରକଲେ । ଜମିଡିକ ବନ୍ଧକ ଦେଇ ଟଙ୍କା ଆଣି ଏକୋଇଶା ଯୋଗାଡ଼ କରାଗଲା । ଏହି ଶୁଭ କାର୍ଯ୍ୟରେ ଯୋଗଦେବା ପାଇଁ ରଣପୁର ଗଡ ମାମୁଁଘର, ବାଣପୁର ଗଡ଼ ମାମୁଁଅଜା ଘର, ବନ୍ଧୁ ବନ୍ଧୁବାନ୍ଧବ, ବଡ଼ଖେମଣ୍ଡି, ଧରାକୋଟ, ଶକଟି. ପାରଳା, ସାନଖେମଣ୍ଡି, ଦାମୋଦରପୁର, ରଘୁରାଜପୁର, ଚନ୍ଦନପୁର ଇତ୍ୟାଦି ପ୍ରତ୍ୟେକ ଗ୍ରାମର ବନ୍ଧୁବାନ୍ଧବମାନଙ୍କୁ ଆମନ୍ତ୍ରଣ କରାଗଲା । ସବୁଠାରୁ ବନ୍ଧୁବାନ୍ଧବମାନେ ଆସି ମୁକୁନ୍ଦ ମହାପାତ୍ରଙ୍କ ଗୋଟିଖଡ଼କା ସାହିରେ ଠୁଳ ହେଲେ । ଶୋଭାଦେବୀଙ୍କ ମନଲାଖି ଯଦୁକୃଷ୍ଣଙ୍କ ନାମ ଅନୁସାରେ ପୁଅର ନାଁ ଦିଆଗଲା ଯଦୁମଣି । ସେହି ଦିନ ଠାରୁ ରାଜା ବୃନ୍ଦାବନ ହରିଚନ୍ଦନ ଜଗଦ୍ଦେବ ଯଦୁକୃଷ୍ଣଙ୍କର ସେବା ପୂଜାର ସ୍ୱତନ୍ତ୍ର ବ୍ୟବସ୍ଥା କରାଇ କିଛି ଜମି ଖଞ୍ଜା କରିଦେଲେ । କାରଣ ସେ ଭାବିଲେ ଦିଅଁ ଶକ୍ତର ହେଲେ ହେଁ ସେ ତ ଦିଅଁ । ଏହିପରି ଭାରି ସାଙ୍କସମକରେ ପୁଅର ଏକୋଇଶା ଉତ୍ସବ ପାଳନ କରାଗଲା । ଗଡ଼ର ସମସ୍ତଙ୍କୁ ଡ଼ାକି ଏକୋଇଶା ଭୋଜି ଦିଆଗଲା ।

ଆଗରୁ ତ ମୁକୁନ୍ଦ ମହାପାତ୍ରଙ୍କ ସମ୍ପତ୍ତି ଶ୍ରେର ନେଇଥିଲା । ଅବଶିଷ୍ଟ ଯାହାଥିଲା ବନ୍ଧକ ଦେଇ ଟଙ୍କା ଆଣି ଏକୋଇଶା ଉତ୍ସବ ବଡ଼ ଆଡ଼ମ୍ବର ସହ ପାଳନ କରାଗଲା । ଘରେ ଶିଶୁପୁତ୍ର, ଏଣେ ଖାଇବାକୁ ନାହିଁ । କ'ଣ କରିବେ ? ଦୈନିକ ମଜୁରି ଖଟି ମୁକୁନ୍ଦ ପରିବାରର ପ୍ରତିପୋଷଣ କରିଲେ । ଏଣେ ରାଜା ମଧ୍ୟ ଦରିଦ୍ର ଲୋକଙ୍କୁ ସାହା ପଡ଼ି ଖଞ୍ଜିଥିଲେ ଅସୁବିଧା ଯୋଗୁଁ ତାହା ଦେଇପାରି ନଥିଲେ । ଅତ୍ୟଧିକ ଅସୁବିଧା ହେତୁ ମୁକୁନ୍ଦ ମହାପାତ୍ରଙ୍କ ପରିବାର ଦିନେ ଦିନେ ଉପବାସ ରହିବାକୁ ପଡୁଥିଲା । ସେ ଯାହାହେଉ ଦୁଃଖ କଷ୍ଟରେ ଯଦୁମଣିଙ୍କ ବାଲ୍ୟାବସ୍ଥାଟି ସେହି ଗୋଟିଖଡ଼କା ସାହିରେ କଟିଥିଲା ।

ଛୋଟ ପିଲାଟି ଦିନରୁ ଯଦୁମଣିଙ୍କୁ ଦୁଲଣା ଦେବୀ ସୁନ୍ଦର ସୁନ୍ଦର ଗୀତ ଗାଇ ଖେଳାଉଥାନ୍ତି । ସେହି ଗୀତ ଶୁଣି ଶୁଣି ପିଲାଟି ଦିନରୁ ଯଦୁମଣି ମଧ୍ୟ ଗୀତ ଗାଇବା ଓ ଢଗଢମାଳ କହିବାରେ ବିଶେଷ ଆଗ୍ରହୀ ଥିଲେ । ଯଦୁମଣିଙ୍କୁ ପାଞ୍ଚବର୍ଷ ବୟସ ହେଲାବେଳକୁ ଦୁଲଣା ଦେବୀ ମୃତ୍ୟୁବରଣ କରିଥିଲେ । ଦୁଲଣାଙ୍କ ମୃତ୍ୟୁରେ ଶିଶୁ ଯଦୁମଣି ବହୁତ କାନ୍ଦିଥିଲେ ଓ ତାଙ୍କୁ କାହିଁକି ନିଆଁରେ ପୋଡ଼ି ଦିଆଗଲା ବୋଲି ବାରମ୍ବାର ପ୍ରଶ୍ନ କରିଥିଲେ । ଏହି ଦାରୁଣ ଆଘାତରେ ଯଦୁମଣି ସ୍ତବ୍ଧ ହୋଇ ଯାଇଥିଲେ ।

୧୭୯୧ ଖ୍ରୀଷ୍ଟାବ୍ଦରେ ପୁଣ୍ୟଶ୍ଲୋକ ରାଜା ବୃନ୍ଦାବନ ହରିଚନ୍ଦନ ଜଗଦ୍ଦେବଙ୍କ ସ୍ୱର୍ଗାରୋହଣ ହୋଇଥିଲା । ଅଷ୍ଟଦୁର୍ଗର ରାଜସିଂହାସନ ଆରୋହଣ କଲେ ତାଙ୍କର ଜ୍ୟେଷ୍ଠପୁତ୍ର ଧନଞ୍ଜୟ । ନୂତନ ରାଜାଙ୍କ ରାଜତ୍ୱ କାଳରେ ଦୁର୍ଭିକ୍ଷ ଏପରି ଭାବେ ଲାଗି ରହିଲା ଯେ, ରାଜ୍ୟ ପରିଚାଳନା କରିବା ଅସମ୍ଭବ ହୋଇ ପଡିଲା । ଏପରି ଦୁର୍ଦ୍ଦିନରେ ମୁକୁନ୍ଦ ମହାପାତ୍ରଙ୍କୁ ପରିବାର ଚଳାଇବା ବହୁତ କଷ୍ଟହେଲା । କୌଣସି ଉପାୟ ନପାଇ ସର୍ବଦା ଚିନ୍ତିତ ରହୁଥିଲେ । କ'ଣ କରିବେ କିଛି ଠିକ୍ କରି ପାରୁନଥିଲେ । ଦିନେ ସେ ଭଗବତ୍ ଧ୍ୟାନରେ ସମ୍ପୂର୍ଣ୍ଣ ଉପବାସ ରହିବା ପରେ ହଠାତ୍ ନୟାଗଡ଼ ମାନଧାତାଙ୍କର ଏକ ନୂତନ ମୂର୍ତ୍ତି ପଥରରେ ଗଢ଼ିବା ପାଇଁ ଡାକରା ପାଇଲେ । ଏହି କଥା ମୁକୁନ୍ଦ ମହାପାତ୍ର ଯାଇ ରାଜାଙ୍କୁ ଜଣାଇଲେ । ଏହି କଥା ଶୁଣି ରାଜା ଧନଞ୍ଜୟ ନିରୁପାୟ ହୋଇ ମୁକୁନ୍ଦ ମହାପାତ୍ରଙ୍କୁ ନୟାଗଡ଼ ଯିବାପାଇଁ ଅନୁମତି ଦେଇଥିଲେ ।

ମୁକୁନ୍ଦ ମହାପାତ୍ର ନିଜର ଜାୟା ଶୋଭାଦେବୀ ଓ ଦଶବର୍ଷର ବାଳକ ପୁଅ ଯଦୁମଣିଙ୍କୁ ସଙ୍ଗରେ ନେଇ ୧୭୯୧ ମସିହା ସେପ୍ଟେମ୍ବର ମାସ ନଅ ତାରିଖ (ତା ୯-୯-୧୭୯୧ ରିଖ) ଭାଦ୍ରବ ମାସ ଶୁକ୍ଳପକ୍ଷ ଦଶମୀ ବାମନ ଜନ୍ମ ଦିନ (ସର୍ବସିଦ୍ଧା ତ୍ରୟୋଦଶୀ) ପୁଣ୍ୟ ପୂତ ପବିତ୍ର ଅଷ୍ଟଦୁର୍ଗର କେତକୀ ଝର, ନାଗେଶ୍ୱର ବନ, ଚମ୍ପା, ତମାଳ, ମାଳତୀ ବନ ବେଷ୍ଟିତ ଗୋଟିଖଣ୍ଡିକା ସାହି ଏବଂ ଯଦୁକୃଷ୍ଣ ଠାକୁରଙ୍କ ପୀଢ଼ି ପରିତ୍ୟାଗ କରି, ନୂତନ ଭାଗ୍ୟ ଅନ୍ୱେଷଣରେ ଚାଲିଆସିଲେ ନୂଆଁଗଡ଼ ରାଜ୍ୟକୁ । ସେଦିନ

ଆଠଗଡ଼ର ରାଜା କିମ୍ବା ପ୍ରଜାବୃନ୍ଦ କଳ୍ପନା କରି ନଥିଲେ ଯେ ଯଦୁମଣି ଦିନେ ଉତ୍କଳଖଣ୍ଡ କବିରୂପେ ପ୍ରତିଷ୍ଠା ଲାଭ କରିବେ । ମୁକୁନ୍ଦ ନୂଆଁଗଡ଼ରେ ପହଞ୍ଚି ରାଜାଙ୍କ ସ୍ନେହ, ସଙ୍ଗ ଓ ବସା ପାଇ ପରମ ସୁଖରେ ଜୀବନ-ବିତାଇ ଅଷ୍ଟଦୁର୍ଗର କାହାଣୀ ସୁରାପୁରି ଭୁଲିଯାଇଥିଲେ ।

## ନୂଆଁଗଡ଼—

କବିତା ଓ ସାହିତ୍ୟ କ୍ଷେତ୍ରରେ ନୂଆଁଗଡ଼ ଯଥେଷ୍ଟ ସୁନାମ ଅର୍ଜନ କରିଥିଲା । ନୂଆଁଗଡ଼ର ରାଜକବି ପୁରୁଷୋତ୍ତମ ମାନ୍ଧାତା ଦିନେ ନିଜ କାବ୍ୟଙ୍କ ପାଇଁ "ଶୋଭାବତୀ" ନାମକ ଏକ କାବ୍ୟ ରଚନା କରି ଅମର ହୋଇଥିଲେ । ନୂଆଁଗଡ଼ର ଶରଣକୁଳ ନିବାସୀ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ପ୍ରେମ ଲହରୀ, ଯୁଗଳ ରସାମୃତ ଲହରୀ, ପ୍ରେମ କଳ୍ପଲତା ଓ ନିସ୍ତାର ମାନମଣି ଆଦି ସୁମଧୁର ଜନପ୍ରିୟ ବୈଷ୍ଣବ କବିତାମାନ ରଚନା କରି ଘରେ ଘରେ ତଥା ଗ୍ରାମେ ଗ୍ରାମେ ପ୍ରସିଦ୍ଧି ଲଭିଥିଲେ । ନୂଆଁଗଡ଼ର ଆଦି ବିଗ୍ରହ ଚେଙ୍ଗଣା ମାଳଦାଣ୍ଡି ବିରାଜିତ ମଣିବିଗ୍ରହ ରଘୁନାଥଙ୍କ ପାଦପଦ୍ମ ତଳେ ଦିନେ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ତାଙ୍କର ପ୍ରିୟତମା ବିଶ୍ଵ ଶୋଭା ରାଣୀ 'ଲାବଣ୍ୟବତୀ' ନାମରେ "ଲାବଣ୍ୟବତୀ" ମହାକାବ୍ୟ ରଚନା କରିଥିଲେ । ଏପରି ପୁଣ୍ୟ ପବିତ୍ର ମାଟି ନୂଆଁଗଡ଼ରେ ଶିଶୁ ଯଦୁମଣି ନିବାସ କରି ନିଜକୁ ଧନ୍ୟ ମନେ କରୁଥିଲେ ।

ନୂଆଁଗଡ଼ରେ ବସତି ସ୍ଥାପନ କରି ସେହି ରାଜ୍ୟର ଅଧିବାସୀରୂପେ ପରିଚିତ ହୋଇଥିଲେ । ଜନ୍ମଭୂମି ଆଠଗଡ଼ କଥା ସବୁଦିନ ପାଇଁ ମନରୁ ଭୁଲିଗଲେ । ଆଠଗଡ଼ର ପୂତ ପବିତ୍ର ମାଟିରେ ଜନ୍ମଗ୍ରହଣ କରି ଏବଂ ନୂଆଁଗଡ଼ର ପାଣି, ପବନ ଓ ଆଲୋକରେ ଯଦୁମଣି ବୃକ୍ଷଟି ଫଳବନ୍ତ ହୋଇଥିଲା ଏଥିରେ ସନ୍ଦେହ ନାହିଁ ।

ଗୃହଶାଳୀ ପାଠପଢ଼ା ଶେଷ ହେବାରୁ ତା ୧୭-୯-୧୭୯୩ ଖ୍ରୀଷ୍ଟ ଦିନ ଯଦୁମଣି ନୂତନ ସୁନଆ ଦିନ ସ୍ୱସ୍ତିକ ଘଡ଼ୁଆଳ ପଣ୍ଡିତ ବିଦ୍ୟାକର

ମହାପାତ୍ରଙ୍କ ଚତୁଷ୍ପାଠୀରେ ସଂସ୍କୃତ ପଢିବାକୁ ମନକରି ପିତାଙ୍କ ନିକଟରେ ନିଜ ଇଚ୍ଛା ପ୍ରକାଶ କଲେ । ପିତା ମୁକୁନ୍ଦ ମହାପାତ୍ର ମାଙ୍ଗୋବାପୁରକୁ ଯାଇ ପୁଅ ଯଦୁମଣି ସଂସ୍କୃତ ଅଧ୍ୟୟନ କରିବା ପାଇଁ ସମସ୍ତ ପ୍ରକାର ସୁବନ୍ଦୋବସ୍ତ କରିଦେଇ ଆସିଥିଲେ । ଯଦୁମଣି ୧୨ ବର୍ଷ ବୟସରେ ସଂସ୍କୃତଶିକ୍ଷା ଆରମ୍ଭ କରି ପ୍ରଥମେ ଅମରକୋଷ ମୁଖସ୍ଥ କରିଥିଲେ । ପରେ ପରେ ବ୍ୟାକରଣ ଅଧ୍ୟୟନ କଲେ । ସେ ଉକ୍ତ ଚତୁଷ୍ପାଠୀରେ ଅଧ୍ୟୟନ କରିବା ବେଳେ ବିଭିନ୍ନ ପ୍ରକାର ବ୍ୟଙ୍ଗ କବିତା ରଚନା କରି ନିଜର ସାଙ୍ଗସାଥୀ ପିଲାମାନଙ୍କୁ ଚିଡ଼ାଉଥିଲେ । ଏପରିକି ଗ୍ରାମର ନବନାରୀଙ୍କ ନାମରେ ମଧ୍ୟ ବ୍ୟଙ୍ଗ କବିତା ମୁଖେ ମୁଖେ ପଢ଼ି ଗାଇପାରୁ ଥିଲେ । ନିଜ ସାହିର ଜଣେ ବୃଦ୍ଧାଙ୍କୁ ସେ ଗୀତ ଗାଇ ଗାଇ ସବୁଦ ଚିଡ଼ାଉଥିଲେ ।

"ଇଚାମାଟି ଝଙ୍କାଝାଟି, ଚୁଡ଼ପଟିରେ ଗୋବରା ସା ଯା ଚଢ଼ିଛି ।"

ଯଦୁମଣି ପାଠପଢ଼ି ମନେ ରଖିବାରେ ଯେପରି ବିଚକ୍ଷଣତା ପ୍ରଦର୍ଶନ କରୁଥିଲେ, ସେହିପରି ଦୁଷ୍ଟାମି, ଚଗଲାମି ପ୍ରଭୃତି କରିବାରେ ମଧ୍ୟ ସୀମା ଟପି ଯାଉଥିଲେ । ତାଙ୍କର ଦୁଷ୍ଟାମି ସାହିପଡ଼ିଶା ଓ ପରିବାର ଭିତରେ ମଧ୍ୟ ବିଶୃଙ୍ଖଳା ସୃଷ୍ଟି କରି ଦେଉଥିଲା ।

ଯଦୁମଣିଙ୍କ ପ୍ରତ୍ୟୁତ୍ପନ୍ନ ମତିକୁ ପରିଲକ୍ଷିତ କରି ପଣ୍ଡିତ ବିଦ୍ୟାଧର ମୁଗ୍ଧ ହୋଇ ସାଧାରଣ ସଂସ୍କୃତ ଶିକ୍ଷା ପ୍ରଦାନ କଲେ । ତତ୍‌କାଳୀନ ସମାଜର ନୀତିନିୟମକୁ ଭୟ କରୁନଥିଲେ । କାରଣ ସେତେବେଳେ କେବଳ ବ୍ରାହ୍ମଣ ଜାତିର ପିଲାମାନେ ହିଁ ସଂସ୍କୃତ ଅଧ୍ୟୟନ କରିବା ପାଇଁ ଯୋଗ୍ୟ ବିବେଚିତ ହେଉଥିଲେ । ଅନ୍ୟ ଜାତିର ପିଲାମାନଙ୍କୁ ସଂସ୍କୃତ ଅଧ୍ୟୟନ କରିବା ନିଷେଧ ଥିଲା । ପଣ୍ଡିତ ମହାଶୟ ଯଦୁମଣିଙ୍କ ଠାରେ ପ୍ରଚଣ୍ଡ କବି ପ୍ରତିଭାର ସମ୍ଭାବନାକୁ ଅନୁଧ୍ୟାନ କରି ସଂସ୍କୃତ କାବ୍ୟ, କବିତା, ନ୍ୟାୟ, ବ୍ୟାକରଣ ଇତ୍ୟାଦି ବିଷୟରେ ଶିକ୍ଷାଦାନ ଦେଲା ସଙ୍ଗେ ସଙ୍ଗେ କବି ଭଞ୍ଜସାହିତ୍ୟ ଓ ଅନ୍ୟାନ୍ୟ ଓଡ଼ିଆ କାବ୍ୟ କବିତା ବିଷୟରେ ମଧ୍ୟ ଆଲୋଚନା କରାଇଥିଲେ ।

ରାଜାନୁଗ୍ରହ ଲାଭକରି ମୁକୁନ୍ଦ ମହାପାତ୍ର ନୂଆଁଗଡ଼ରେ ତିନିବର୍ଷ ରହଣି ମଧ୍ୟରେ ରାଧାମୋହନ ମୂର୍ତ୍ତି ଓ ମନ୍ଦିର ନିର୍ମାଣ କାର୍ଯ୍ୟ ଶେଷକଲେ । ଯୁବକ ରାଜା ବିନାୟକ ମାନଧାତା, ମୁକୁନ୍ଦ ମହାପାତ୍ରଙ୍କର ଗୁରୁକଳା କୁଶଳରେ ମୁଗ୍‌ଧ ହୋଇ ତାଙ୍କୁ ନିଜ ରାଜ୍ୟରେ ସ୍ଥାୟୀବାସିନ୍ଦା ଭାବେ ରଖି ଦେଲେ । ମୁକୁନ୍ଦ ମହାପାତ୍ର ସୁଖରେ ଜୀବନ ଯାପନ କରି ପାରିଥିଲେ । ଏଣେ ଯଦୁମଣି ସଂସ୍କୃତ ଓ ଅନ୍ୟାନ୍ୟ ବିଷୟରେ ବିଦ୍ୟା ଶିକ୍ଷା ଦ୍ୱାରା ଯଥା ସମ୍ଭବ ଜ୍ଞାନ ଅର୍ଜନ କରି ସେ ଉପେନ୍ଦ୍ର ଭଞ୍ଜଙ୍କପରି କପରି କବି ହୋଇ ପାରିବେ ଏପରି ଆଶା ପୋଷଣ କରିଥାନ୍ତି । ପାଠପଢ଼ା ସହିତ କ୍ଷୁଦ୍ର କବିତା ରଚନା କରିବା ତାଙ୍କର ପ୍ରଧାନ କାର୍ଯ୍ୟ ଥିଲା ।

## ଘୁମୁସର ରାଜବଂଶର ପ୍ରଭାବ—

ସେତେବେଳେ ରାଜ୍ୟର ଗୃହେଗରେ ଗୋଟିଏ କଥା ପ୍ରଚଳିତ ହୋଇଥାଏ 'ଧନିଆ ଜନ୍ମରେ ଘନିଆ ରାଜାହେଲା' । ଯଦୁମଣି ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ଏହି ଗଳ୍ପଟିକୁ ବହୁବାର ଅଭ୍ୟାସ କରି କହୁଥିଲେ । ଏହି ଗଳ୍ପରୁ ତାଙ୍କର କବି ପ୍ରତିଭା ଜାଗ୍ରତ ହୋଇଥିଲା ବୋଲି ସମ୍ଭବ ହୁଏ । ଗଳ୍ପଟି ହେଉଛି ଘୁମୁସର ରାଜବଂଶର ଇତିହାସ । ଘୁମୁସର, ଆଠଗଡ଼ ନିକଟସ୍ଥ ଅତି ପ୍ରାଚୀନ ରାଜ୍ୟ । ଏହି ରାଜ୍ୟର ରାଜାମାନେ ଓଡ଼ିଶା ଗଜପତିଙ୍କ ପ୍ରଦତ୍ତ ଷଟୀପୁବର ଉପାଧିରେ ବିଭୂଷିତ । ପ୍ରାୟ ପଚିଶ ବର୍ଷ ପରେ ଧନଞ୍ଜୟଭଞ୍ଜ ନାମରେ ଜଣେ ରାଜା ୧୬୩୭ ଖ୍ରୀଷ୍ଟାବ୍ଦରେ ସିଂହାସନ ଆରୋହଣ କରିଥିଲେ । ତାଙ୍କର ବହୁତ ରାଣୀ ଥିଲେ । ସାନ ରାଣୀ ହେଉଛନ୍ତି ନୂଆଁଗଡ଼ ରାଜଜେମା ମଣ୍ଡାଦେବୀ । ମଣ୍ଡାଦେବୀଙ୍କ ପୁତ୍ର ନୀଳକଣ୍ଠ ଯେ କି କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ଜନକ । ମଣ୍ଡାଦେବୀ ତାଙ୍କ ପୁତ୍ର ନୀଳକଣ୍ଠଙ୍କୁ ରାଜା କରାଇବା ପାଇଁ ପ୍ରତ୍ୟହ ରାଜାଙ୍କୁ ପ୍ରବର୍ତ୍ତାଉଥିଲେ । କାରଣ ରାଜା ମଣ୍ଡାଦେବୀଙ୍କୁ ଅତ୍ୟନ୍ତ ସ୍ନେହ କରୁଥିଲେ । କିନ୍ତୁ ଜ୍ୟେଷ୍ଠ ପୁତ୍ର ଥାଉ ଥାଉ କିପରି କ'ଣ କରିବେ ବୋଲି ରାଜା କୌଣସି ନିଷ୍ପତ୍ତି କରିପାରୁ ନଥିଲେ ।

ଧନଞ୍ଜୟ ଭଞ୍ଜଙ୍କର ବାରଟୋଟି ପୁତ୍ର ଥିଲେ । ସେ ନିଜ ଭାଇ ଗୋବିନ୍ଦ ଭଞ୍ଜଙ୍କୁ ଆଠଗଡ଼ ରାଜା ବା ସେନାପତି ରୂପେ ବାଛିଥିଲେ । ତେଣୁ ଆଠଗଡ଼ ରାଜା ଗୋବିନ୍ଦ ଭଞ୍ଜଙ୍କ ସର୍ବକନିଷ୍ଠ ପୁତ୍ରର ନାମଥିଲା ଘନ । ଘନ ଯେପରି ବୀର ସେପରି ଦୁର୍ଦ୍ଧର୍ଷ ଓ ସାହସୀ ଥିଲେ ।

ବୃଦ୍ଧ ରାଜା ଧନଞ୍ଜୟ ଥରେ ଜଣେକ ଜ୍ୟୋତିଷଙ୍କୁ ଡ଼ାକାଇ କୌତୁହଳୀ ହୋଇ ପଚାରିଲେ 'ବର୍ତ୍ତମାନ ମୋର ବୃଦ୍ଧାବସ୍ଥା । ମୋ' ପରେ ଏ ରାଜ୍ୟର ରାଜା କିଏ ହେବ ? ପ୍ରଶ୍ନ ଶୁଣି ଜ୍ୟୋତିଷ ମହାଶୟ ତତ୍‌କ୍ଷଣାତ୍ କହିଲେ "ଧନଆ ଉତ୍ତାରେ ଘନଆ ରାଜା ହେବେ ।" ତାଙ୍କ ନାମ ଧନଞ୍ଜୟ ଥିବାରୁ 'ଧନଆ' ବୋଲି ସେ ଜାଣିପାରିଥିଲେ । ଏଣେ ତାଙ୍କ ଭାଇ ଆଠଗଡ଼ ରାଜାଙ୍କ କନିଷ୍ଠ ପୁତ୍ରକୁ ଘନଆ ବୋଲି ଜାଣିଥିଲେ । ଏଣୁ ରାଜପୁତ୍ରମାନଙ୍କୁ ରାଜ୍ୟର ଅଧିକାଂଶ ଅଂଶ ବଣ୍ଟନ କରି ଦେଇଥିଲେ ।

ଧନଞ୍ଜୟ ଭଞ୍ଜ, ପ୍ରତାପ ଧନଞ୍ଜୟ ଭଞ୍ଜ ନାମରେ ବିଖ୍ୟାତ ଥିଲେ । ଏତଦ୍‌ବ୍ୟତୀତ ସେ ଜଣେ ସୁନ୍ଦର କବି ଥିଲେ । ନାତି ଉପେନ୍ଦ୍ର ଭଞ୍ଜଙ୍କୁ ସେ ଅତ୍ୟନ୍ତ ସ୍ନେହ କରୁଥିଲେ । ନଅ ବର୍ଷ ବୟସ ହେବାଯାଏ ଉପେନ୍ଦ୍ର ଜେଜେ ବାପାଙ୍କର ସ୍ନେହ ସମାଦର ଲଭକରି ଅତିଶୟ ଗେଲବସର ଯୋଗୁଁ ସେ ବର୍ଣ୍ଣଶିକ୍ଷା ଆରମ୍ଭ କରିଥିଲେ । ସେତେବେଳକୁ ଉପେନ୍ଦ୍ର ବୁଢ଼ା ବାପାଙ୍କ ରଚିତ ରଘୁନାଥ ବିଳାସ ଗ୍ରନ୍ଥର କବିତାମାନ ମୁଖସ୍ଥ କରି ସୁନ୍ଦର ସ୍ୱରେ ଗାଇ ପାରୁଥିଲେ । ନାତିର କବିତା ପ୍ରତି ଆଗ୍ରହ ଦେଖି ରାଜକବି ଧନଞ୍ଜୟ ତାଙ୍କୁ କବି ହେବାପାଇଁ ଆଶୀର୍ବାଦ ଦେଇଥିଲେ । ତେଣୁ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ତାଙ୍କ ଗ୍ରନ୍ଥରେ ପିତାମହ ଧନଞ୍ଜୟଙ୍କ କବି ପ୍ରତିଭାର ସୂଚନା ପ୍ରଦାନ କରିଛନ୍ତି ।

ରାଣୀ ମଣ୍ଡାଦେବୀ ଷଡ଼ଯନ୍ତ୍ର କରାଇଲେ ଯେ ଆଠଗଡ଼ ରାଜାଙ୍କ ପୁଅମାନେ ବଡ଼ପୁଅ ଗଙ୍ଗାଧରଙ୍କ ସହିତ ମିଶି ରାଜାଙ୍କୁ ହତ୍ୟାକରି ରାଜ୍ୟ ଦଖଲ କରିବାକୁ ଯୋଜନା କରୁଛନ୍ତି । ରାଜା ଧନଞ୍ଜୟ ଏପରି କଥାଶୁଣି ସେମାନଙ୍କୁ ଦେଶାନ୍ତର କରିଦେଲେ । ଘନଭଞ୍ଜ ରାଜ୍ୟରୁ ବିତାଡ଼ିତ

ହୋଇ ଧର କୋଟରେ ଆଶ୍ରୟ ନେଲେ । ସେହିପରି ଅନ୍ୟମାନେ କିଏ କେଉଁଠାରେ ଗୁପ୍ତଭାବେ ରହିଥିଲେ । କିନ୍ତୁ ହିନ ଅତିବାହିତ ହେବାପରେ ୧୭୦୧ ଖ୍ରୀଷ୍ଟାବ୍ଦରେ ମଣ୍ଡାଦେବୀ, ବ୍ରାହ୍ମଣୀ ନାମ୍ନୀ ଦ୍ୱାରା ନିଜ ପ୍ରିୟତମ ବୃଦ୍ଧ ସ୍ୱାମୀଙ୍କୁ ବିଷଦେଇ ହତ୍ୟାକଲେ । ପୁଅ ନୀଳକଣ୍ଠକୁ ରାଜ୍ୟର ରାଜାରୂପେ ସିଂହାସନରେ ବସାଇଦେଲେ । ପୁଅକୁ ବଡାଇ ଧନଞ୍ଜୟଙ୍କ ଅନ୍ୟ ରାଣୀଙ୍କ ବଡ଼ପୁଅ ଗଙ୍ଗାଧରକୁ ହତ୍ୟା କରିଛଲେ । ସେତେବେଳକୁ ଗଙ୍ଗାଧରଙ୍କ ପୁଅ ଶତ୍ରୁଞ୍ଜୟଙ୍କ ସ୍ତ୍ରୀ ପ୍ରତିମା ଗର୍ଭବତୀ ଥିଲେ । ସେ ଏକାନ୍ତ ଶିକ୍ଷିତା ଓ ବଡ଼ ଚତୁରୀ ଥିବାରୁ ଦାସଦାସୀଙ୍କ ସାହାଯ୍ୟରେ ବହୁ କଷ୍ଟ ସହ୍ୟକରି କରଉଁ। ରାଜ୍ୟରେ ଆଶ୍ରୟ ନେଲେ । ସେଠାରେ ପ୍ରତିମାଙ୍କ ଗର୍ଭରୁ ଗୋଟିଏ ପୁତ୍ର ସନ୍ତାନ ଜାତ ହୋଇଥିଲା । ସେହି କୁମାରକୁ ରଣଭଞ୍ଜ ବୋଲି ନାମ ଦିଆଯାଇଥିଲା ।

ଘନଭଞ୍ଜ ଧରକୋଟରୁ କରଉଁ। ରାଜ୍ୟକୁ ଯାଇ ପ୍ରତିମାଙ୍କୁ ଲୋଭ ଦେଖାଇ ତାଙ୍କ ସହିତ କୁମାରକୁ ଧରି ଆସିଲେ ତାଙ୍କୁ ରାଜେଶ୍ୱରୀ କରିଦେବେ ବୋଲି କହିଲେ । ପ୍ରତିମା ବିଧବା ହେଲେହେଁ ବଡ଼ ସୁନ୍ଦରୀ । ତାଙ୍କୁ କରଉଁ। ରାଜ୍ୟର ବହୁ ମାନ୍ୟଗଣ୍ୟ ବ୍ୟକ୍ତି ମନା କରିବା ସତ୍ତ୍ୱେ ପ୍ରତିମା କାହାରି କଥା ନଶୁଣି ଘନଭଞ୍ଜଙ୍କ କଥାରେ ପଡ଼ି ତାଙ୍କ ସହିତ ନିଜର ପାପକ୍ଷୁଧା ମେଣ୍ଟାଇଲେ । କାରଣ ସେତେବେଳେ ଘନଭଞ୍ଜ ଅତ୍ୟନ୍ତ ବଳବନ୍ତ ଓ ଦୁର୍ଦ୍ଧର୍ଷ ଥିଲେ । ଶେଷରେ ଘନଭଞ୍ଜ କାଳ, ପାଣ ପ୍ରଭୃତି କେତେକ ପ୍ରଜାଙ୍କୁ ଏକତ୍ରିତ କରି ସେମାନଙ୍କୁ ଲୋଭ ଦେଖାଇ ନୀଳକଣ୍ଠ ଭଞ୍ଜଙ୍କ ବିରୋଧରେ ବିଦ୍ରୋହ ଚଳାଇଲେ । ଘନଭଞ୍ଜଙ୍କ ଆକ୍ରମଣ ଫଳରେ ନୀଳକଣ୍ଠ ଭୟଭୀତ ହୋଇ ସକୁଟୁମ୍ବେ ରାଜ୍ୟ ପରିତ୍ୟାଗ କରି ମାମୁଁଘର ଅଭିମୁଖେ ଯାତ୍ରାକଲେ ।

ଯେତେଦିନ ଯାଏ ସୁନ୍ଦରୀ ପ୍ରତିମାଙ୍କ ଠାରେ ରୂପ ତୃଷ୍ଣା ଥିଲା ସେତେ ଦିନଯାଏ ଘନଭଞ୍ଜ ତାହାଙ୍କୁ ଉପଭୋଗ କରି ପରେ କୁମାର ରଣାକୁ ହତ୍ୟା କଲେ ଏବଂ ନିଜେ ରାଜସିଂହାସନ ଆରୋହଣ କଲେ । ନିଜ ପୁତ୍ର ହତ ହେବାର ଜାଣିପାରି ଅପମାନରେ ବିଶ୍ରୁତ ରୂପବତୀ ପ୍ରତିମା ବିଷପାନ କରି ଆତ୍ମହତ୍ୟା କଲେ ।

ଇସ୍ଲାପୁରର ମୁସଲମାନ ନବାବ ଧନଭଞ୍ଜଙ୍କର ଏପରି କାର୍ଯ୍ୟକଳାପ ଲୋକ ମୁଖରୁ ଶୁଣି ଧନଭଞ୍ଜଙ୍କୁ ବନ୍ଦୀକଲେ । କିନ୍ତୁ ବନ୍ଦୀ ଧନଭଞ୍ଜ ନବାବଙ୍କ ଏକ ଦୁର୍ଦ୍ଧର୍ଷ ଅଶ୍ୱକୁ ଆୟତ୍ତ କରିବାରୁ ତାଙ୍କୁ ପୁଣି ଘୁମୁସର ରାଜତ୍ୱ ୧୭୧୨ ଖ୍ରୀଷ୍ଟାବ୍ଦରେ ଦେଇଥିଲେ । ଏହାଙ୍କ ସମୟରେ ଗଜପତି ଦିବ୍ୟସିଂହ ରାମଚନ୍ଦ୍ର ଦେବ ଜଗନ୍ନାଥ ମହାପ୍ରଭୁଙ୍କ ସହ ନିଜ ପରିବାର ନେଇ ଆଠଗଡ଼ ରାଜାଙ୍କ ପାଖରେ ଶରଣ ରହିଥିଲେ । ସେତେବେଳେ ଧନଭଞ୍ଜ ଗଜପତି ମହାରାଜାଙ୍କୁ ସବୁ ପ୍ରକାର ସାହାଯ୍ୟ କରୁଥିବାରୁ ତାଙ୍କୁ ଗଜପତି ମହାରାଜା 'କ୍ଷେତ୍ରିୟବର' ଉପାଧି ପ୍ରଦାନ କରିଥିଲେ ।

**କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ—**

ନୀଳକଣ୍ଠ ଭଞ୍ଜ ରାଜ୍ୟ ତ୍ୟାଗକରି ପ୍ରଥମେ ଧରାକୋଟ ତାପରେ ଆଠଗଡ଼ରେ ଆଶ୍ରୟ ନେଇଥିଲେ । ଆଠଗଡ଼ରେ ରହିବା ତାଙ୍କ ପକ୍ଷରେ ଲଜ୍ଜାକର ମନେକରି ନିଜ ମାମୁଁଘର ନୂଆଗଡ଼ର ମାଳସାହି ଡେଙ୍କଣା ଗ୍ରାମରେ କୁଟୀର ନିର୍ମାଣ କରି ରହିଲେ । ମାମୁଁ ନିଜ ଦୁର୍ଗରେ ଆଶ୍ରୟ ଦେଇଥିଲେ ହେଁ ନୀଳକଣ୍ଠ ଗୋପନରେ ରହିବାକୁ ଇଚ୍ଛା କରିବାରୁ ତାଙ୍କ ଇଚ୍ଛାନୁଯାୟୀ ଡେଙ୍କଣା ମାଳସାହିସ୍ଥ ରଘୁନାଥ ମନ୍ଦିର ସମ୍ମୁଖରେ ରହିବା ପାଇଁ ସମସ୍ତ ପ୍ରକାର ସୁବିଧା କରି ଦିଆଗଲା । ନୀଳକଣ୍ଠ ଏପରି ଦୁଃଖବେଳେ ଅପମାନିତ ହେବେ ବୋଲି ନିଜ ପୁଅକୁ ପାଖରୁ ଆଦୌ ବାହାରକୁ ଛାଡ଼ୁ ନଥିଲେ । ଏଣୁ ଉପେନ୍ଦ୍ର ଶିକ୍ଷା, ଅଶ୍ୱାରୋହଣ, ପାରିଧି, ଧନୁଶର, ଖଣ୍ଡା, ତରବାରି, ବନ୍ଧୁକ ଚାଳନା ଇତ୍ୟାଦିରେ ଅବଶ୍ୟ ଧୁରନ୍ଧର ହୋଇପାରି ନଥିଲେ ।

ଡେଙ୍କଣା ଗ୍ରାମରେ ଉପେନ୍ଦ୍ରଙ୍କ ପିତା ମାତାଙ୍କର ବିୟୋଗ ହୋଇଥିଲା । ୧୭୦୪ରେ ନୀଳକଣ୍ଠ ରାଜ୍ୟ ପରିତ୍ୟାଗ କରିଥିଲେ ଏବଂ ୧୭୦୮ ଖ୍ରୀଷ୍ଟାବ୍ଦରେ ତାଙ୍କର ମୃତ୍ୟୁ ହୋଇଥିଲା । ପିତାଙ୍କ ମୃତ୍ୟୁବେଳକୁ ଉପେନ୍ଦ୍ରଙ୍କୁ ମାତ୍ର ୧୫ ବର୍ଷ ହୋଇଥିଲା । ନିରାଶ୍ରୟ ହେବାର ଦେଖି ମାମୁଁ ଉପେନ୍ଦ୍ରଙ୍କୁ ନିଜ ଗୃହକୁ ଆଣି ଆଶ୍ରୟ ଦେଇଥିଲେ । ମାମୁଁ ଘରକୁ ଆସିବାର ଏକବର୍ଷ ପରେ ମାମୁଁଙ୍କର ମୃତ୍ୟୁ ହେବାରୁ ମୂର୍ଖ ଉପେନ୍ଦ୍ରଙ୍କ ଭାଗ୍ୟ ଏକ ସୂତାଖିଅରେ ଝୁଲୁଥିଲା ।

ନୂଆଁଗଡ଼ରେ ପୁରୁଷୋତ୍ତମ ମାନଧାତା ରାଜା ହେଲେ । ସେ ବାଣପୁର ରାଜକୁମାରୀ ଶୋଭାଦେବୀଙ୍କୁ ବିବାହ କରିଥିଲେ । ପୁରୁଷୋତ୍ତମଙ୍କ ଏକମାତ୍ର ଭଉଣୀ ଅତ୍ୟନ୍ତ ସୁନ୍ଦରୀ । ତେଣୁ ତାଙ୍କୁ ଲାବଣ୍ୟବତୀ ବୋଲି ନାମ ଦିଆଯାଇଥିଲା । ଲାବଣ୍ୟବତୀ ଭାଇ ପୁରୁଷୋତ୍ତମଂକ ପରି ଗୃହ ବିଦ୍ୟାରେ ପାରଙ୍ଗମ ଥିଲେ । ଏଣେ ତାଂକ ଭାଉଜ ଶୋଭାଦେବୀ ମଧ୍ୟ ଅଳ୍ପ ଶିକ୍ଷିତା ଓ ସାହିତ୍ୟପ୍ରେମୀ ଥିଲେ । ସେ ଲୁଚେଇ ଲୁଚେଇ ଶ୍ରୀହର୍ଷଂଙ୍କ ନୈଷଧ କାବ୍ୟ ମାନଙ୍କର ଟୀକା କରି ପାରୁଥିଲେ ।

ନାରୀ ଯେତେ ଗୁଣବତୀ, ଶିକ୍ଷିତା, ସୁନ୍ଦରୀ ହେଲେହେଁ ଅନେକ ସମୟରେ ପୁରୁଷର ଶୌର୍ଯ୍ୟରେ ଏବଂ ରୂପ ତେଜରେ ଭାସିଯାଏ । ସେଇଥି ପାଇଁ ଲାବଣ୍ୟବତୀ ଉପେନ୍ଦ୍ରଙ୍କୁ ତାଂକର ଅନୁପମ ରୂପ ଲାବଣ୍ୟ ଦାନ କରିବାକୁ କୁଣ୍ଠିତ ହୋଇ ନଥିଲେ । ସେ ଭାବିଥିଲେ ଉପେନ୍ଦ୍ର ମହାନ୍ ପଣ୍ଡିତ ନ ହେଲେ ହେଁ ଶିକ୍ଷିତ ଥିବେ । କିନ୍ତୁ ଏ ମଧ୍ୟରେ ଉପେନ୍ଦ୍ରଂକ ଅକ୍ଷର ଜ୍ଞାନ ଯାହାଥିଲା ତାହା ମଧ୍ୟ ଭୁଲି ଯାଇଥିଲେ !

ପୁରୁଷୋତ୍ତମ ମାନଧାତା ଦୂତ ପ୍ରେରଣ କରି ଧନଭଞ୍ଜଙ୍କ ସହିତ ସୁସମ୍ପର୍କ ସ୍ଥାପନ କରି ଉପେନ୍ଦ୍ର ଭଞ୍ଜଙ୍କ ପାଇଁ କୁଲାଡ଼ ଦୁର୍ଗରେ ରହିବା ପାଇଁ ବ୍ୟବସ୍ଥା କରିଦେଇ ନିଜ ଭଉଣୀ ଲାବଣ୍ୟବତୀଙ୍କୁ ଉପେନ୍ଦ୍ରଙ୍କ ସହିତ ମହା ସମାରୋହରେ ବିବାହ ଦେଇ ବହୁବିଧ ଯୌତୁକ ସହିତ ପ୍ରେରଣ କରିଥିଲେ । ସେତେବେଳକୁ ଉପେନ୍ଦ୍ରଙ୍କ ବୟସ ୧୮ ବର୍ଷ ଓ ଲାବଣ୍ୟବତୀଙ୍କ ବୟସ ୧୭ ବର୍ଷ ହୋଇଥିଲା । ବିବାହ ପରେ ଗୋଟିଏ ବର୍ଷ ଅତି ସୁନ୍ଦର ଭାବରେ କଟିଗଲା । ପ୍ରଥମେ ପ୍ରଥମେ ପୁରୁଷୋତ୍ତମ କେମା ଲାବଣ୍ୟବତୀଙ୍କ ନାମରେ ଚିଠି ପଠାଉଥିଲେ । ଭାଉଜ ଶୋଭାଦେବୀ ମଧ୍ୟ ଲାବଣ୍ୟବତୀଙ୍କ ନିକଟକୁ ପତ୍ର ପ୍ରେରଣ କରୁଥିଲେ । ରାଜକାର୍ଯ୍ୟ ଭାବରେ ଯେଉଁ ଚିଠି ପୁରୁଷୋତ୍ତମ, ଉପେନ୍ଦ୍ରଙ୍କ ନିକଟକୁ ଲେଖୁଥିଲେ ତାହା ପାଞ୍ଜିଆ ଛାମୁକରଣ ପାଠକରି ଶୁଣାଇ ଦେଉଥିଲେ । କିନ୍ତୁ ଦିନେ ପୁରୁଷୋତ୍ତମଙ୍କ ପ୍ରଣୀତ 'ଶୋଭାବତୀ' ନାମକ ଏକ କାବ୍ୟ ଏବଂ ଶଳାଭାଉଜ ଶୋଭାବତୀଙ୍କର ଏକ ଚିଠି ଉପେନ୍ଦ୍ରଙ୍କ ନାମରେ ଆସି ପହଞ୍ଚିଲା ।

ଲାବଣ୍ୟବତୀ ଉକ୍ତ କାବ୍ୟଟି ପଢ଼ି ଈର୍ଷା ନିଷ୍ଟ୍ରପୂ କଲେ, ଶୋଭାବତୀ ସୁନ୍ଦରୀ ଓ ଗୁଣବତୀ ହେଲେ ହେଁ ଲାବଣ୍ୟବତୀଙ୍କ ପରି ସୁନ୍ଦରୀ ନୁହନ୍ତି । ତାଙ୍କର ସ୍ୱାମୀ ତ କବି କି ଲେଖକ ନୁହନ୍ତି, ସେ କାହୁଁ 'ଲାବଣ୍ୟବତୀ' ବା ଲେଖିବେ । ଭଞ୍ଜଙ୍କ ପରିହାସ ମୂଳକ ଚିଠିଟି ତାଙ୍କୁ ଶୂଳପରି ଲାଗିଲା । ସେ ନିଜର ଅତି ପ୍ରିୟ ହାରଟି ଏବଂ କଣ୍ଠୀର ଓଢ଼ଆଣୀଟି ସଙ୍ଗେ ସଙ୍ଗେ ଅଙ୍ଗରୁ ବାହାର କରି ଗମ୍ଭାଘରେ ରଖିଦେଲେ । ସେହି ମାନିନୀ ରମଣୀମଣି ତପସ୍ୱିନୀପରି ନିଜକୁ ଗଢ଼ିନେଇ ହତୋତ୍ସାହ ଜୀବନ ଆରମ୍ଭ କରିଦେଲେ ।

ଉପେନ୍ଦ୍ର ଭଞ୍ଜ ମୃଗୟାରୁ ଫେରି ଦେଖିଲେ, ଜେମାମଣି ଅତି ନିରାଭରଣ ହୋଇଛନ୍ତି । ସେ ପ୍ରିୟାଙ୍କୁ ଜେମାମଣି ସମ୍ବୋଧନ କରୁଥିଲେ । ପଚାରିଲେ, 'ତୁମର ଏପରି ଅବସ୍ଥା କାହିଁକି ?' ଲାବଣ୍ୟବତୀ କହିଲେ, 'ନାହିଁ କିଛି ନାହିଁତ । ତୁମ ଶଳାବାଉଜ ଚିଠି ଲେଖିଛନ୍ତି ତୁମ ପାଖକୁ ଆଉ ତାଙ୍କ ବିଷୟରେ ଭାଇ ଯେଉଁ କାବ୍ୟ ଲେଖିଛନ୍ତି ତାହା ସେଥିରେ ପଠାଇଛନ୍ତି, ନିଅ ପଢ଼ ।' ଏହି କାବ୍ୟର ନାମ 'ଶୋଭାବତୀ' । ଉପେନ୍ଦ୍ର କହିଲେ, କଣ ଟିକଏ ତୁମେ ପଢ଼ିଦିଅ । ଲାବଣ୍ୟବତୀ କହିଲେ 'କାହିଁକି ତୁମେ ପଢ଼ୁନାହଁ' । ଏପରି ଶୁଣିବାମାତ୍ରେ ଉପେନ୍ଦ୍ରଙ୍କ ଦେହରେ କଣ୍ଟା ଗଜାଗଲା । ଲାବଣ୍ୟବତୀର ଅସୌଜନ୍ୟ ଅଳଂକାର ବିହୀନ ରୂପ ପୁଣି ତାଙ୍କ ନିଜର ମୂର୍ଖତା ତାଙ୍କୁ ବ୍ୟାକୁଳ କରିଦେଲା । ସେ ସଙ୍ଗେ ସଙ୍ଗେ କୁଆଡେ ବାହାରିଲେ କେଜାଣି, ଲାବଣ୍ୟବତୀ ପଚାରିଲେ, 'କୁଆଡ଼େ ଯିବକି ?' ଏଇ ଆସୁଛି କହି ଉପେନ୍ଦ୍ର ଘୋର ଅରଣ୍ୟ ମଧ୍ୟରେ ପଶିଗଲେ । ବାଘୁଣୀଦେବୀଙ୍କ ଚରଣରେ ଉପାସ ଭୋକରେ ଅଧିଆ ପଡ଼ି ସ୍ୱପ୍ନରେ ବାଘୁଣୀଦେବୀଙ୍କୁ ଦେଖି ତାଙ୍କଠାରୁ ଶୁଣିଲେ 'ଶୈଶବକାଳ ଯେଉଁ ରଘୁନାଥଙ୍କ ପାଦପଦ୍ମରେ କଟାଇଛ ସେହିଠାକୁ ଯାଅ । ସେହି ତୋହର ସାହାହେବେ ।' ଶୁଷ୍କମୁଖ ଉପବାସୀ ଉପେନ୍ଦ୍ର ପୁଣି ଚାଲିଲେ ଆଶାଧର ଡେଙ୍କଣା ମାଳସାହି ପାଷାଣ ପ୍ରତିମା ରଘୁନାଥଙ୍କ ଚରଣ ତଳେ ଅଧିଆ ପଡ଼ିବାକୁ ।

ଏଣେ ବିଶ୍ୱରୂପସୀ ଲାବଣ୍ୟବତୀ ଦଣ୍ଡେ, ଘଡ଼ିଏ, ଦୁଇଘଡ଼ି ଅପେକ୍ଷା କଲେ । ନିଜ କର୍ମକୁ ଧିକ୍କାର ଦେଲେ । ଛି ସ୍ୱାମୀ ଦେବତାଙ୍କୁ ହତାଦର

କଲି । ଜାଣିଥିଲି ତ, ଯୁଆ କାହିଁକି କଲି ମୁଁ ପାପିନୀ । ଏପରି ଚିନ୍ତାକରି
ଅନୁସନ୍ଧାନ ଚଳାଇ ପାଲିଙ୍କିରେ ବସି ପ୍ରଥମେ ବାଘୁଣୀ ଠାକୁରାଣୀଙ୍କ
ପାଖକୁ ଗଲେ । ସେଠାରୁ ଶୁଣିଲେ ଯେ ସେ ପାଗଳ ହୋଇ ଯାଇଛନ୍ତି ।
କେବଳ କହୁଛନ୍ତି ମୁଁ ଲାବଣ୍ୟବତୀର କପରି ଉପଯୁକ୍ତ ହେବି । ଏହାଶୁଣି
ଜେମା ବହୁତ କାନ୍ଦିଲେ । ସେଠାରୁ ଖବର ପାଇଲେ ଯେ ଉପେନ୍ଦ୍ର
ତାଙ୍କରି ପିତୃ ଭୂମିକୁ ଯାଇଛନ୍ତି । ଯେଉଁଠି ଶୈଶବରୁ ସେ ରଘୁନାଥଙ୍କ
ନିକଟରେ ରହୁଥିଲେ । ସେଠାରୁ ଜେମା ମାଳସାଙ୍ଗରେ ପହଞ୍ଚି ସ୍ୱାମୀଙ୍କ
ପାଦଧରି ବହୁତ କାନ୍ଦିଲେ ଏବଂ ତାଙ୍କୁ ନିଜ କୋଳରେ ଧରି ନିଜ ହସ୍ତରେ
ସୁଖାଦ୍ୟ ଖୁଆଇ ଦେଲେ ।

ଉପେନ୍ଦ୍ର କହିଲେ, 'ତୁମେ ମୋତେ ଶିକ୍ଷାଦେବ, ପାଠପଢ଼ାଇବ',
ଏହା ହେଉଛି ଦେବତାଂକ ଆଦେଶ । ତାହା ଶୁଣି ଜେମା ଆନନ୍ଦରେ
ଅଧିର ହୋଇଗଲେ । ବିରାଟ ବାଉଁ ବଣଆଚଲ ଅରଣ୍ୟ ମଧ୍ୟରେ । ସମସ୍ତଂକ
ଅଜ୍ଞାତରେ ଜେମା ଲାବଣ୍ୟବତୀ ଉପେନ୍ଦ୍ରଙ୍କୁ ବିଦ୍ୟା ଶିକ୍ଷା ଦେଲେ । ରାମ
ତାରକ ମନ୍ତ୍ର ସାଧନାରେ ସିଦ୍ଧି ଲଭି ତିନିବର୍ଷ ମଧ୍ୟରେ ସମସ୍ତ ସଂସ୍କୃତ
ବିଦ୍ୟାରେ ପାରଦର୍ଶୀ ହୋଇ ଦୁଇମାସ ମଧ୍ୟରେ "ଲାବଣ୍ୟବତୀ" କାବ୍ୟ
ନିଜର ମହିମାମୟୀ ଶୋଭାରାଣୀ ନାୟୀଂକ ଚରଣ ତଳେ ସମର୍ପଣ କରି
ତାହାର ଏକ ପ୍ରସ୍ଥ ନକଲ ନୂଆଁଗଡ଼ ରାଜାରାଣୀଂକ ନିକଟକୁ ପଠାଇ
ଦେଲେ । କବିବର ଉପେନ୍ଦ୍ର ଲାବଣ୍ୟବତୀଙ୍କୁ ଦୈବ ବିଡ଼ମ୍ବନାରୁ ଧନେ
ହରାଇ ଅନ୍ତରର ଅଚିନ୍ତା ତାଂକ ଶଳାଭାଉଜଂକ ସାନ ଭଉଣୀ ବାଣପୁର
ରାଜଜେମା କୋଟିବ୍ରହ୍ମାଣ୍ଡ ସୁନ୍ଦରୀଙ୍କର ଦ୍ୱିତୀୟବାର ପାଣିଗ୍ରହଣ କରିଥିଲେ ।

ଯଦୁମଣି ଶୈଶବରୁ ଏ ଗଳ୍ପ ବାରମ୍ବାର ଶୁଣିବାକୁ ଯେପରି ଭଲ
ପାଉଥିଲେ ତା ସାଙ୍ଗକୁ ଭଞ୍ଜଙ୍କର କବିତା ସୁନ୍ଦର ସ୍ୱରଦେଇ ଗାଉଥିଲେ ।
ଗ୍ରାମର ନରନାରୀ ଯଦୁମଣିଙ୍କ ସୁନ୍ଦର ଶୋଭା ଚେହେରା ଗଠନ ମାଧୁରୀ ସାଙ୍ଗକୁ
ଭଞ୍ଜଙ୍କ ସୁମଧୁର ଛାନ୍ଦ ଶୁଣି ଚମତ୍କୃତ ହେଉଥିଲେ । ଭଞ୍ଜଙ୍କ ଗଳ୍ପ ଓ ଭଞ୍ଜ
ସାହିତ୍ୟ ହିଁ ଯଦୁମଣିଙ୍କୁ ସାହିତ୍ୟର ସୌଷ୍ଠବ ଉପାଦାନ ଯୋଗାଇ
ଦେଇଥିଲା । ଏକଥା ନିଶ୍ଚିତ ଭାବେ କୁହାଯିବଯେ କବିସମ୍ରାଟ ଉପେନ୍ଦ୍ର
ଭଞ୍ଜହିଁ ଯଦୁମଣିଙ୍କର ପ୍ରକୃତ କବିତ୍ୱର ଗୁରୁ ଥିଲେ ଏଥିରେ ସନ୍ଦେହ ନାହିଁ ।

## ଯଦୁମଣି କବି ହେବାର ବାସନା —

ଯଦୁମଣିଙ୍କୁ ୧୬ ବର୍ଷ ବେଳେ ଗୁରୁ ପଣ୍ଡିତ ବିଦ୍ୟାଧର ମହାପାତ୍ରଙ୍କୁ କହିଲେ ଯେ ସେ ଧୁମୁସରର ପଞ୍ଚମୁଖ ଭଗବାନ କବିରାଜ ବାହିନୀପତିଙ୍କ ନିକଟକୁ ଯାଇ ପରାମର୍ଶ କରିବେ । ଯଦୁମଣି ଅବ୍ରାହ୍ମଣ ଯୋଗୁଁ ଗୁରୁ ଟିକିଏ ଚିନ୍ତିତ ରହିଥିଲେ । କାରଣ ସେତେବେଳେ ଏ ଅଞ୍ଚଳରେ ଶୂଦ୍ରମାନଙ୍କ ରଚିତ କବିତାକୁ ବ୍ରାହ୍ମଣମାନେ ଘୃଣା ପ୍ରକାଶ କରୁଥିଲେ । ସାରଳା ଦାସ ନିଜକୁ ଶୂଦ୍ରମୁନି ବୋଲି ଅଭିହିତ କରିଥିଲେ ସୁଦ୍ଧା ତାଙ୍କର ମହାକାବ୍ୟ 'ମହାଭାରତ' ଘରେ ଘରେ ପୂଜିତ ଓ ଅଧ୍ୟୟନ ହେଉଥିଲା । କିନ୍ତୁ ବ୍ରାହ୍ମଣମାନେ ତାଙ୍କର ରଚନା ପ୍ରତି ଘୃଣା ପ୍ରଦର୍ଶନ କରିବାରୁ ଶୂଦ୍ର ବାଳକମାନଙ୍କର ମନରେ କାବ୍ୟ କବିତା ରଚନା କରିବାକୁ ସଙ୍କୋଚ ଭାବ ପ୍ରକାଶ କରୁଥିଲେ । ଯଦୁମଣି ଚତୁଷ୍ପାଠୀରେ ଶୂଦ୍ର ବୋଲି ସମସ୍ତେ ଘୃଣା କରୁଥିଲେ । ଅଳ୍ପଶିକ୍ଷିତ ଅଥବା ନାମଧାରୀ କୁହାଳିଆ ବ୍ରାହ୍ମଣମାନେ ଚତୁଷ୍ପାଠୀ ପହଞ୍ଚି ପଚାରୁଥିଲେ । "ପଣ୍ଡିତ ମହାଶୟ ! ଏଇଟି କିଏ ? ହଁ ସେ ଶାସନର ଗାର୍ଗ ଗୋତ୍ରୀୟ ଷଡ଼ଙ୍ଗୀଙ୍କ ପୁଅ, ସେଇଟି ସେ ବୈଦିକ ଭରଦ୍ୱାଜ ମିଶ୍ରଙ୍କ ନାତି, ସେ । ସେଇଟି ଗୋଟିଏ ବାଢ଼ିଆ ସନ୍ତାନ ।" ସଙ୍ଗେ ସଙ୍ଗେ ଉତ୍ତର ହେଲା, ହଁ ହଁ "କାଳସ୍ୟ କୁଟିଳା ଗତିଃ ।" ଦେବଭାଷା ସଂସ୍କୃତ ବର୍ତ୍ତମାନ ଶୂଦ୍ର କ'ଣ ଅଛବ ପିଲାଏ ବି ଶିକ୍ଷା କଲେଣି, "କିସ ପୁଣି ଦେଖା ନ ଯାଏ ବଞ୍ଚିଥିଲେ ଜୀବରେ ।" ଅଥଚ, "ଶୃଣ୍ୱନ୍ତୁ ବିଶ୍ୱେ ଅମୃତସ୍ୟ ପୁତ୍ରାଃ, ଜଗତଃ ପିତରୌ ବନ୍ଦେ ।" ଏହି ସବୁ ଯେଉଁ ଜାତିର ଧ୍ୱନି ସେହି ଜାତିରେ ଅଶିକ୍ଷାର ମୋହ ଏ କୁରୁଚିର ପ୍ରବର୍ତ୍ତକ ଭାବରେ ଅଳ୍ପଦିନ ତଳୁ ରହି ଆସୁଥିଲା । ମାନଧାତା ପୁରର ପଣ୍ଡିତ ବିଦ୍ୟାଧର ମହାପାତ୍ର ବୈୟାକରଣିକ ନିଜର ପ୍ରିୟତମ ଶିଷ୍ୟ ଯଦୁମଣିଙ୍କୁ ପଞ୍ଚମୁଖ ଭଗବାନ କବିରାଜ ବାହିନୀପତିଙ୍କ ନିକଟକୁ ଯିବାର ସମସ୍ତ ପ୍ରକାର ସୁବିଧା କରାଇ ଦେଲେ । ଏହି ବ୍ରାହ୍ମଣ ପଣ୍ଡିତଙ୍କର ଉଦାରତା ହିଁ ଯଦୁମଣିଙ୍କୁ ଏତେ ମହାନ୍ କରି ପାରିଥିଲା ।

ସଂସ୍କୃତ ସାହିତ୍ୟରେ ଉଚ୍ଚତର ଜ୍ଞାନ ଅର୍ଜନ କରିବା ନିମନ୍ତେ ଯଦୁମଣି ପିତା ଓ ଗୁରୁଙ୍କ ପରାମର୍ଶ କ୍ରମେ ଧୁମୁସରର ବସ୍ତୁଚନ୍ଦ୍ର ଗ୍ରାମକୁ

ବାହାରିଲେ । ନିଜର ଖାଇବା ବାସନ, ଡ଼ାଳ, ପୋଥିପତ୍ର, ଚୂଡ଼ା, ଚାଉଳ ଚଣ୍ଡିଲି ମୁଣ୍ଡାଇ କବିଙ୍କ ସିଦ୍ଧି ଲାଭ ଉଦ୍ଦେଶ୍ୟରେ ବହୁ ନଦନଦୀ, ବନ୍ୟଜନ୍ତୁ ସଙ୍କୁଳ ଅରଣ୍ୟ ପଥ ଅତିକ୍ରମ କରି ଗ୍ରାମରୁ ଗ୍ରାମାନ୍ତର ପଚାରି ଚାଲିଲେ । ତାଙ୍କର ପିତାମାତା ସଙ୍ଗରେ ଜଣେ ଲୋକ ପଠାଇବାକୁ ବାଧ୍ୟକଲେ ହେଁ ଗୁରୁଙ୍କ କଥିତମତେ ସେ ଏକାନ୍ତ ସାଧନାରେ ସିଦ୍ଧି ଲାଭ କରିବାକୁ ସାହସ ଧରି ଚାଲିଲେ ।

ଯଦୁମଣିଙ୍କ ଜନ୍ମସ୍ଥାନ ଆଠଗଡ଼ । ଯାହାର ପ୍ରାକୃତିକ ଶୋଭା ଅତୀବ ରମଣୀୟ, ସକଳ ଦେବାଦେବୀରେ ପରିପୂର୍ଣ୍ଣ । ଦିନେ ଯେଉଁଠାରୁ କବିସୂର୍ଯ୍ୟ ବଳଦେବ ମା' ଜଗତ୍ ଜନନୀ ଦୁର୍ଗାଙ୍କ ଦୁଗ୍ଧ ପାନକରି ଅସାଧାରଣ ଧୀଶକ୍ତିର ଅଧିକାର ଲାଭ କରିଥିଲେ । ଚମ୍ପା, କେତକୀ, ନାଗେଶ୍ୱର, ମାଳତୀ, ତମାଳ ବନର ସୌରଭ ଦିଗନ୍ତ ବିସ୍ତାରି । ବାଲ୍ୟାବସ୍ଥା ଇଟାମାଟିରେ କଟିଗଲା ଯାହାର ଏକାନ୍ତ ରମଣୀୟ ସ୍ଥାନ । ସୁଦୂର ପ୍ରସାରି ଆମ୍ବତୋଟା, ପଡ଼ିଆ, ବିଲମାନଙ୍କରେ ଚଉଦିଗ ପରିପୂର୍ଣ୍ଣ । ତାଙ୍କର ନିବାସ ସ୍ଥାନ ଗୋଟିଏ ବିଶିଷ୍ଟ ଜନପଦ । କାଳେ କାଳେ ତାହା ନୂଆଁଗଡ଼ ରାଜ୍ୟର ଧର୍ମୀକ ବ୍ୟବସାୟୀଙ୍କର କେନ୍ଦ୍ରଭୂମି ସେ ଟିକିଏ ସଙ୍କୋଚ ଜଣାଯାଏ ନାହିଁ । ଜଳ, ପୁଷ୍କରିଣୀ ପର୍ଯ୍ୟନ୍ତ ଏକାନ୍ତ ସ୍ୱାସ୍ଥ୍ୟକର ପରିବେଶ । ପ୍ରଧାନ ରାସ୍ତାର ମୁଣ୍ଡରେ ମୁକ୍ତ ଏକ ବିସ୍ତୃତ ଭୂମିକୁ ଲାଗି ତାଙ୍କ ପିତାଙ୍କ ବାସସ୍ଥାନ ଅତି ରମଣୀୟ । ପରମ ସୁଖରେ ଥିବାବେଳେ ନିଜର ସିଦ୍ଧି ବା ଭାଗ୍ୟ ପରୀକ୍ଷା ଲାଗି ସେ ସ୍ଥାନ ପରିତ୍ୟାଗ କରି ଯିବା ହେତୁ ମୁକୁନ୍ଦଙ୍କ ଗୃହ ଶୂନ୍ୟ ଦେଖାଗଲା । ଏଣେ ମାଆ କହନ୍ତି, "ପୁଅ ତାଙ୍କର ବାୟା, ବାତୁଳ ହୋଇଅଛି ।"

ଯଦୁମଣି ପଥ ପଚାରି ବସ୍ତୁଚନ୍ଦ୍ର ଗ୍ରାମରେ ପହଞ୍ଚିଲେ । ସେତେବେଳେ ଘୋର ଅରଣ୍ୟ ସମାଚ୍ଛାଦିତ ଭୂଖଣ୍ଡ ଘୁମୁସରର ରାଜାଥିଲେ ଶ୍ରୀକର ଭଞ୍ଜ । ସେ ସେହି ସମୟରେ ବସ୍ତୁଚନ୍ଦ୍ର ଗ୍ରାମ ଅଦୂରବର୍ତ୍ତୀ ଏକ ଦୁର୍ଗରେ ଛାଉଣୀ ପକାଇ ରହିଥିଲେ । କାରଣ ତାଙ୍କର ନିଜପୁତ୍ର ଯୁବରାଜ ଧନଞ୍ଜୟଙ୍କ ସହିତ ଅପଡ଼ ହୋଇଥିଲା । ଯୁବରାଜ ବାପାଙ୍କ ବିରୁଦ୍ଧରେ ନାନାପ୍ରକାର

ଷଡ଼ଯନ୍ତ୍ର ସୃଷ୍ଟି କରି ପ୍ରଜାମାନଙ୍କୁ ମତାଇ ଅନର୍ଥ ସୃଷ୍ଟି କରିବାରୁ ରାଜା ବିଭିନ୍ନ ଅଞ୍ଚଳରେ ଶିବିର ସ୍ଥାପନ କରି ଏହି ପ୍ରଜାମାନଂକର ମନୋଭାବ ପରିବର୍ତ୍ତନ କରୁଥିଲେ । ପଞ୍ଚମୁଖ ବାହିନୀପତିଂକ ସହିତ ରାଜାଂକର ଉତ୍ତମ ସମ୍ପର୍କ ନଥିଲା । କାରଣ ସେ ଯୁବରାଜାଙ୍କୁ ସମର୍ଥନ କରୁଥିଲେ । ବାହିନୀପତି ତାନ୍ତ୍ରିକ ସିଦ୍ଧପୁରୁଷ ଥିବାରୁ ରାଜା ତାଙ୍କୁ କୌଣସି ପ୍ରକାର କଟୂକ୍ତି ବା ତାଂକ ବିଷୟରେ କୌଣସି ପ୍ରଶ୍ନ ଉଠାଉ ନଥିଲେ ।

କିଶୋର ଯଦୁମଣିଙ୍କର ସୁନ୍ଦର ସିଦ୍ଧ, ମନୋହର ବପୁଟି ଯେ କେହି ଲୋକର ଆକର୍ଷଣୀୟ ଥିଲା । ଗୁରୁକୁଳ ସାକ୍ଷୀ ଏହି କିଶୋରଟିକୁ ରାଜା ଶ୍ରୀକରଙ୍କ ପାଟକୁଣ୍ଡାର ସମସ୍ତ ବିଷୟ ବୁଝିଥିଲେ ଏବଂ କହିଥିଲେଯେ ତୁମେ ଉକ୍ତ ବ୍ରାହ୍ମଣଙ୍କ ଠାରୁ ଶିକ୍ଷା ଗ୍ରହଣ କରି ମନ୍ତ୍ର ସାଧନ କରିବ ସତ୍ୟ, କିନ୍ତୁ ସମୟେ ସମୟେ ଲୋକେ ବାତୁଳ ହେବାର ଦେଖା ଯାଉଛି । ମୋର ଯୁବରାଜ ମଧ୍ୟ ପାରଳା ନିବାସୀ ଯୋଗେଶ ପରମଗୁରୁ ତନ୍ତ୍ରସିଦ୍ଧଙ୍କ ନିକଟରୁ ଏହିପରି ମନ୍ତ୍ରସାଧନା କରି ବାତୁଳ ହୋଇଥିଲେ ।

ଏପରି ରାଜାଙ୍କ ଠାରୁ ଶୁଣି ଯଦୁମଣିଙ୍କ ମନରେ ଭୟ ସଞ୍ଚାରିତ ହୋଇଥିଲା । ସେ ଉପେନ୍ଦ୍ର ଭଞ୍ଜଙ୍କ ପରି କୌଣସି ମନ୍ତ୍ରରେ ସିଦ୍ଧି ଲାଭ କରିବା ଆଶାରେ ଆସିଥିଲେ । କିନ୍ତୁ ପ୍ରଖ୍ୟାତ ଘୁମୁସର ରାଜାଙ୍କ ଠାରୁ ଏପରି କଥା ଶୁଣି ଭୟ କରିଥିଲେ । ସେହି ଶିବିରରେ ଦୁଇଦିନ ରହି ଉପେନ୍ଦ୍ରଙ୍କ ଗୂଢ଼ ଗାନକରି ଅର୍ଥ ବ୍ୟାଖ୍ୟା କରି ସମସ୍ତଙ୍କୁ ମୁଗ୍ଧ କରିଥିଲେ । ଫଳରେ ରାଜା ଶିଶୁଟିର କିଛି ଉପକାର କରିବାକୁ ଇଚ୍ଛା ଥିଲେ । କିନ୍ତୁ ଯଦୁମଣି ମୂକପରି ରହି କୌଣସି କଥା କହିଲେ ନାହିଁ । ହଠାତ୍ ରାଣୀଙ୍କର ଭଉଣୀଙ୍କ ପାଇଁ ସୁରଙ୍ଗୀ ରାଜା ଗଡ଼ରେ ପଡ଼ିଥିବା ଖବର ଆସିବାରୁ ଗୁଞ୍ଜଣୀ ଭାଙ୍ଗିଗଲା । ରାଜା ଯଦୁମଣିଙ୍କୁ ପାଞ୍ଚଗୋଟି ଟଙ୍କା ଦେଇ ବିଦାୟ କରି ଦେଲେ । ଯଦୁମଣି ଚକିତ ହୋଇ ଶିବିରରୁ ବାହାରି ଆସିଲେ ।

ଯଦୁମଣି କ'ଣ କରିବେ କିଛି ଠିକ୍ କରି ପାରିଲେ ନାହିଁ । ଶେଷରେ ଗୋଟିଏ ବହୁଶାଖା ଯୁକ୍ତ ଆମ୍ବଗଛ ମୂଳରେ ବସି ରହିଲେ । ବିଷ୍ଣୁଚକ୍ର

ଗ୍ରାମକୁ ଯିବେ ନା ଘରକୁ ଫେରିବେ କିଛି ସ୍ଥିର କରିପାରିଲେ ନାହିଁ । ଏଣେ ଜନନୀଙ୍କର ଆସିବା ବେଳର କାତର ମୁଖ ବାରମ୍ବାର ଆଖି ଆଗରେ ନାଚି ଉଠିଲା । ସେ ନିରୁପାୟ ହୋଇ ସେହି ଆମ୍ବଗଛ ମୂଳେ ବସି ରହିଲେ ।

## ଗୁରୁଙ୍କ ପରିଚୟ—

କିଛି ସମୟ ପରେ ଅଦ୍ଭୁତପୂର୍ବ ଘଟଣା ଘଟିଲା । ସେ ଯାହାଙ୍କ ନିକଟକୁ ସିଦ୍ଧିଲାଭ ପାଇଁ ଏତେକଷ୍ଟ ସହ୍ୟକରି ଆସିଥିଲେ, ସେହି ଗୁରୁଦେବ ଜଣେ ଶିଷ୍ୟ ସହିତ କଥୋପକଥନ ହୋଇ ସେହି ପଥ ଦେଇ ଯାଉ ଥାଉ ଯଦୁମଣିଙ୍କର ସୁନ୍ଦର ଅବୟବଟିକୁ ଦେଖି ଦୟାର୍ଦ୍ର ହୋଇ ଚିନ୍ତା ହୋଇଗଲେ । ସେ ଶିଷ୍ୟଙ୍କ ସହ କଥାଭାଷା ହୋଇ ଆସୁଥିଲେ, ଘଟଣା ଚକ୍ରରେ କଥା ମଧ୍ୟରେ ଶ୍ଳୋକଟିଏ ଗାଇଦେଲେ—

"କନ୍ୟା ପିତୃଗୃହେ ନୈବ ସୁଚିରଂ ବାସ ମର୍ହତି,
ଲୋକାପବାଦଃ ସୁମହାନ୍ ଜାୟତେ ପିତୃ ବେଶ୍ମନ ।"

ଯଦୁମଣି ମାନଧାତା ପୁରରେ ବିଦ୍ୟାଧ୍ୟୟନ ସମୟରେ ଶ୍ଳୋକାନ୍ତରରେ ଅତି ପ୍ରବୀଣ ଥିଲେ । ସେ କାଳାକାଳ ପାତ୍ରାପାତ୍ର ଉପରେ ଦୃଷ୍ଟି ନ ଦେଇ ଅନ୍ତେବାସୀମାନଙ୍କ ସହିତ ଥିବାପରି ହଠାତ୍ ଗାଇ ଉଠିଲେ—

"ବେଶ୍ମନ-ତେବେ 'ନ' ତ ? ହେଉ
ନଣା ବନ୍ଧାନେ ସୁରତା ବସାନେ ।
ଯତ୍ ପାତ୍ୟତେ ଗମ କବେଷ୍ଟ ଯନ୍ୟା
ତଦ୍ ଗନ୍ଧ ମାଘ୍ରାୟ ତକାର ଗମ ।
ହୁଁ ହୁଁ ହୁଁ ହୁଁ ହୁଁ ହୁଁ ହୁଁ ହୁଁ ହୁଁ ହୁଁ .ହୁଁ ।

ପଥଗୃହୀ ଗୁରୁଶିଷ୍ୟ ଏକ ଅର୍ବାଚୀନ ବାଳକର ଏପରି ଅସମ୍ଭାବିତ କାଣ୍ଡ ଦେଖି ସ୍ତମ୍ଭିତ ହୋଇଗଲେ । କିନ୍ତୁ ତତ୍ପ୍ରତି ଦୃଷ୍ଟି ନ ଦେଇ

ଚଳୁକର ଗୁଳଥିଲେ । ଶକୁନ୍ତଳା ଚରିତରେ ମହାଭାରତ, ପଦ୍ମପୁରାଣ ଓ କାଳୀଦାଶ ରଚନାର ତୁଳନାତ୍ମକ ଆଲୋଚନା ହେଉଥିଲା ।

. ଶିଷ୍ୟର କୌଣସି ପ୍ରଶ୍ନର ଉତ୍ତରରେ ପୁରଶ୍ଚରଣ ବିଶାରଦ ପଞ୍ଚମୁଖ ପୁଣି ଗାଇଲେ—

"ବିଶ୍ୱାଚୀ ଚ ଘୃତାଚୀ ଚ ଷଡ଼େ ବାଦ୍ ସର ସାଂବକାଃ,
ତାସାଂ ଚ ମେନକା ନାମ ବ୍ରହ୍ମଯୋନିର୍ବ ରପସ୍ୱ୍ରା ।"

ଏହା ଶୁଣି ପୁଣି ଯୁବକ ଯଦୁମଣି କହି ଉଠିଲେ—

"ବରାପସ୍ୱ୍ର-ରା-ଅକ୍ଷା-
ରାମାଭିଷେକେ ମଡ ବିହ୍ୱଳାୟା,
କକ୍ଷଚ୍ୟୁତୋ ହେମ ଘଟସ୍ତରୁଣ୍ୟାଃ ।
ସୋପାନ ମାରୁହ୍ୟ କରୋତି ଶବ୍ଦଂ
ଠ ଠଂ ଠଂ ଠଂ ଠଂ ଠ ଠ ଠଂ ଠ :ଠଂ ଠଃ ।

ଶିଶୁର ଏପରି କାଣ୍ଡ ଦେଖି ବୃଦ୍ଧ ବାହ୍ମଣପଣ୍ଡିତ ହସି ପକାଇଲେ । ପାଖକୁ ଡ଼ାକି କୁଶଳ ସମ୍ବାଦ ପଚାରି ବୁଝିଲେ ଯେ ସେ ତାଙ୍କର ନିକଟକୁ ଆସିଛନ୍ତି । ପଣ୍ଡିତଙ୍କ ସ୍ନେହବତ୍ସଳତାରେ ଯଦୁମଣି ସବୁ ଭୟ ଭୁଲି ଯାଇଥିଲେ ।

ଗୁରୁ କହିଲେ ବତ୍ସ !—"ଗୁରୋର୍ଗିରଃ ପଞ୍ଚଦିନ ନ୍ୟଧୀତ୍ୟ,
ବେଦାନ୍ତ ଶାସ୍ତ୍ରାଣି ଦିନ ତ୍ରୟଂ ଚ ।
ଅମୀ ସମଘ୍ରାୟ ଚ ତର୍କବାଦାନ୍,
ସମାଗତାଃ କୁକ୍କୁଟ ମିଶ୍ର ପାଦାଃ ।

ତୋତେ ଦେଖି, ତୋ କଥା ଶୁଣି ମୁଁ ତୋ ସବୁତ ମଧ୍ୟ ପରିହାସିକ ହୋଇ ପଡ଼ୁଛି । ମୀମାଂସା ଶାସ୍ତ୍ରକୁ ଗୁରୁଙ୍କ ଉପଦେଶରେ ପାଞ୍ଚଦିନ ମଧ୍ୟରେ ଶେଷ କରି ତିନି ଦିନରେ ବେଦାନ୍ତ ଶାସ୍ତ୍ର ପଢ଼ା ଶେଷକରି, ତର୍କ ଶାସ୍ତ୍ରକୁ

ଆଘ୍ରାଣ ମାତ୍ର କରି  କୁକ୍‌କୁଟ  ପକ୍ଷୀ ନାମରେ ନାମିତ କୁକ୍‌କୁଟ ମିଶ୍ରପାଦ ସମାଗତ ହେଲେ । ଏଣୁ ତାଙ୍କୁ ପ୍ରଧାନ ଉପାଧ୍ୟାୟ ଆସନ ଦିଆଯାଉ । ତୁ ସେହିପରି ସମାଚାର ନୋହୁ ତ ? ଯାହାହେଉ ତୋର ପ୍ରଚ୍ଛନ୍ନ ହାସ୍ୟରସ ମୋତେ ମୁଗ୍‌ଧ କରି ଦେଇଛୁ ।

"ଅକମ୍ପଂ ହସିତଂ ଶ୍ରେଷ୍ଠଂ ମୀଳିତାକ୍ଷ ମଧ୍ୟାପହଂ,
ଅସକୃତ୍ ହସିତଂ ଦୁଷ୍ଟେୟତ୍ତ ତତ୍ତ୍ୱନ୍ମାଦସ୍ୟ ଲକ୍ଷଣଂ ।"

ସ୍ପନ୍ଦନହୀନ ହାସ ହିଁ ଶ୍ରେଷ୍ଠ । ଆଖିବୁଜି ହସିଲେ ପାପ ଦୂର ହୁଏ । ବାରମ୍ବାର ହସିଲେ ବଡ଼ ଦୋଷ, କାରଣ ତାହା ଉନ୍ମାଦ ବା ବାତୁଳତାର ସ୍ୱଭାବ ।

ଏହାପରେ ଯଦୁମଣି ଠାରୁ ସମସ୍ତ ଘଟଣା ଜାଣିପାରି ପୁଣି କହିଲେ—

"ଶମୀ କଦମ୍ବ ନିଂବାମ୍ର ମଧୂକା ବୃକ୍ଷ ଶାଖିନଃ"

ଯେତେବେଳେ ଆମ୍ର ବୃକ୍ଷତଳେ ତୋତେ ଭେଟିଛୁ, ତୋର ସାହସିକ ଶ୍ଳୋକାନ୍ତରରେ ହାସ୍ୟରସ ଶୁଣିଛୁ, ତୋତେ ନିଶ୍ଚୟ ତୋର ଉଦ୍ଦେଶ୍ୟ ସଫଳ ଲାଗି ଯତ୍ନ କରିବ ।

ଶେଷରେ ମନ୍ତ୍ର ପ୍ରୟୋଗ ପାଇଁ ବାହିନୀପତି ଦୃଢ଼ ସଂକଳ୍ପ ହେଲେ । ସେହି ସମୟରେ ସେଠାରେ ଜଣେ ସିଦ୍ଧ ସାଧୁ ଆସି ପହଞ୍ଚିଲେ । ଏସବୁ କଥା ଶୁଣି ସାଧୁ ଜଣଙ୍କ ଯଦୁମଣିଙ୍କୁ ପଚାରିଲେ ବତ୍ସ ! "ବଂଶ ଚାହଁ ନା ନାମ ଚାହଁ ?"

ଯଦୁମଣି କହିଲେ – "ନାମ ଚାହେଁ ।"

ସିଦ୍ଧ ସାଧୁ ଏହାପରେ ଭଗବାନ କବିରାଜ ବାହିନୀପତିଙ୍କୁ ବାଳକ ଯଦୁମଣିଙ୍କୁ ହୟଗ୍ରୀବ ମନ୍ତ୍ର ଦେବାକୁ କହିଗଲେ ।

ଆଶ୍ୱିନ ମାସର ଶେଷ ପାଦରେ ଯଦୁମଣି ଏଠାରେ ପହଞ୍ଚିଲେ । ତେଣୁ ସେ କପଟ୍ର ଉପଯୁକ୍ତ ହେବେ ତାହା ଗୋଟିଏ ପକ୍ଷ ମଧ୍ୟରେ ଗୁରୁ ପ୍ରଥମେ ପରୀକ୍ଷା କରିନେଲେ ।

ଯଦୁମଣି ଗୁରୁଙ୍କ ପ୍ରତି ଏପରି ଭକ୍ତି, ଶ୍ରଦ୍ଧା ଓ ଶୁଶ୍ରୂଷା କଲେ ଯେ ଗୁରୁ ହସିନେ କହିଲେ, "ବତ୍ସ ! ତୁ ଶୁଦ୍ର କୁଳରେ ଜନ୍ମ ଲଭିଥିଲେ ହେଁ ପାବନ ମନ୍ତ୍ର ଗ୍ରହଣ ପାଇଁ ଏକାନ୍ତ ଉପଯୁକ୍ତ ଅଟୁ । ସାଧୁଙ୍କ କଥା ନିଷ୍ଚୟ ପାଳନ କରବ ।" କାରଣ—

"ନ ଦେୟମର୍ଥ ଲୁବ୍ଧାୟ୍ ପିଶୁନାୟ୍ୱା ସ୍ଥିରସ୍ୱ ଚ
ଭକ୍ତ ଶ୍ରଦ୍ଧା ବର୍ଦ୍ଧନାୟ୍ ଶୁଶ୍ରୂଷା ବମୁଗାୟ୍ଃ
କାର୍ତ୍ତିକେ ନବମଂ ଶୁକ୍ଳା ଖର୍ଥ କୋଟି ଫଳାନ୍ବିତ ।"

କାର୍ତ୍ତିକ ମାସ ଶୁକ୍ଳପକ୍ଷ ନବମୀ ଶୁକ୍ରବାରରେ ଦୀକ୍ଷା ଦିଆଯିବାକୁ ସ୍ଥିର ହେଲା ।

ଯଦୁମଣି ନିଃଶ୍ଵକ୍ଷ ପ୍ରଦୀପ ଭଳି ଗୁରୁଦେବତାଙ୍କ ପାଦ ପଦ୍ମରେ ତତ୍ତ୍ୱରଖି ଶୁଣିଲେ । ପ୍ରତ୍ୟେକ କପଟ୍ର ତିନିଥର ସ୍ନାନ କରିବେ । କାରଣ "ଅସ୍ନାତସ୍ୟ ଫଳଂ ନାସ୍ତି" ତାପରେ ତିଳକ ଧାରଣ କରିବେ । କାରଣ ସେ ହୟଗ୍ରୀବ ବିଷ୍ଣୁ ମନ୍ତ୍ର ଗ୍ରହଣ କରିବା ସ୍ଥିର ହୋଇଛି ।

"ଶଙ୍ଖ ଚକ୍ରଂ ଭୁଜଦ୍ୱନ୍ଦେ ଶାଙ୍ଗବାଣଂ ଚ ମୂର୍ଦ୍ଧନି"

ଏସବୁ କପଟ୍ର କରିବାକୁ ହେବ ଶିଖିନେଲେ । ଏହି କଠୋର ସାଧନାରେ ଭିକ୍ଷା କରିବାକୁ ହେବ । ଯେଉଁ ଭିକ୍ଷା ସଂଗୃହୀତ ହେବ ତାହା ଦ୍ୱାରା ହବିଷ୍ୟ କପଟ୍ର କରିବାକୁ ହେବ, ତାହା ମଧ୍ୟ ଶିଖିନେଲେ ।

"ଭକ୍ଷଂ ହବିଷ୍ୟଂ ଶାକାନି ବହିତାନି ପଳଂପୟଃ,
ଚରୁମୂଳ ଫଳଂ କ୍ଷୀର ଦଧିଭକ୍ଷାନ୍ନ ସକ୍ତବଃ ।
ଭିକ୍ଷାନ୍ନଂ ଶୁଦ୍ଧମାମିସ୍ୟ କୃତ୍ୱାଭାଗ ଚତୁଷ୍ଟୟଂ
ଏକୋଭାଗୋ ଦ୍ୱିଜେଭ୍ୟୋ ଗୋ ଗ୍ରାସେ ଚ ଦ୍ୱିତୀୟକଂ
ଅତିଥିଭ୍ୟ ସ୍ତୃତୀୟଷ୍ଟୁ କୃତ୍ୱା ଗ୍ରାସ ବର୍ଦ୍ଧଂକମାତ୍ ।

ଭୋଜନ କୁକ୍‌କୁଟାଣ୍ଡ ପ୍ରମାଣରୁ ଥରକେ ଅଧିକ କରିବ ନାହିଁ ।

"କୁକ୍‌କୁଟାଣ୍ଡ ପ୍ରମାଣଂ ତୁ ଗ୍ରାସମନଂ ବିଧୀୟତେ
ଅଷ୍ଟୌ ଗ୍ରାସନ୍ ଗୃହସ୍ଥସ୍ଥ ବ୍ରହ୍ମଗ୍ନସ୍ଯ ଯଥେଷ୍ଟତଃ ।"

ତେଣୁ କୁକକୁଟାଣ୍ଡ ପରିମାଣରେ ଗ୍ରାସ ସେ ବ୍ରହ୍ମଚାରୀ ଥିବାରୁ ଯଥେଷ୍ଟ ଏହାହିଁ ହବିଷ୍ୟ ବେଳେ ଭୋଜନ ଲାଗି ବ୍ୟବସ୍ଥା ଥିଲା । କିନ୍ତୁ ସେ ଖାଇ ସନ୍ତୋଷ ଲଭିପାରୁ ନଥିଲେ । ଦେବାଳୟରେ ସେ ମନ୍ତ୍ର ଜପ କରିବାକୁ ସିଦ୍ଧାନ୍ତ କରାଯାଇଥିଲା ।

"ଗୃହେ ଶତଗୁଣଂ ବିଦ୍ୟାଦ୍ ଗୋଷ୍ଠେ ଲକ୍ଷଗୁଣଂ ଭବେତ୍
କୋଟି ଦେବାଳୟେ ପୁଣ୍ୟ ମନନ୍ତଂ ଶିବ ସନ୍ନିଧୌ ।"

ଯଦୁମଣି ବ୍ୟାଘ୍ର ଚର୍ମର ଆସନ ଖଣ୍ଡିଏ ନ ପାଇ ବାଉଁଶରେ ନିର୍ମିତ ତଲେଇଟିଏ ପକାଇ ଜପ କରିଥିଲେ । ଆସନ ସମ୍ବନ୍ଧରେ ତାଙ୍କର କୌଣସି ଧାରଣା ନଥିବାରୁ ତାହା ଫଳରେ ସେ ଚିରଦିନ ଦାରିଦ୍ର୍ୟ ଭୋଗ କରିଥିଲେ । କାରଣ—"ବଂଶାସନେ ଦରିଦ୍ର ତ୍ୱଂ ।"

କାର୍ତ୍ତିକ ଶୁକ୍ଳ ଅଷ୍ଟମୀ ଦିନ ଗୁରୁଦେବ ଯଦୁମଣିଙ୍କୁ ନିଜ ଆସନ ନିକଟରେ ବସାଇ କହିଲେ—ବତ୍ସ ! ବିଦ୍ୟାର ଦେବତା ହେଉଛନ୍ତି ହୟଗ୍ରୀବ । ତାଙ୍କର ମନ୍ତ୍ର ତୁମେ ବୟାଳିଶି ଲକ୍ଷ ଥର ଜପ କରିବାକୁ ହେବ । ତେବେ ଯାଇ ସିଦ୍ଧି ଲଭିବ । ଉକ୍ତ ହୟଗ୍ରୀବ ମନ୍ତ୍ର ମଧ୍ୟ ବୟାଳିଶ ଅକ୍ଷର ବିଶିଷ୍ଟ । କିନ୍ତୁ ଉକ୍ତ ହୟଗ୍ରୀବ ମନ୍ତ୍ରର ଏକାଦଶାକ୍ଷର ମନ୍ତ୍ର ପ୍ରୟୋଗ ଅଛି । ସେଥିରେ ଚାରିଲକ୍ଷ ଥର ଜପ କରାଯାଏ । ତାହା ସେପରି ଦୃଢ଼ ନୁହେଁ । ଅତ୍ୟନ୍ତ ଶୁଦ୍ଧପୂତ ନ ହେଲେ ଦେବତାର ଦର୍ଶନ ସମ୍ଭବ ହୁଏ ନାହିଁ । ତେଣୁ ତୁମେ କଣ କରିବ ପ୍ରଥମେ ମୋତେ ଜଣାଇ ଦିଅ ।

ଯଦୁମଣି ବୟାଳିଶି ଅକ୍ଷର ବିଶିଷ୍ଟ ମନ୍ତ୍ର ଜପ କରିବାକୁ ଉତ୍ସାହିତ ହୋଇ ତାହା ଗ୍ରହଣ କରିବାକୁ ବ୍ୟାକୁଳ ହୋଇ ଉଠିଥିଲେ । ଗୁରୁ

କହିଲେ, ବତ୍ସ ! ମୁଁ ତୋତେ ପରୀକ୍ଷା କରିବାକୁ ସମ୍ବତ୍ସର କାଳ ବିତାଇ ଦେଇଥାନ୍ତି । କାରଣ ଶାସ୍ତ୍ର ପ୍ରମାଣ ଅନୁସାରେ—

"ଜ୍ଞାନେନ ନିଃସ୍ପୃହା ବାପି ଗୁରୁଃ ଶିଷ୍ୟଂ ପରୀକ୍ଷୟେତ୍
ସମ୍ବତ୍ସରଂ ତଦର୍ଦ୍ଧଂ ବା ତଦର୍ଦ୍ଧଂ ବା ପ୍ରଯତ୍ନତଃ ।"

କିନ୍ତୁ ତୋର ସୁଦର୍ଶନ ଅବୟବ ଏବଂ ସେବା ଶୁଶ୍ରୂଷାରେ ମୁଁ ମୋହିତ ହୋଇଛି । ଅତ ଶୀଘ୍ର ତେବେ ତୁ ଗୁରୁଙ୍କୁ ପରମେଶ୍ୱର ବୋଲି ମନେ କରିବୁ ।

"ଶ୍ରୀ ଗୁରୁଃ ପରମେଶାନ ଶୁଦ୍ଧବେଶେ ମନୋହରଃ
ସର୍ବ ଲକ୍ଷଣ ସମ୍ପନ୍ନଃ ସର୍ବାବୟବ ଶୋଭିତଃ ।"

ନିଃସ୍ପୃହ ଗୁରୁ । ଶିଷ୍ୟ ଶୁଦ୍ଧହେଲେ ଚିନ୍ତା କରୁନାହିଁ । ମୁଁ ତୋ ଠାରେ ସନ୍ତୋଷରେ ରହିଅଛି । ତୁ ସିଦ୍ଧି ଲାଭକର ।

"ଶିଷ୍ୟ ଶୁଦ୍ଧଂ କଥ୍ୟାକଦଂ ।"

ଏହାପରେ ଗୁରୁ ମଧୁ କୈଟଭ ବାଧାର୍ଥେ ବିଷ୍ଣୁଙ୍କର ହୟଗ୍ରୀବ ଅବତାର ବର୍ଣ୍ଣନା ମୁଖସ୍ଥ କରିବାକୁ ଆଦେଶ ପ୍ରଦାନ କଲେ ।

## ବିଷ୍ଣୁଙ୍କର ହୟଗ୍ରୀବ ଅବତାର ବର୍ଣ୍ଣନା—

ସୁ ନାସିକେନ କାୟେନ ଭୂତ୍ୱା ଚନ୍ଦ୍ର ପ୍ରଭସ୍ତଦା,
କୃତ୍ୱା ହୟଶିରଃ ଶୁଭ୍ରଂ ବେଦାନାମାଳୟଂ ପ୍ରଭୁଃ । ୧ ।
ତସ୍ୟ ମୂର୍ଦ୍ଧା ସମଭବତ୍ ଦ୍ୟୌଃସନକ୍ଷତ୍ର ତାରକା,
କେଶାଶ୍ଚାସ୍ୟା ଭବଦ୍ଦୀର୍ଘା ରବେରଂଶୁ ସମପ୍ରଭାଃ । ୨ ।
କର୍ଣ୍ଣାବାକାଶ ପାତାଳେ ଲଲାଟଂ ଭୂତଧାରିଣୀ,
ଗଙ୍ଗା ସରସ୍ୱତୀ ଶ୍ରୋଣ୍ୟୌ ଭ୍ରୁବାବସ୍ତାଂ ମହୋଦଧୀ । ୩ ।
ଚକ୍ଷୁଷୀ ସୋମ ସୂର୍ଯ୍ୟୌତେ ନାସା ସନ୍ଧ୍ୟା ପୁନଃସ୍ମୃତା,
ପ୍ରଣବ ସ୍ତ୍ୱଥ ସଂସ୍କାରୋ ବିଦ୍ୟୁଜ୍ଜିହ୍ୱା ଚ ନିର୍ମିତାଃ । ୪ ।

ଦନ୍ତାଃଷ୍ଟ ପିତରସ୍ତେ ରାଜନ୍ ସୋମପା ଇତି ବିଶ୍ରୁତା,
ଗୋଲୋକୋ ବ୍ରହ୍ମଲୋକଶ୍ଚ ଓଷ୍ଠାବାସ୍ତଂ ମହାତ୍ମନଃ । ୫ ।
ଗ୍ରୀବା ଚାସ୍ୟାଭବ ଦ୍ରାଜନ୍ କାଳରାତ୍ରି ର୍ଗୁଣୋତ୍ତରା,
ଏତନ୍ ହୟଶିରଃ କୃତ୍ୱା ନାନା ମୂର୍ତ୍ତିଭିର ବୃତମ୍ । ୬ ।

ଅର୍ଥାତ୍ ଭଗବାନ ନିଜକୁ ନାନା.ମୂର୍ତ୍ତିଦ୍ୱାରା ଆବୃତ କରି ହୟଶିରଃ (ହୟଗ୍ରୀବ) ଅବତାର ଧାରଣ କରିଥିଲେ । ତାଙ୍କ ଶରୀର ସୁନ୍ଦର ନାସାଯୁକ୍ତ ହୋଇଥିଲା । ତାଙ୍କର ଚନ୍ଦ୍ର ସଦୃଶ୍ୟ ପ୍ରଭା ଓ ସମସ୍ତ ବେଦର ଆଳୟ ସ୍ୱରୂପ ଶୁଭ୍ରବର୍ଣ୍ଣ ହୟଶିରଃ (ଅଶ୍ୱମସ୍ତକ) ହୋଇଥିଲା । ସେ ମସ୍ତକ ସମସ୍ତ ନକ୍ଷତ୍ର ତାରକାଯୁକ୍ତ ଆକାଶ ହେଲା । କେଶଗୁଡ଼ିକ ସୂର୍ଯ୍ୟକିରଣ ସଦୃଶ ଦିଶୁଥିଲା । ସେ ମୂର୍ତ୍ତିର ଆକାଶ ଓ ପାତାଳ ଉଭୟ କର୍ଣ୍ଣ । ଭୂତ ଧାରିଣୀ (ପୃଥିବୀ ଲଲାଟ) ଗଙ୍ଗା ଓ ସରସ୍ୱତୀ ଉଭୟ ଶ୍ରୋଣୀ । ପୂର୍ବ ପଶ୍ଚିମ ସାଗର ଦ୍ୱୟ (ମହୋଦଧି) ଭ୍ରୂଯୁଗ୍ମ । ଚନ୍ଦ୍ର ସୂର୍ଯ୍ୟ ଚକ୍ଷୁଦ୍ୱୟ ଓ ସନ୍ଧ୍ୟା ନାସିକା ହୋଇଥିଲେ । ପ୍ରଣବ ସେ ଶରୀରର ସଂସ୍କାର ଥିଲା । ବିଦ୍ୟୁତ୍ ଜିହ୍ୱା ରୂପ ହୋଇଥିଲା । ସୋମପା ପିତୃମାନେ ଦନ୍ତ ହୋଇଥିଲେ । ସେ ମହାତ୍ମାଙ୍କର ଉଭୟ ଓଷ୍ଠ ହୋଇଥିଲେ ଗୋଲୋକ ଓ ବ୍ରହ୍ମଲୋକ । ଗୁଣାଧିକ୍ୟା କାଳରାତ୍ରି ଗ୍ରୀବା ହୋଇଥିଲେ ।

ଯଦୁମଣି ଏହି ବର୍ଣ୍ଣନା ଅତି ଶୀଘ୍ର ମୁଖସ୍ଥ କରି ଦେଇଥିଲେ । ଅଷ୍ଟମୀ ନିଶା ଅତୀତ ହେବାପରେ ବ୍ରାହ୍ମ ମୁହୂର୍ତ୍ତରେ ସ୍ନାନାଦି କରି ଶ୍ରୀ ଗୁରୁଦେବଙ୍କ ଚରଣାମୃତ ପାନକରି ଯଦୁମଣି ମନ୍ତ୍ର ଗ୍ରହଣ ଲାଗି କଠୋର ନିଷ୍ଠା ଅବଲମ୍ବନ କଲେ । ଯଥା ସମୟରେ ମନ୍ତ୍ର ପୁରଶ୍ଚରଣ କର୍ମ କରାଗଲା । ଗୁରୁଦେବ ଏହି ପ୍ରକାର ମନ୍ତ୍ର ଦାନକଲେ ।

## ହୟଗ୍ରୀବ ମନ୍ତ୍ର ଦୀକ୍ଷା—

ଓଁ ଅସ୍ୟ ଦ୍ୱିତ୍ରିଂଶ ଦକ୍ଷରସ୍ୟ ହୟଗ୍ରୀବ ମନ୍ତ୍ରସ୍ୟ, ବ୍ରହ୍ମା ଋଷିଃ, ଅନୁଷ୍ଟୁପ ଛନ୍ଦଃ, ହୟଗ୍ରୀବୋ ଦେବତା, ସର୍ବେଷ୍ଟ ସିଦ୍ଧୟେ ଜପେ ବିନିଯୋଗଃ

ବ୍ରହ୍ମଣେ ଋଷଯେ୍ନ ନମଃ ଶିରସି, ଅନୁଷ୍ଟୁପ ଛନ୍ଦ ନମଃ ମୁଖେ । ହଯ଼ଗ୍ରୀବାଯ଼ ଦେବତାୟୈ ନମଃ ହୃଦି, ବନ୍ଦଯେ ଗାଯ଼ ନମଃ ସର୍ବାଙ୍ଗେ । ଇତି ଋଷ୍ୟାଦି ନ୍ୟାସଃ ।

ହଂସଃ ସୋଽହଂ ଅଙ୍ଗୁଷ୍ଠାଭ୍ୟାଂ ନମଃ,
ବିଶ୍ୱାତ୍ମର୍ତ୍ତି ସ୍ୱରୂପାଯ଼ ତର୍ଜନୀଭ୍ୟାଂ ନମଃ ।
ଚନ୍ଦ୍ରଯ୍ୟାନନ୍ଦ ରୂପିଣେ ମଧ୍ୟମାଭ୍ୟାଂ ନମଃ,
ତୁଭ୍ୟଂ ନମୋ ହଯ଼ଗ୍ରୀବ ଅନାମିକାଭ୍ୟାଂ ନମଃ ।
ବିଦ୍ୟା ରାଜାଯ଼ ବିଷ୍ଣବେ କନିଷ୍ଠାଭ୍ୟାଂ ନମଃ,
ସ୍ୱାହା ହଂସଃ ସୋଽହଂ କରତଳ କରପୃଷ୍ଠାଭ୍ୟାଂ ନମଃ ଇତି କରନ୍ୟାସଃ ।

ହଂସଃ ସୋଽହଂ ହୃଦଯ଼ାଯ଼ ନମଃ
ବିଶ୍ୱାତ୍ମର୍ତ୍ତି ସ୍ୱରୂପାଯ଼ ଶିରସେ ସ୍ୱାହା
ଚନ୍ଦ୍ରଯ୍ୟାନନ୍ଦ ରୂପିଣେ ଶିଖାୟୈ ବଷଟ୍ ।
ତୁଭ୍ୟଂ ନମୋ ହଯ଼ଗ୍ରୀବ କବଚାଯ଼ ହୁଁ,
ବିଦ୍ୟା ରାଜାଯ଼ ବିଷ୍ଣବେ ନେତ୍ରତ୍ରଯ଼ାଯ଼ ବୌଷଟ୍ ।
ସ୍ୱାହା ହଂସଃ ସୋଽହଂ ଅସ୍ତ୍ରାଯ଼ ଫଟ୍
ଇତି ହୃଦଯ଼ାଦି ଷଡ଼ଙ୍ଗନ୍ୟାସଃ ।
ଏବଂ ନ୍ୟାସ ବିଧିଂ କୃତ୍ୱା ଧ୍ୟାଯ଼େତ୍

ଶରଚ୍ଛଶାଙ୍କ ପ୍ରଭମଶ୍ୱବକ୍ତ୍ରଂ ମୁକ୍ତାମଯ଼ୈଂରାଭରଣୈଂ ରୂପେତମ୍
ରଥାଂଗଶଂଖାଂଚିତ ବାହୁଯୁଗ୍ମଂ ଜାନୁଦ୍ୱଯ଼ ନ୍ୟସ୍ତକରଂ ଭଜାମଃ

ଇତି ଧ୍ୟାଯ଼େତ୍ ।

"ହଂସଃ ସୋଽହଂ ବିଶ୍ୱାତ୍ମର୍ତ୍ତି ସ୍ୱରୂପାଯ଼ ଚନ୍ଦ୍ରଯ୍ୟାନନ୍ଦ ରୂପିଣେ,
ତୁଭ୍ୟଂ ନମୋ ହଯ଼ଗ୍ରୀବ ବିଦ୍ୟାରାଜାଯ଼ ବିଷ୍ଣବେ ସ୍ୱାହା, ହଂସଃ ସୋଽହଂ ।
ଇତି ଦ୍ୱିଚତ୍ୱାରିଂଶଦକ୍ଷରେ ହଯ଼ଗ୍ରୀବ ମନ୍ତ୍ରଃ । (ତନ୍ତ୍ରସାରେ)

ଏହି ସମୟରେ ଯଦୁମଣି ମନ୍ତ୍ର ଦେବାଳଯ଼ ମଧ୍ୟରେ ପ୍ରତିଦିନ ଜପ କରିବାକୁ ଲାଗିଲେ । ଭିକ୍ଷାକରି ହବିଷ୍ୟ କରି ଠିକ୍ ବିଧିରକ୍ଷା କରୁଥାନ୍ତି ।

ଜପ ଆଉ ଦଶଲକ୍ଷ ବାକିଅଛି, ଯଦୁମଣିଙ୍କୁ ଜ୍ୱର ହେଲା । ସେ ଏକାନ୍ତ ଅସମ୍ଭାଳ ହୋଇ ନିଷ୍ଠା ତ୍ୟାଗକଲେ ଏମନ୍ତ କି ଜପବିଧି ମଧ୍ୟ ତ୍ୟାଗ କରିବାକୁ ବାଧହେଲେ । ଏହା ମଧ୍ୟରେ ଶବ୍ଦେ ଦଶଦିନ ସେ ଦନ୍ତଧରି ପଡ଼ିଥିଲେ । ବିଫଳ ହେବାରୁ ଗୁରୁଙ୍କ ମନରେ ବହୁତ ଦୁଃଖ ହେଲା ।

ପୁଣି ଶରୀର ସୁସ୍ଥ ହେବାରୁ ଗୁରୁଦେବ ପ୍ରିୟ ଶିଷ୍ୟଙ୍କୁ କବିତା ଲାଭ ଲାଗି ହୟଗ୍ରୀବଙ୍କର ଏକାଦଶାକ୍ଷର ମନ୍ତ୍ର ପ୍ରୟୋଗ ଦୀକ୍ଷା ଦାନକଲେ । ଏହି ମନ୍ତ୍ରଟି ହେଉଛି – "ଓଁ ହୟଗ୍ରୀବାୟ ନମଃ ସ୍ୱାହା ଓଁ ।"

ଧ୍ୟାନ ହେଲା— ଧବଳ ନଳିନ ନିଷଂ କ୍ଷୀରଗୌରଂ କରାଗ୍ରୈ,

ର୍ଜପବଲୟସୁ ସଲେକେ ପୁସ୍ତକାଖ୍ୟଷ୍ଟ ଦାନୈଃ ।

ଦଧତ ମମଳ ଦତ୍ୱା କଳ୍ପଦାନାଭିରାମଂ,

ତୁରଗ ବଦନ ବିଷ୍ଣୁଂ ନୌମି ବିଦ୍ୟାଧିରାଜମ୍ ।

ବ୍ରହ୍ମହୟ, ମେଧାହୟ, ସ୍ମୃତିହୟ, ବିଦ୍ୟାହୟ, ଲକ୍ଷ୍ମୀହୟ, ବାଗୀଶୀହୟ, ବିଦ୍ୟା ବଶୀକରହୟ, ନାମ ବିମର୍ଦ୍ଦନହୟୌ, ଲକ୍ଷ୍ମୀ ସରସ୍ୱତୀ ରତି ପ୍ରୀତି କୀର୍ତ୍ତି, କାଂତି ତୁଷ୍ଟି ପୁଷ୍ଟି ଭିଃ । ଅସ୍ୟ ପୁରଶ୍ଚରଂ ଲକ୍ଷ ଚତୁଷ୍ଟୟଂ ଜପଃ ।

ଏହି ଜପ ଆଷାଢ଼ ଶୁକ୍ଳ ଦଶମୀ ଦିନ ଶେଷହେଲା । ଯଦୁମଣି ତନ୍ଦ୍ରା ମଧ୍ୟରେ ସ୍ପଷ୍ଟରେ ଦେଖିଲେ ଅଶ୍ୱମୁଖ ବିଶିଷ୍ଟ ବିଷ୍ଣୁ ଶଙ୍ଖ, ଚକ୍ର, ଗଦା ଓ ପଦ୍ମ ଧରି ତାଙ୍କ ସମ୍ମୁଖରେ ଉଭା ହୋଇଛନ୍ତି । ସେ ଏ ମୂର୍ତ୍ତି ଦେଖି ହସି ଉଠିଲେ । କହିଲେ, "ହେ ପ୍ରଭୁ ! ତୁମଙ୍କୁ ମୁଁ କି ବର ମାଗିବି ? ତୁମେ ଆଗ କହ, ତୁମର ଚାରି ହାତରେ ଚାରିଟି ପଦାର୍ଥ ରହିଛି, ତୁମେ ନାକ ତ ସବୁଦା ସୁଁଢ଼ୁ ସୁଁଢ଼ୁ କରୁଛ, ସିଂଘାଣି କପରି ପୋଛୁଛ ?"

ଦେବତା ହସି ଉଠିଲେ କହିଲେ, "ବତ୍ସ ! ତୁ ନିଶ୍ଚୟ ପଣ୍ଡିତ ହୋଇବୁ । ତୋର ସାଧନା ସମ୍ପୂର୍ଣ୍ଣ ନ ହେଲେ ହେଁ ତୁ ଯେତେବେଳେ ମୋତେ ପରିହାସ କରିଛୁ ତୁ ଜଣେ ନିର୍ଭିକ ହାସ୍ୟରସିକ ଭାବରେ ଧରଣୀ ତଳରେ ପ୍ରତିଷ୍ଠା ଲାଭ କରିବୁ । ହେଲେ ଦେଖ, ତୋର ପରିହାସରେ କୁପିତ

ହୋଇ ମୋର ବାମାଙ୍ଗରୁ ପଦ୍ମାଳୟା ଲକ୍ଷ୍ମୀ ପ୍ରକଟିତ ହେଲେ । ସରସ୍ୱତୀ, ରତି ପ୍ରୀତି, କୀର୍ତ୍ତି, କାନ୍ତି, ତୁଷ୍ଟି ତୋତେ ନଷ୍ଟପ୍ରୁ ବରଦାୟକ ହେବେ ।

ଚନ୍ଦ୍ରା ଭାଙ୍ଗି ଯିବା ପରେ ସାଧକ ଯଦୁମଣି ଢଳି ପଡ଼ିଲେ । ତାଙ୍କର ଚୈତନ୍ୟ ଲୋପ ହୋଇଗଲା । ସେ କେତେବେଳେ ଉଠିଲେ ଜାଣନ୍ତି ନାହିଁ । ପରବର୍ତ୍ତୀ ସମୟରେ ଯଦୁମଣି ସ୍ୱୀକାର କରିଛନ୍ତି ଯେ, ହୟଗ୍ରୀବ ମହାପ୍ରଭୁଙ୍କ ପ୍ରସାଦରୁ ତାଙ୍କର କବିତ୍ୱ ସ୍ଫୁରଣ ହୋଇଅଛି ଏବଂ ନିଜକୁ ଉତ୍କଳର ଘଣ୍ଟ ରୂପେ ପରିଚିତ କରାଇଛନ୍ତି ।

"ହୟଗ୍ରୀବ ମହାପ୍ରଭୁ ପ୍ରତାପେ, ଥୋଡ଼ା ନୁହେଁ ଲୋଡ଼ା କରନ୍ତି ନୃପେ,
ଯୋଡ଼ା ହେବା ମୋ ପୌଢ଼ କବିତାକୁ, କଳିନ୍ଦଜ ରହିଦାମି କର୍ଣ୍ଣକୁ
ଭିଲେ ଭଲ, ଖଣ୍ଡେ ଖଣ୍ଡ ଯେ,
ନବ ଦୁର୍ବାଦଳ ଶ୍ୟାମଳ କୃପାରୁ ମୋ ନାମ ଉତ୍କଳ ଘଣ୍ଟ ଯେ ।"
ଏଣୁ ଯଦୁମଣି "ଘଣ୍ଟକବି" ରୂପେ ଉତ୍କଳରେ ସୁବିଦିତ ।

ଯଦୁମଣି ଗୃହତ୍ୟାଗ କରି ଆସିବା ଦିନୁ ତାଙ୍କ ପିତାମାତାଙ୍କ ମନରେ ଆଦୌ ସୁଖ ନଥିଲା । ତାଙ୍କର ଜନନୀ ରୂପବତୀ ହେଲେହେଁ ଗୁଣବତୀ ନଥିଲେ । ତେଣୁ ଏକମାତ୍ର ପୁତ୍ରର ଏପରି ଅସାଧ୍ୟ ଚେଷ୍ଟାକୁ ଉତ୍ସାହିତ କରି ପାରି ନଥିଲେ ।

ମାନ୍ଧାତାପୁର ମହାପାତ୍ରଙ୍କ ଠାରୁ ତଥ୍ୟ ବୁଝି ସେମାନେ ଧୁମୁସର ରାଜ୍ୟର ବିଷ୍ଣୁଚକ୍ର ଗ୍ରାମରେ ପହଞ୍ଚି ଅନ୍ୟ ଶିଷ୍ୟମାନଙ୍କ ସାହାଯ୍ୟରେ ଗୋଷାଣୀ ମନ୍ଦିରରେ ହତ ଚୈତନ୍ୟ ଯଦୁମଣିଙ୍କୁ ଦେଖି ତାଙ୍କୁ ବହୁକଷ୍ଟରେ ଚେତାକରି ସାଙ୍ଗରେ ନେଇ ଏକମୁହାଁ ଗ୍ରାମକୁ ଫେରିଲେ ।

ରଘୁନାଥ ସୂତ୍ରଧର ସେତେବେଳେ ଦଶପଲ୍ଲାରେ ଜଣେ ଖାନଦାନ୍ ଲୋକ । ଅତୀତରେ ତାଙ୍କ ପରିବାର ଗଞ୍ଜାମରୁ ଏ ରାଜ୍ୟକୁ ଆସିଥିଲେ । ରଘୁନାଥ ସୂତ୍ରଧର ଶିଳ୍ପକଳାରେ ଜଣେ ଅଦ୍ୱିତୀୟ ଭାସ୍କର ।

ସେହି କୁଞ୍ଜବନ ଗଡ଼ରେ ୧୭/୧୮ ବର୍ଷର ଯଦୁମଣି ମାମୁଁ ଅଜା ରଥୀ ଭାସ୍କରଙ୍କ ଘରେ ପରମ ସୁଖରେ ରହିଲେ । ମାଇଁ ଓ ଅଜା ପ୍ରତିଦିନ ରାତିପାହିଲେ ପରିହାସ କରନ୍ତି । ପରିହାସ ହିଁ ବଢ଼ିଘର କଥାନେଇ । ଦୁଇ ତିନିମାସ ପରେ ଯଦୁମଣିଙ୍କ ସ୍ୱାସ୍ଥ୍ୟ ପୂର୍ଣ୍ଣାଙ୍ଗ ହୋଇଗଲା । ଦାଣ୍ଡରେ ଅତି ମଧୁର ସ୍ୱରରେ ଉପେନ୍ଦ୍ର ଭଞ୍ଜଙ୍କ ଗ୍ରନ୍ଥ ଆବୃତ୍ତି ଶୁଣି ସର୍ବସାଧାରଣଙ୍କର ନଜର ପଡ଼ିଲା ଏହି ଯୁବକ ଉପରେ ।

ସେହି ସମୟରେ ସେଠାକାର ରାଜଗୁରୁ ସେଠାକାର ବଡ଼ ପଣ୍ଡିତ ଥିଲେ । ଯଦୁମଣିଙ୍କ ମଧୁର ଧ୍ୱନି ଶୁଣି ରାଜଗୁରୁଙ୍କ ପତ୍ନୀ ପାରଦେଈ ବିଚଳିତ ହୋଇ ସ୍ୱାମୀଙ୍କୁ କହିଥିଲେ ଯେ ସେହି ପିଲାଠାରୁ ସେ ଜଗନ୍ମୋହନ ରାମାୟଣ ପୁରା ଶୁଣନ୍ତେ । ବୃଦ୍ଧ ରାଜଗୁରୁ ନବୀନା ଭାର୍ଯ୍ୟାର ସବୁ ଅନୁରୋଧ ରକ୍ଷା କରୁଥିଲେ । ସେ ଦେଖିଲେ ସୁକୁମାର ଚମତ୍କାର ପିଲା । ରଥୀ ଭାସ୍କରଙ୍କୁ କହି ଯଦୁମଣିଙ୍କୁ ଘରକୁ ନେଇଗଲେ ।

ବ୍ରାହ୍ମଣ ଦିନ ସଙ୍କଳ୍ପକରି ପୁରାଣ ପଢ଼ନ୍ତି । କିନ୍ତୁ ମହାପଣ୍ଡିତ ରାଜଗୁରୁଙ୍କ ଘରେ ଅଭିନବ ଘଟଣା ଘଟିଲା । ଶୂଦ୍ର ତରୁଣ ଦ୍ୱାରା ପବିତ୍ର ରାମାୟଣ ଚରିତ ବ୍ରାହ୍ମଣ ଘରେ ପଠିତ ହେଲା । ଆଜ୍ଞାଧୀନ ଯଦୁମଣି ଏଇଠି ଉତ୍ତମ ଖାଦ୍ୟ, ଉତ୍ତମ ବ୍ୟବହାରରେ ନିରନ୍ତର ମୋହିତ ହୋଇ ମାମୁଁ ଅଜା ଘରଠାରୁ ରାଜଗୁରୁଙ୍କ ଘରକୁ ଅଧିକ ମନେକଲେ । ରଥୀ ଭାସ୍କରଙ୍କର ରାଜଗୁରୁ ସଙ୍ଗାତ ଓ ବନ୍ଧୁ । ତେଣୁ ଯଦୁମଣିଙ୍କ ମାଇଁଆଈ ଯଦୁମଣିଙ୍କ ପାଇଁ କିଛି ଚିନ୍ତିତ ନଥିଲେ । ବରଂ ରାଜଗୁରୁଙ୍କ ଯୋଗୁଁ ପିଲାର ପାଠ ଶାସ୍ତ୍ରରେ ଉନ୍ନତି ହେବ ବୋଲି ଆନନ୍ଦିତ ଥିଲେ ।

ଦିନରେ ରାଜଗୁରୁ ବିଭିନ୍ନ ସଂସ୍କୃତ କାବ୍ୟ ସାହିତ୍ୟ ବୈଦେହୀଶ ବିଳାସ, ଲାବଣ୍ୟବତୀ, କୋଟିବ୍ରହ୍ମାଣ୍ଡ ସୁନ୍ଦରୀ, ସୁଭଦ୍ରା ପରିଣୟ ଆଦି ଭଞ୍ଜଙ୍କ କାବ୍ୟ କବିତା ଯଦୁମଣିଙ୍କୁ ଅର୍ଥକରି ବୁଝାନ୍ତି । ଯଦୁମଣି ଅତି ନିବିଡ଼ ଭାବରେ ତାହା ବୁଝନ୍ତି ଓ ମନେ ରଖନ୍ତି । ହୟଗ୍ରୀବଙ୍କ କୃପାରୁ ତାଙ୍କର ସ୍ମୃତିଶକ୍ତି ଓ ବୁଦ୍ଧିଶକ୍ତି ଅତି ପ୍ରଖର ହୋଇଥିଲା । ସଞ୍ଜହେଲେ ରାମାୟଣ ପାଠ ହୁଏ । ସାହିର ଝିଅ ବୋହୂ ଶୁଣିବାକୁ ଆସୁଥାନ୍ତି ।

ରାୟଗୁରୁଙ୍କ ପଡ଼ଶାଘର ହେଉଛନ୍ତି ରଘୁନାଥ ସୂତ୍ରରାୟ । ତାଙ୍କ ଘରକୁ ବାଡ଼ ପାଖେ ବାଟଥାଏ । ଧନବନ୍ତ ସୂତ୍ରରାୟଙ୍କ ଗର୍ବିତା ସ୍ତ୍ରୀ କେବେ ରାୟଗୁରୁଙ୍କ ଖୁଆଡ଼କୁ ଆସିବାର ଦେଖା ନଥାଏ । କାରଣ ସେ ଗରିବର ଘରର ରମଣୀ ହେଲେହେଁ ଅତି ମାତ୍ତସମ୍ପନ୍ନା ଥାଆନ୍ତି । ରାୟଗୁରୁ ତିନି ତିନୋଟି ବିବାହ କଲେ ତାଙ୍କୁ ଅଣ୍ଟ ନାହିଁ । ତିନିଥରରେ ଧର୍ମଗ୍ରନ୍ଥ । ତଥାପି ରାୟଗୁରୁ ଚତୁର୍ଥଥର ବିବାହ କରିବାକୁ ପୁଣି ଏକ ପରମା ସୁନ୍ଦରୀ ଷୋଡ଼ଶୀ ଯୁବତୀଙ୍କୁ ବଧୂ କରି ଆଣିବାରୁ ସେ ଅସନ୍ତୁଷ୍ଟ ଥାନ୍ତି । ଅବଶ୍ୟ ଧନ ଲୋଭରେ ଯୁବତୀର ପିତା ସିନା ବିକ୍ରୟ କରିଦେଲ, ବୁଢ଼ାର ମୃତ୍ୟୁ ପରେ ସେ ବାଳିକା କପରି କ'ଣ କରିବ ଭାବି ସେ ଅସ୍ଥିର ହୁଅନ୍ତି । ଏଣେ ଗ୍ରାମ, ଗଡ଼ ସବୁଆଡ଼େ ଲୋକେ ପ୍ରବଚନ ଗଢ଼ି ଗାଉଥାନ୍ତି "ଆଲୋ ପାରବ ବୁଢ଼ା ଘଇତାକୁ ଏଡ଼େ ଗରବ ।" ବୁଢ଼ା ଘଇତାଟି ମରିଯାଆନ୍ତା, ପରବ ଗରବ ଭାଜିଯାଆନ୍ତା ।

ସୂତ୍ରରାୟଙ୍କ କାମିନୀ ମୁକ୍ତାଦେଇ ବାଡ଼ ସନ୍ଧିରେ ଉଣ୍ଡି ପାରିର ମଧୁର ରୂପଶ୍ରୀ କେତେଥର ଦେଖି ବ୍ୟାକୁଳ ହୋଇଛନ୍ତି । ଠିକଏ ଦୁଃଖ ସୁଖ ହୁଅନ୍ତେ । ପାରିର ଗୀତ ଭାଗବତ ମଧ୍ୟ ସେ କେତେଥର ଶୁଣିଥାନ୍ତି । କାରଣ ପାରି ପାଠଶାଳାରେ ନିର୍ଜିତ ଥାଏ । ସାହା ବା ନଥିଲା ତାକୁ ଚଉଷଠୀ କାଳରେ ରାୟଗୁରୁ ନିର୍ଜିତ କରିଛନ୍ତି । ସେ ଆଠବର୍ଷ ହେଲା ଆସିଅଛି । ଏଇଠି ସେ ଯୁବତୀ ହୋଇଛି । ଏଇଠି ସେ ରାୟଗୁରୁଙ୍କ ଠାରୁ ସବୁଶିକ୍ଷା କରିଛି ।

ଏଇ ଯୁବକଟି କିଏ ? ଏଇ ସୁନ୍ଦର ତରୁଣଟି କା'ର ? ରୂପ ସାଥିକୁ ତାର ମଧୁର ଧ୍ୱନିରେ ସୂତ୍ରରାୟଙ୍କ ପରିବାର ଉଚ୍ଛନ୍ନ ହୋଇ ଉଠିଲେ । ସେମାନେ ଧନବନ୍ତର ଆଭିଜାତ୍ୟକୁ ଭୁଲି ଦିନେ ରାୟଗୁରୁଙ୍କ ଅଗଣାକୁ ବାଟ ଫିଟାଇ ଏକ କବାଟ ଦୁଆରବନ୍ଧ ଲଗାଇଲେ । ରାୟଗୁରୁ ଓ ପାରିର ଆନନ୍ଦ କହିଲେ ନସରେ । ସେହି ସୂତ୍ରରାୟଙ୍କ ବିଶାଳ ପରିବାରର ସୁନ୍ଦର କନ୍ୟାମାନେ ମାଡ଼ି ଆସିଲେ । ଯେଉଁ ଦିନ ସୂତ୍ରରାୟଙ୍କ ପତ୍ନୀ ମୁକ୍ତାଦେଇ ପାରିର ଗୃହରେ ପାଦଦେଲେ, ସବୁ ଦୁଃଖ ସେ ଭୁଲିଗଲେ ।

ରାଯ୍ଗୁରୁ ଆସନ ପକାଇ ଦେଲେ । ମୁକ୍ତାଦେଇ ବୃଦ୍ଧ ରାଯ୍ଗୁରୁଙ୍କୁ ପ୍ରଣାମ କଲେ । ରାଯ୍ଗୁରୁ ଆଶୀର୍ବାଦ କଲେ । "ମନୋବାଞ୍ଛା ସିଦ୍ଧିରସ୍ତୁ, ଅଦ୍ୟ ସୁଲକ୍ଷଣୀ ଭବ ।"

## ଖଂଜନା ସନ୍ଧି ବିବାଦ—

ସେହି ପରିବାର ମଧ୍ୟରେ ମୁକ୍ତାଙ୍କ ଗର୍ଭସମ୍ଭୂତା ଖଂଜନା ଓ ଝୁଂଠକମଣି ଦୁଇଟି କନ୍ୟା ଯେପରି ରୂପ ଗର୍ବିଣୀ ସେପରି ଗୁଣ ଗର୍ବିଣୀ ଥିଲେ । ଖଂଜନା ନିଜେ ସଙ୍ଗୀତ ଓ ନୃତ୍ୟରେ ପାରଦର୍ଶିନୀ ହେଲେ ସୁଦ୍ଧା ତରୁଣ ଯଦୁମଣିଙ୍କ ସ୍ୱର ଓ ରୂପକୁ ଅତି ଭଲ ପାଉଥିଲେ ମନ ମଧ୍ୟରେ । କିନ୍ତୁ ବାହାରେ କହୁଥାଏ ଏଇଟା କଏମ ? ଏ ମାଙ୍କଡ଼ଟା କଏମ ? ଏମିତି ବେଙ୍ଗରଡ଼ି କିଆଁ ଶୁଣୁଛୁ ।

ଥରେ ଖଞ୍ଜନାର ପରିହାସୀ ଭାଉଜ କହିଲେ, "ଖଞ୍ଜନା କେହି ନ ଜାଣିଲେ ମୁଁ ତ ଜାଣେ ତୁମକୁ । ତୁମେ ଯାହାକୁ ଭଲପାଅ ତା ବିରୁଦ୍ଧରେ ବେଶୀକରି କହ । ଯାହା ତୁମେ ପିନ୍ଧିବାକୁ ବେଶୀ ଭଲପାଅ ତାହାକୁ ବେଶୀ ଘୃଣା ଦେଖାଅ । ଯେଉଁ ଖାଦ୍ୟ ତୁମର ବେଶୀ ପ୍ରିୟ ତା ବିରୁଦ୍ଧରେ ତୁମେ ଅଧିକ କହିଥାଅ ।"

ରାଗରେ ଖଂଜନା ଦୁଇଦିନ ରୁଷିଲା । ସେତେବେଳକୁ ତାକୁ ବାର ବର୍ଷ ହୋଇଥାଏ । କିନ୍ତୁ ଭାଉଜ ଯେତେବେଳେ କହିଲେ—"ତୁମେ ସେହି ମାଙ୍କଡ଼ଟାକୁ କିଆଁ ଭଲ ପାଇବ ମ, ତୁମେ ତା ବେଙ୍ଗରଡ଼ି କିଆଁ ଶୁଣିବ ମ ।" ଏହା କହନ୍ତେ ଖଂଜନାର ରୁଷା ଭାଙ୍ଗିଲା ।

କାହିଁ ଦରିଦ୍ର ମୁକୁନ୍ଦ ମହାପାତ୍ର ପୁଅ ଯଦୁମଣି, କାହିଁ ବା ବିଶାଳ ଧନବନ୍ତ ସୂର୍ଯ୍ୟରାୟଙ୍କ ଗେହ୍ଲା କନ୍ୟା ଖଂଜନା ।

ମନ୍ଦିରରେ ଥରେ ଦ୍ୱିପହରରେ ଉଭୟଙ୍କର ଭେଟ ହେଲା । ଉଭୟଙ୍କ ଆଖିରେ ଲୁହ ଆସିଗଲା । ଖଂଜନା ନିଜ ପିନ୍ଧା କାନରେ ଯଦୁମଣିଙ୍କ

ଆଖିର ଲୁହ ପୋଛିଦେଲି । ଯଦୁମଣି ନଇଁପଡ଼ି ଖଂଜନାର କୋମଳ ପାଦରେ ଚୁମ୍ବନ କରିଦେଲେ । ଏହାପରେ ଖଂଜନା ନିରବରେ ବସି ରହିଲି । ଯଦୁମଣି ଚାଲିଗଲେ । ସାଙ୍ଗରେ ଥିବା ହରଗୌରୀ ମନ୍ଦିର ଦୁଆରେ ରହି ଏ ଦୃଶ୍ୟ ଦେଖୁଥିଲି ।

କିଛିଦିନ ପରେ କିଶୋରୀ ଖଂଜନା ହାତରେ ଯଦୁମଣିଙ୍କ ହସ୍ତଚଣ୍ଡି ବନ୍ଧାହେଲି । ସେତେବେଳେ ପିଲାକନ୍ୟା ବିବାହରେ ମଧ୍ୟ ମଧୁଶଯ୍ୟାର ବ୍ୟବସ୍ଥା ଯୁବତୀ ବିବାହ ପରି ହୁଏ । ଶେଜରେ ଯଦୁମଣି ବାରବର୍ଷର କନ୍ୟାକୁ ପବିତ୍ର ଭାବରେ ଆଲିଙ୍ଗନ କରି ଶୋଇବାର କଥା କେବଳ ତାଙ୍କର ଠାରେ ସମ୍ଭବ ହୋଇଥିଲି ।

## ଯଦୁମଣିଙ୍କ ପ୍ରଥମ ପୁରୀଯାତ୍ରା—

ଅଷ୍ଟମଙ୍ଗଳା ଦିନ ଜୁଆଇଁ ଘରରେ ଯଦୁମଣି ଲୁଚି ରହିବାର କଥା । ସେଦିନ ଶଶୁର ଘରର କୌଣସି ଲୋକ ଜୁଆଇଁ ମୁହଁ ଚାହିଁବା ନିଷେଧ । ସେତେବେଳକୁ କୁଞ୍ଜବନ ଗଡ଼ରେ ଯଦୁମଣିଙ୍କର ଏପରି ନିନ୍ଦା ବିସ୍ତୃତ ହୋଇଯାଇଥିଲି ଯେ, ସେ ଦାଣ୍ଡକୁ ବାହାରିବାକୁ ଭୟ କରୁଥିଲେ । ବିଶେଷରେ ରାଜଗୁରୁଙ୍କ ପତ୍ନୀ ଯୁବତୀ ସାରି ସହିତ ତାଙ୍କର ମନ୍ଦ ସମ୍ପର୍କ ଥିଲି ବୋଲି ଚାରିଆଡ଼େ ପ୍ରଚାର ହୋଇ ଯାଇଥିଲି । ଏପରି କୁପ୍ରଚାର କରିବାକୁ ଲୋକେ ଭୁଲି ନଥିଲେ । ଲୋକଙ୍କର ଏପରି ଧାରଣା ଯୋଗୁଁ ଯଦୁମଣି ଅଷ୍ଟମଙ୍ଗଳାରେ ଲୁଚିବା ଅଭିପ୍ରାୟରେ ପୁରୀ ଚାଲିଗଲେ ।

ହାତରେ ପଇସାଟିଏ ନାହିଁ, ତଥାପି ସେ କୌଣସି ପ୍ରକାରେ ପୁରୀରେ ଯାଇ ପହଞ୍ଚିଲେ । କେଉଁଠି ରହିବେ କେଉଁଠି ଖାଇବେ କିଛି ଠିକଣା ନାହିଁ । ନରେନ୍ଦ୍ର ଏ ପାଖେ ନିତ୍ୟକର୍ମ ଶେଷକରି ଜଗନ୍ନାଥ ମନ୍ଦିରକୁ ଚାଲିଗଲେ । ଯେଠାରେ ଭକ୍ତଙ୍କ ଗୁନ୍ଦ ବୋଲି ଅର୍ଥ ବୁଝାଇ ଖାଇବାକୁ ମୁଠେ ମିଳିଯାଏ । ଦିନେ କୌଣସି ଠାରୁ କିଛି ନ ମିଳିବାରୁ ଏକାବେଳେ ଉପବାସ ରହି ଅପରାହ୍ନକୁ ଦାସ ସୁଆର ଘରକୁ ଯାଇ ଖାଇବାକୁ

ଯାଇଲେ । ସୁଆର ଏହ୍ୱ ଯୁବକଙ୍କୁ ଜଗୁଆଳୀ କରି ଘରେ ଜଗାଇବାକୁ ଇଚ୍ଛା କରିଥିଲେ । କାରଣ ତାଙ୍କର ଏହି ସ୍ତ୍ରୀର ଚରିତ୍ର ଖରାପ ଥିଲା । ସୁଆରଙ୍କ ସ୍ତ୍ରୀ ଯଦୁମଣିଙ୍କୁ କଥା ନ କହି ମୁଠେ ଖାଇବାକୁ ନ ଦେଇ ନିଜେ ଖାଇ ଦେଇ ଶୋଇ ପଡ଼ିଲା । ତରୁଣ ଯଦୁମଣି କ୍ଷୁଧ ରେ ଆତୁର ହୋଇ ଶେଷକୁ ଏକ ବୁଦ୍ଧି ପାଞ୍ଚିଲେ । ବାହାର କବାଟ ବନ୍ଦ କରିଦେଲେ । ସୁଆର ଆସି କବାଟରେ ଆଘାତ କଲେ । ଯଦୁମଣି କବାଟ ଖୋଲିଲେ ନାହିଁ । ଶେଷକୁ ବାହାରକୁ ଆସି କହିଲେ । ଏମିତି ତ ଘର ମାଲିକ କହି କେତେଜଣ ଗଲେଣି ତୁମକୁ ମିଶାଇ ଏବେ ପାଞ୍ଚଜଣ ହେବେ ।

ଏହାଶୁଣି ସୁଆର ଘର ମଧ୍ୟକୁ ପଶିଯାଇ କ୍ରୋଧରେ ଅଜ୍ଞାନ ହୋଇ ଯୁବତୀ ସ୍ତ୍ରୀକୁ ଘୋଡ଼ା କୋରଡ଼ାରେ ମାଡ଼ ଦେଲା । ଏଣେ ଯଦୁମଣି କାନ୍ଥରେ ଗୋଟିଏ ଗୀତ ଲେଖି ସେଠୁ ଚାଲିଗଲେ ।

"ଅପାଂଶୁଳା ଜଣେ ପାଂଶୁଳାରୁ ପଣେ
ପଦ୍ମଜ ପ୍ରବୃତ୍ତି ଧରାରେ,
ହଂସକର ସ୍ୱନେ ହସେ ଘଷେ ସେ କ
ନିଷେଧେ ନ ଦେଲୁ ଧରାରେ ।
ଚନ୍ଦ୍ରିକା,
ଚକୋର-ମାରପଙ୍କୁ ହେଲା,
ବଗିବୁ ବାଗିବ ବାରୁ ପରାପରେ
ମାରେ ମାର ଦଶା ମେଣ୍ଟିଲା ।".

ଅର୍ଥାତ୍ ସାଧାରଣତଃ ଏ ଜଗତର ସ୍ରଷ୍ଟା ବ୍ରହ୍ମା (ପଦ୍ମଜା), ଆପାଂଶୁଳା ଯେ ସତୀ ଜଣକୁ ପଣେ ପାଂଶୁଳା ଅର୍ଥାତ୍ ଅସତୀ ସୃଷ୍ଟି କରିଛନ୍ତି । ତୁ ନିଶ୍ଚୟ ଅସତୀ କାରଣ ପଦ ନୂପୁର ଧ୍ୱନି, ହସ ଓ ଅନ୍ୟାନ୍ୟ ଢଙ୍ଗଦ୍ୱାରା ଅସତୀର ସମସ୍ତ ଲକ୍ଷଣ ମୋତେ ଦେଖାଇ ସୁଦ୍ଧା ଧରା ଦେଲୁ ନାହିଁ । ତୁ ଚନ୍ଦ୍ରିକା ଅର୍ଥାତ୍ ଜ୍ୟୋତ୍ସ୍ନା ପିପାସୀ, ମୁଁ ଚକୋର ହୋଇ ମଧ୍ୟ ମୋର ତୃଷା ନିବାରଣ କଲୁନାହିଁ । ଦେଖ କୁପିତ ବ୍ୟକ୍ତିକୁ ଉତ୍ତେଜିତ କରି ଘୋଡ଼ା କୋରଡ଼ାରେ ତୋତେ ମାଡ଼ ଖୁଆଇ ମୋର ତୃଷା ଦୂର କରୁଛି ।

ଯଦୁମଣି ଵନେ ଵନେ ସମୁଦ୍ର ତଟରେ ବସି ବହୁ ସମୟ ଚନ୍ତାମଗ୍ନ ହୁଅନ୍ତି । ଆକାଶରେ କଳା ବାଦଲର ଅପୂର୍ବ ଶୋଭା, ସହଜେ ଆଷାଢ଼ ମାସ, ମହାକବି କାଳିଦାସଙ୍କ ରଚିତ ମେଘଦୂତର କେତୋଟି ଶ୍ଳୋକ ମନେ ପଡ଼ି ଯାଉଥାଏ ।

"କଶ୍ଚିତ୍‌କାନ୍ତା ବିରହଗୁରୁଣା ସ୍ୱାଧିକାରାତ୍ ପ୍ରମତ୍ତଃ,
ଶାପେନାସ୍ତଂ ଗମିତ ମହିମା ବର୍ଷଭୋଗ୍ୟେଣ ଭର୍ତ୍ତୁଃ ।
ଯକ୍ଷଶ୍ଚକ୍ରେ ଜନକ ତନୟା ସ୍ନାନ ପୁଣ୍ୟୋଦକେଷୁ,
ସ୍ନିଗ୍ଧଚ୍ଛାୟା ତରୁଷ ବସତିଂ ରାମଗିର୍ଯ୍ୟାଶ୍ରମେଷୁ ।"

ଯଦୁମଣିଙ୍କ ମାନସପଟରେ କାନ୍ତ ବିରହିଣୀ ଯକ୍ଷିଣୀର ଲୋତକାପ୍ଳୁତ ଆନନ ନବ ପରିଣୀତା ଖଂଜନାଙ୍କ ମୁଖଶ୍ରୀରେ ପ୍ରତିଫଳିତ ହେଉଥାଏ । ଏକାନ୍ତ ବିରହରେ ମ୍ରିୟମାଣ ହୋଇ, ଯଦୁମଣି ଖଂଜନାଙ୍କ ନିମନ୍ତେ ହେନ୍ତ ସମୁଦ୍ର ତଟରେ ବସି ଭାସମାନ ବାଦଲକୁ ଚାହିଁ ଏକ କବିତା ଗାଇ ଉଠିଲେ ।

"ବରଷା କାଳ ହୋଇଲା ଆସିରେ
କର ସାରସ ନେତ୍ରୀ ଯିବ ଭାସିରେ । ୧ ।
ବରଷାଇ ନେତ୍ର ଅଶ୍ରୁ ଧାରକୁ
ବୁହାଉ ଥିବେତ ବସି ଉରକୁ ରେ । ୨ ।
ବରଷ ପୂରିଲା ହେଲା ବିଦେଶୀ
ବରଷ ପୂରି ନାହିଁ ତାକୁ ଶଶିରେ । ୩ ।
ବର ବରମାର ଶୁଭ ଖବର
ବରଗନ୍ତା କେହୁ ମୋର ଆଗର ରେ । ୪ ।
ବର ମୁଁ ଧନର କାହିଁ ଆଦର
ବରଧନ କରିବ ସଗ ବର୍ଲ୍ଲ ରେ । ୫ ।
ବରିଚ୍ଛି ମାରଇ ମୋର ଶବର
ବରଡ଼ା ପରି ଥରେ କଳେବର ରେ । ୬ ।

ବିରହ ହେବେ କି ଯାହାଙ୍କ ବର
ବରଛ ଯିବ ମୁଁ ପ୍ରିୟା ନବର ରେ । ୭ ।
ବିରକ୍ତ ବାଳକ ଯଦୁ କବର
ବର ଚନ୍ଦ୍ରାର୍ଥୀ ପ୍ରବାସେ ଥିବାର ରେ" । ୮ ।

ଯଦୁମଣି ପୁରୀରେ ଭଦ୍ରିକା କଥା ଜାଣି ରଘୁନାଥ ସୂର୍ଯ୍ୟଙ୍କ ସ୍ୱତନ୍ତ୍ର ବାର୍ତ୍ତାବହ ପୁରୀ ଆସି ୧୮୦୨ ଖ୍ରୀଷ୍ଟାବ୍ଦରେ ଯଦୁମଣିଙ୍କୁ ପୁରୀରୁ ନୟାଗଡ଼କୁ ଫେରାଇ ଆଣିଥିଲେ । ବାସର ରାତ୍ରରେ ଯଦୁମଣି ଉପଦେଶ କବିତାଟିକୁ ଖଂଜନାକୁ ଉପହାର ଦେଇଥିଲେ । ଯାହାକି ଯଦୁମଣିଙ୍କ ପ୍ରଥମ ଖଣ୍ଡ କବିତା ।

ନୟାଗଡ଼ସ୍ଥ ଇଟାମାଟି ଗ୍ରାମରେ ଯଦୁମଣି ବୈବାହିକ ଜୀବନ ଅତିବାହିତ କରିବାରେ ଲାଗିଲେ । ପିତାଙ୍କୁ ମୂର୍ତ୍ତି ତିଆର ଓ ପଟ୍ଟଚିତ୍ର ଅଙ୍କନ ଇତ୍ୟାଦିରେ ସାହାଯ୍ୟ କରି କିଛି କିଛି ଅର୍ଥ ରୋଜଗାର କରିବାକୁ ଲାଗିଲେ । ସମୟେ ସମୟେ ରୂପସୀ ଖଂଜନାଙ୍କ ଉଦ୍ଦେଶ୍ୟରେ ବିଭିନ୍ନ ପ୍ରକାର କବିତା ରଚନା କରୁଥିଲେ ।

କିଛି ଦିନ ପରେ ଯଦୁମଣିଙ୍କ ମାତା ଶୋଭାଦେଇଙ୍କ ମୃତ୍ୟୁ ହୋଇଥିଲା । ମୁକୁନ୍ଦ ଓ ଯଦୁମଣି ଦୁଃଖରେ ଭାଙ୍ଗି ପଡ଼ିଥିଲେ । ତାର କିଛି ଦିନ ପରେ ଖଂଜନାଙ୍କ ଗର୍ଭରୁ ଗୋଟିଏ କନ୍ୟା ଜନ୍ମଲାଭ କରିଥିଲା । ସେହି କନ୍ୟାର ନାମକୁ ରମା ବୋଲି ଦିଆଯାଇଥିଲା ।

## ରାଜା ବିନାୟକ ମାନଧାତାଙ୍କ ସହିତ ଯଦୁମଣିଙ୍କ ସାକ୍ଷାତ—

ଯଦୁମଣି ଅନ୍ୟାୟ, ଅତ୍ୟାଚାର, ଶୋଷଣ ବିରୁଦ୍ଧରେ ସର୍ବଦା ସ୍ୱର ଉତ୍ତୋଳନ କରୁଥିଲେ । ଇଟାମାଟିର ମାଧିଆ ତେଲି ମହାଜନ ବ୍ୟବସାୟ କରି ବହୁତ ଧନ ସମ୍ପଦ ଉପାର୍ଜନ କରିଥାଏ । ସେ ଅତିଶୟ ଲୋଭୀଥିଲା । ଥରେ ସେ ରାଜାଙ୍କଠାରୁ ବହୁତ ଧନ ଆଣି ସେହି ଗ୍ରାମରେ ଗୋଟିଏ ମଣ୍ଡପ ତିଆର କଲା । ମଣ୍ଡପ ନିର୍ମାଣ ପାଇଁ ରାଜାଙ୍କ ଦତ୍ତ ଧନରୁ ଅଳ୍ପ କିଛି ଖର୍ଚ୍ଚ

କରି କେତେକ ବଳକା କରି ନିଜର ଧନାଗାରରେ ରଖିଲା । ମଣ୍ଡପ ତୋଳା ସମୟରେ ମଣ୍ଡପ ତିଆରି କରିବା ପାଇଁ ରାଜାଙ୍କ ଆଦେଶ କହି ମଜୁରିଆଙ୍କୁ ମାଗଣା ଖଟାଇଲା । ଧର୍ମ କାର୍ତ୍ତି ନିମିତ୍ତ ରାଜକୋଷରୁ ଆବଶ୍ୟକ ଅର୍ଥ ମଞ୍ଜୁର କରି ଆଣିଲା । ନିଜକୁ ଜଣେ ଧର୍ମପ୍ରାଣ ବ୍ୟକ୍ତିରୂପେ ଲୋକଙ୍କ ଆଗରେ କହୁଥାଏ । ଏଣେ ନିରୀହ ପ୍ରଜାମାନଙ୍କୁ ରାଜାଙ୍କ ନାମରେ ଉପସ୍ଥିତ କରାଇ ବେଠି ଖଟାଇଲା । ଯେଉଁଦିନ ମଣ୍ଡପ ନିର୍ମାଣ କାର୍ଯ୍ୟ ଶେଷ ହେଲା, ସେ ନିଜ ନାମରେ ସେହି ଅନୁଷ୍ଠାନ ପ୍ରତିଷ୍ଠା କଲା ।

ରାଜା ବିନାୟକ ମାନଧାତା ଏ ଘଟଣା ଶୁଣିନଥାନ୍ତି । ଯଦୁମଣି ଏହା ଶୁଣି ମନେ ମନେ ରାଗି ମାଧିଆ ତେଲି ନାମରେ ଗୀତଟିଏ ରଚନା କରି ଗୁରୁବାରିଆ ନାମକ ଜଣେ ଭଡ଼ଭଡ଼ିଆ ଲୋକଙ୍କୁ ଶିଖାଇ ଦେଲେ । ଆଉ କହାଇଦେଲେ ତୁ ବଡ଼ ପାଟିରେ ମାଧିଆ ତେଲି ଆଗରେ ତାର ଦ୍ୱାର ପାଖରେ, ନୂଆଁ ମଣ୍ଡପ ପାଖରେ, ଆଉ ମାଧିଆ ଯେଣେ ଯିବ ତା'ପଛରେ ଗୀତଟି ବୋଲିବାକୁ କହିଲେ । ଗୁରୁବାରିଆର ଏହା ଏକ ଜନ୍ମଗତ ସ୍ୱଭାବ । ସେ ସବୁବେଳେ ଯଦୁମଣି, କବିସୂର୍ଯ୍ୟ, ଉପେନ୍ଦ୍ର ଇତ୍ୟାଦି କବି-ମାନଙ୍କର ଗୀତ ଉଚ୍ଚପାଟିରେ ଗାଇ ବୁଲୁଥିବ । ବର୍ତ୍ତମାନ ଯଦୁମଣିଙ୍କ ଶିଖାଇଥିବା ଗୀତ ସେ ଘରିଆଡ଼େ ଗାଇ ବୁଲିଲା । ଯଥା—

"ସରିଲା ରାଜାଙ୍କ ଗଣ୍ଠି, ପରଜାଏ କଲେ ବେଠି
ଏମନ୍ତ ମଣ୍ଡପ ପ୍ରତିଷ୍ଠା ଗୃଭଳ, ତେଲି ମୁଣ୍ଡେ ହେଲା ବୃଷ୍ଟି ।"

ଲୋକେ ଗୀତଟି ଶୁଣି ତା'ର ମର୍ମ ବୁଝିଥାନ୍ତି । ମାଧିଆ ତେଲି ଯେଣେ ଗଲା ତା ପଛ ବା ଆଗରେ ଏଇ ଗୀତ ଶୁଣାଗଲା । ସେ ସବୁ ବୁଝି ଗୁରୁବାରିଆକୁ ପିଟିବାକୁ ମନେ କରିଥାଏ ।

ଦିନେ ମଧ୍ୟାହ୍ନ ସମୟରେ ମାଧିଆ କୁଆଡ଼େ ଯାଇଥିଲା ଘରକୁ ଫେରି ଆସୁଥାଏ । ତା ପଛରେ ପୂର୍ବୋକ୍ତ କବିତାଟି ଗୁରୁବାରିଆ ଉଚ୍ଚ କଣ୍ଠରେ ଅଭିନୟ କରି ବୋଲିଲା । ମାଧିଆ ଆଉ ସହିପାରିଲା ନାହିଁ । ପଛକୁ

ଭୁଲପଡ଼ି ଗୁରୁବାରିଆର ଚୁଟି ଧରି ପକାଇ ପଚାରିଲା 'ଏ କ'ଣ, ଏ ଗୀତ ତୁ କାହାଠାରୁ ଶିଖିଛୁ । ତୁ ମୋ ନାମରେ ବୋଲୁଛୁ । ଦେଖିବୁ ମାଡ଼ ଦେବି ତୋତେ ତୋର କେଉଁ ବାପା ରଖିବ ।

ଗୁରୁବାରିଆ ଝେଁକ ଉଠି ଜବାବ ଦେଲା । "ତୋ ନାଁ ମୁଁ ଧରୁନାହିଁ । ମୁଁ ଗୀତ ଗାଇବା ଲୋକ । ଯଦୁମଣି ମହାପାତ୍ରଙ୍କ ଏ ରଚନା ମୁଁ ରାସ୍ତାରେ ଗାଉଛି । ତୁ ପିଟିଲେ ମୁଁ କ'ଣ ଛାଡ଼ିଦେବି ।" ଏହା କହି କହି ସେ ବି ମାଧିଆର ଚୁଟି ଧରିଲା । ଦୁହେଁ ରାସ୍ତାରେ ଗଡ଼ାଗଡ଼ି ହୋଇ ଗୋଇଠା ମରାମରି ହେଲେ । ଲୋକେ ଆସି ଭଙ୍ଗାଇ ଦେଇ ଦୁହିଁଙ୍କୁ ଦୁଇଆଡ଼େ ଘଉଡ଼ାଇ ଦେଲେ ।

ସେଦିନ ମାଧିଆ ସାହୁ ଯାଇ ରାଜାଙ୍କ ପାଖରେ ଅଭିଯୋଗ କଲା । "ହୁଜୁର ! ଯଦୁମଣି ମୋ' ନାମରେ ନିନ୍ଦା କବିତା ରଚନା କରି ଗୁରୁବାରିଆ ଦ୍ୱାରା ବୋଲାଉଛି । ଶେଷରେ ଗୁରୁବାରିଆକୁ ଏହି ଗୀତ ବୋଲିବାକୁ ମନା କରିବାରୁ, ସେ ମୋତେ ରାଜମାର୍ଗରେ ମନଇଚ୍ଛା କୋଡ଼ିଛି । ହୁଜୁର ! ଏହାର ସୁବିଚାର କରନ୍ତୁ । ଏହା କହି ଗୀତଟି ବୋଲିଲା ।

ରାଜା କ'ଣ କହିବାକୁ ଯାଉଥିଲେ ସେହି ସମୟରେ ଗୁରୁବାରିଆ କାନ୍ଦି କାନ୍ଦି ଆସି ରାଜାଙ୍କୁ ଗୁହାରି କଲା । ହଜୁର ଯଦୁମଣିଙ୍କ କବିତା ମୁଁ ଗାଉଥିଲି, ମାଧିଆ ତେଲି ମୋର ଚୁଟି ଧରି ମୋତେ ବିଧା ଗୋଇଠା ମାରିଲା । ଏହାର ବିଚାର କରନ୍ତୁ ।

ରାଜା ବିନାୟକ ସିଂହ ପଚାରିଲେ ଆଚ୍ଛା ମାଧିଆ ସାହୁକୁ ତୁମେ ମଧ ମାରିଛ ?

ଗୁରୁବାରିଆ ଜବାବ ଦେଲା, ହୁଜୁ ! ସେ ମୋ ଚୁଟିଧରି ପ୍ରଥମେ ଗାଲକୁ ଗୋଇଠା ମାରିବାରୁ ମୁଁ ମଧ ଦି'ଟା କଷି ଦେଇଛି ।

ରାଜା ମାଧିଆକୁ ପଚାରିଲେ—ତୁମେ ପ୍ରଥମେ ତାକୁ ମାରିଛ ?

ନା ଗୁରୁ ! ସେ ମୋତେ ଆଗ ମାରିଛି, ମାଧିଆ କହିଲା "ସେ ମିଛ, ମୋତେ ଆଗ ତୁ ମାରିଛୁ ଗୁରୁବାରିଆ କହିଲା ।"

ରାଜା ସଦୁମଣିଙ୍କୁ ଡକାଇ ପଚାରିଲେ—କହୋ ସଦୁମଣି, କ'ଣ ଏ ଘଟଣା ? ସଦୁମଣି ଉଠି କବିତାଟି ଗାଇଲେ, କବିତାଟିର ବିଷୟବସ୍ତୁ ସତ୍ୟ ଅଟେ । ମାଧିଆ ତେଲି ଗୁରୁଙ୍କ ଠାରୁ ଟଙ୍କା ନେଇ, ଲୋକଙ୍କୁ ଗୁରୁଙ୍କ ଆଦେଶ କହି, ବେଠି କାମ କରାଇ, ମଣ୍ଡପ ନିର୍ମାଣ କରାଇଛନ୍ତି । ମାତ୍ର ତାଙ୍କ ନାମରେ ସେ ଅନୁଷ୍ଠାନ ପ୍ରତିଷ୍ଠା କରାଇ କୀର୍ତ୍ତିଗର୍ବ ଦେଖାଉଛନ୍ତି । ତେଣୁ ଏ ପଦ୍ୟ ମୁଁ ରଚନା କରିଛି । ଗୁରୁବାରିଆ ଦ୍ୱାରା ବୋଲାଉଛି । ଯଦି ମାଧିଆ ତେଲି ପ୍ରକୃତ କିଛି କରିନାହାନ୍ତି ତେବେ ସେ ରାଗିବା କୌଣସି କାରଣ ନାହିଁ । କାରଣ ତାଙ୍କ ନାମ ନିର୍ଦ୍ଦିଷ୍ଟଭାବେ କବିତାରେ ଦିଆଯାଇ ନାହିଁ ।

ରାଜା ସବୁ ଶୁଣି ରାଗିଗଲେ । ସଭାରେ ବସିଥିବା ଇଟାମାଟିର ଅନ୍ୟ ଦୁଇଜଣଙ୍କୁ ପଚାରି ବୁଝିଲେ ଯେ ଘଟଣାଟି ପ୍ରକୃତ ସତ୍ୟ । ତା'ପରେ ସେ ରାଗିଯାଇ ମାଧବ ତେଲିକୁ ଏକଶହ ଟଙ୍କା ଅର୍ଥ ଦଣ୍ଡ ଦେଲେ । କବି ସଦୁମଣିଙ୍କୁ ରାଜକୋଷରୁ ପଚାଶ ଟଙ୍କା ପୁରସ୍କାର ଦିଆଗଲା ଏବଂ ଗୁରୁବାରିଆକୁ ନିର୍ଦ୍ଦୋଷରେ ବିଦାୟ କଲେ ।

ସଦୁମଣିଙ୍କ ସହିତ ରାଜା ବିନାୟକ ସିଂହ ମାନଧାତାଙ୍କର ପ୍ରଥମ ସାକ୍ଷାତ ହେଲା । ରାଜା ପଚାରିଲେ ଘରେ ତୁମେ କ'ଣ କରୁଛ ? ସଦୁମଣି ହାତଯୋଡ଼ି କହିଲେ—ନିଜ ବଂଶ ପରମ୍ପରାଗତ ବିଦ୍ୟା ସାଧନ କରୁଛି ।

ରାଜା କହିଲେ ତେବେ କିଛି ନମୁନା ଦେଖାନ୍ତୁ ।

ସଦୁମଣି ନିର୍ମାଣ କରିଥିବା ମୂର୍ତ୍ତି, ପଟ୍ଟଚିତ୍ର ଏବଂ ତାଳପତ୍ରରେ ଲିଖିତ ସଚିତ୍ର 'ଲାବଣ୍ୟବତୀ' ପୋଥିଟିଏ ନେଇ ରାଜାଙ୍କୁ ଭେଟି ଦେଲେ । ସଦୁମଣିଙ୍କ ଶିଳ୍ପଗୁଡ଼ିକ ରାଜ ଅନ୍ତଃପୁରରେ ବେଶ୍ ଆଦୃତ ହୋଇ ପାରିଥିଲା ।

## ପିତାଙ୍କ ବିୟୋଗ—

ଖଞ୍ଜନା ଧନୀଘରର ଝିଅ ଓ ଗରିବଘରର ବୋହୂ ହେଲେହେଁ ସେ କେବେହେଲେ କୌଣସି ପ୍ରକାର ଅସୁବିଧା ଅନୁଭବ କରିପାରୁ ନଥିଲେ । କାରଣ ମୁକୁନ୍ଦ ଖଞ୍ଜନାକୁ ଝିଅଠାରୁ ଅଧିକ ଆଦର ଯତ୍ନ କରୁଥିଲେ । ସେ ଏପରି ସ୍ନେହ ଓ ଆଦର ଦେଖାଉଥିଲେ, ଯଦ୍ୱାରା ଖଞ୍ଜନା ଗରିବ ଘର ବଧୂ ବୋଲି ଅନୁଭବ କରିପାରୁ ନଥିଲେ । ଘରେ ଧନସମ୍ପତ୍ତି ଥିଲେ କେହି ଧନୀ ହୁଏନାହିଁ । ଯେଉଁଠି ମନ ତୃପ୍ତି ନାହିଁ ସେଠି ଧନ କ'ଣ କରିବ ? ଖଞ୍ଜନା ଶାଶୁଘରେ ଅଧିକ ଶାନ୍ତିରେ ଥିଲେ । ମୁକୁନ୍ଦ ମହାପାତ୍ରେ ରୋଗ ଶଯ୍ୟାରେ ପଡ଼ିଲେ । ଯଦୁମଣି ଓ ଖଞ୍ଜନା ବହୁତ ସେବାକଲେ ।

ରାତି ଅଧ ସମୟରେ ମୁକୁନ୍ଦ ମହାପାତ୍ରେ ଇହଧାମ ତ୍ୟାଗକଲେ । ଯଦୁମଣିଙ୍କ ମସ୍ତକ ଉପରେ ଯତେକ ଅକାଳ ଚଡ଼କ ଖସି ପଡ଼ିଲା । କାରଣ ସେତେବେଳକୁ ଘରେ କାଣି କଉଡ଼ିଟିଏ ହେଲେ ନାହିଁ । ଗ୍ରାମ ଲୋକମାନଙ୍କୁ ଡ଼ାକାଡ଼କି କରି ପିତାଙ୍କ ଦାହକାର୍ଯ୍ୟ ଶେଷ କରିଦେଲେ ।

ପିତାଙ୍କ ଅନ୍ତ୍ୟେଷ୍ଟି କ୍ରିୟା କିପରି ହେବ ସେଥିପାଇଁ ଯଦୁମଣି ବଡ଼ ଚିନ୍ତିତ । କ'ଣ କରିବେ ଘରେ କିଛିନାହିଁ, ଟଙ୍କାପଇସା କେଉଁଠୁ ଆସିବ । କିଛି ସମୟ ପରେ ଏକ ସୁନ୍ଦର ଉପାୟ ପାଇଲେ । ଖଣ୍ଡିଏ ଗୁଦର ଦେହରେ ପକାଇ ସେହି ଅନ୍ଧାର ରାତିରେ ଘରୁ ବାହାରିଗଲେ । ଖଞ୍ଜନା ମନାକଲେ ସୁଦ୍ଧା ତାଙ୍କ କଥା ନଶୁଣି ଯଦୁମଣି କହିଲେ, ତୁମେ ଘର ସମ୍ଭାଳି ଥାଅ, ମୁଁ ଏହିକ୍ଷଣି ଆସୁଅଛି ।

ଯଦୁମଣି ଦେହସାରା ଚଦର ଘୋଡ଼ି ହୋଇ ତାଙ୍କ ପିତାଙ୍କ ଦ୍ୱାରା ନୟାଗଡ଼ରେ ନିର୍ମାଣ ହୋଇଥିବା 'ରାଧାନାଥ' ମନ୍ଦିରର ମୁଖ୍ୟ ଦ୍ୱାରକୁ ଆଡୁଆଳ କରି ଶୋଇଗଲେ ।

ପାହାନ୍ତା ବେଳକୁ ରାଜାଙ୍କର ଅବକାଶ କାର୍ଯ୍ୟ ବଢ଼ାଇବା ପାଇଁ ବଡ଼ ପଣ୍ଡାଏ ପହଞ୍ଚିଗଲେ ଓ ଡ଼ାକ ପକାଇଲେ — "ଆରେ କବାଟ ଉଗାଳ

କିଏ ଶୋଇଛ । ଉଠିପାଅ, ଠାକୁରଙ୍କ ମାନ୍ଚ ବଢ଼ିବ ।" ଯଦୁମଣି କିଛି ଉତ୍ତର ନ ଦେଇ ଅଧିକଭାବେ ସର୍ବାଙ୍ଗ ଆବୃତ ହୋଇ ଶୋଇ ରହିଲେ । ମନ୍ଦିରର ଅନ୍ୟାନ୍ୟ ସେବକ ପହଞ୍ଚିଲେ । ସମସ୍ତେ ଅନୁରୋଧ ଓ ଧମକ ଚମକ ଦେଖାଇଲେ । ତେବେ ସୁଦ୍ଧା ଯଦୁମଣି ପଦଟିଏ ହେଲେ କଥା କହିଲେ ନାହିଁ ।

ସମସ୍ତଙ୍କ ମଧ୍ୟରେ ବିସ୍ମୟ ଖେଳିଲା—ତେବେ ଏ ଲୋକ କିଏ ? ଏତେ ଦମ୍ଭରେ ଶୋଇଛି । ମନ୍ଦିର କର୍ତ୍ତା ଆସି ଉପସ୍ଥିତ ହେଲେ, ସେ ସବୁ କଥା ବୁଝି ବିସ୍ମୟରେ ଯଦୁମଣି ଶୋଇଥିବା କଥା ରାଜାଙ୍କୁ ଜଣାଇଲେ । ରାଜା ଖବର ପାଇ ମନ୍ଦିର ନିକଟକୁ ବିଜେ କଲେ । କହିଲେ କିଏସେ ଶୋଇଛ ଉଠ । ତୁମର କ'ଣ ଆବଶ୍ୟକ ପ୍ରକାଶ କର ।

ଯଦୁମଣି ସେପରି ଚଦର ମଧ୍ୟରେ ଦେହ ଘୋଡ଼ାଇ କହିଲେ ମୁଁ ଠାକୁର ରାଧାନାଥଙ୍କ ଭାଇ । ମୋ ବାପା ମୁକୁନ୍ଦ ମହାପାତ୍ରେ ଆଗେ ରାଧାନାଥଙ୍କୁ ଜନ୍ମ ଦେଇ ତା' ପରେ ମୋତେ ଜନ୍ମ ଦେଇଛନ୍ତି । ବଡ଼ପୁଅ ଖାଇପିଇ ନିଶ୍ଚିନ୍ତରେ ଶୋଇ ରହିଛନ୍ତି, ମୁଁ ସାନପୁଅ ଧୂଳି ପାଉଁଶରେ ଘାଣ୍ଟି ହେଉଛି । ମୁଁ ତ ଆଜଯାଏ ମୋ ରୋଜଗାରରେ ବାପାଙ୍କୁ ପାଳିଲି, ଏବେ ବଡ଼ପୁଅ ହିସାବରେ ଠାକୁର ଉପବାସ ପାଳନ କରନ୍ତୁ ଓ ଶୁଦ୍ଧି କ୍ରିୟାର ବ୍ୟବସ୍ଥା କରନ୍ତୁ ।

ରାଜା ଜାଣିଲେ ମୂର୍ତ୍ତି ନିର୍ମାତା ଜନ୍ମଦାତା ପିତା ସଦୃଶ୍ୟ । ଏଣୁ ଯଦୁମଣି ଯଥାର୍ଥ କଥା କହୁଛନ୍ତି । ରାଜା ହସି ହସି ସାନ୍ତ୍ୱନା ଦେଇ କହିଲେ—ହେଉ ଯଦୁମଣି ! ତୁମର ଇଚ୍ଛା କ'ଣ ପ୍ରକାଶ କର ।

ଯଦୁମଣି କହିଲେ "ଆଜ୍ଞା ! ମୋର ଇଚ୍ଛା କ'ଣ ? ଠାକୁରେ ବଞ୍ଚନ୍ତୁ ବା ମରନ୍ତୁ, ପାଞ୍ଚଶତ ଟଙ୍କା ହେଲେ ଶୁଦ୍ଧି କ୍ରିୟା କାର୍ଯ୍ୟ ତୁଲିଇ ପାରିବ । ମୋ ପାଖରେ କାଣି କଉଡ଼ିଟିଏ ସୁଦ୍ଧା ନାହିଁ । ତୁମ୍ଭେ ଯାହା ବିଚାର କରିବେ ।"

ରଜା ଯଦୁମଣିଙ୍କୁ ପାଞ୍ଚଶତ ମୁଦ୍ରା ପ୍ରଦାନ କରିବା ପାଇଁ ରାଜି ହୋଇଗଲେ । ମୃତ୍ତିକା ଶୌଚରେ ଦନ୍ତଧାବନ ନକଲେ ରାଜଦର୍ଶନ ଶାସ୍ତ୍ର ନିଷେଧ । ଏଣୁ ଯଦୁମଣି ରାଜାଙ୍କୁ କହିଲେ ପ୍ରଥମେ ଗୁମୁ ବନ୍ଦେ ହୋଇ ଯାଅନ୍ତୁ ମୁଁ ଉଠିବି । କାଳେ ମୋ ଦେହରୁ ଲୁଗା ଖସିଯିବ ।

ରାଜା ଯଦୁମଣିଙ୍କ ବାଗ୍ମିତା ଓ ପାଣ୍ଡିତ୍ୟରେ ମୁଗ୍ଧ ହୋଇ ସେଠାରୁ ଚାଲିଯିବା ପୂର୍ବରୁ କହିଲେ, ଯଦୁମଣି ! ମୋର ପ୍ରିୟ ଶିଳ୍ପୀ ମୁକୁନ୍ଦଙ୍କର ଅନ୍ତ୍ୟେଷ୍ଟି କ୍ରିୟା ଯଥାବିଧି ପାଳନ କରିବ । ଯାହା ଆବଶ୍ୟକ ମୋତେ ଜଣାଇବ ।

## ବକ୍ରବାକ ଚକ୍ରପାଣି ଓ ଯଦୁମଣି—

ବକ୍ରବାକ ଚକ୍ରପାଣି ପଟ୍ଟନାୟକ ଗଞ୍ଜାମର ଖେମଣ୍ଡିରେ ଜଣେ ବିଶିଷ୍ଟ ସଂସ୍କୃତ ପଣ୍ଡିତ ରୂପେ ସୁନାମ ଅର୍ଜନ କରିଥାନ୍ତି । ତାଙ୍କର ପ୍ରତ୍ୟେକ କଥାରେ ବକ୍ରୋକ୍ତି ପୂର୍ଣ୍ଣ ଥିବାରୁ ତାଙ୍କୁ "ବକ୍ରବାକ ଚକ୍ରପାଣି" ନାମରେ ଅଭିହିତ କରାଯାଇଥିଲା ।

ବକ୍ରବାକ ଚକ୍ରପାଣି ନୟାଗଡ଼ ରାଜଦରବାରକୁ ନିମନ୍ତ୍ରିତ ହୋଇ ଆସୁଥିବା କଥା ଯଦୁମଣି ଶୁଣିଲେ । ସେ ନୟାଗଡ଼ରେ ପହଞ୍ଚିଲେ । ପୂର୍ବରୁ ବକ୍ରବାକଙ୍କର ସୁନାମ ଓ ପାଣ୍ଡିତ୍ୟ ବିଷୟରେ ଶୁଣିଥାନ୍ତି । ମାତ୍ର ସେତେବେଳକୁ ଯଦୁମଣିଙ୍କୁ ନୟାଗଡ଼ ରାଜଦରବାରରେ କବି ବୋଲି କେହି ଜାଣି ନଥାନ୍ତି । କେବଳ ଶିଳ୍ପୀ ମୁକୁନ୍ଦଙ୍କ ପୁତ୍ରରୂପେ ସାମାନ୍ୟ ପରିଚୟ ଥାଏ । ଯଦୁମଣିଙ୍କ ଦୁଷ୍ଟାମୀ ବିଷୟରେ ରାଜା ଶୁଣିଥାନ୍ତି, କିନ୍ତୁ ଗୁରୁତ୍ୱ ଦେଇ ନଥାନ୍ତି ।

ସେତେବେଳକୁ ଯଦୁମଣିଙ୍କ କବିତା ଲୋକମୁଖରୁ ମୁଖ ହୋଇ ନୟାଗଡ଼ ରାଜ୍ୟ ପାର ହୋଇ ଘୁମୁସର ଅଞ୍ଚଳକୁ ବ୍ୟାପି ଯାଇଥାଏ । ସମସ୍ତଙ୍କ ମନରେ ଗୋଟିଏ ମାତ୍ର ପ୍ରଶ୍ନ ଯଦୁମଣି କିଏ ?

କବି ଚକ୍ରପାଣି ମଧ୍ୟ ଯଦୁମଣିଙ୍କର କେତୋଟି କବିତା ଶୁଣିଥାନ୍ତି । ମନେ ମନେ ଯଦୁମଣିଙ୍କୁ କବି ଚକ୍ରପାଣି ବିଶେଷ ପ୍ରଶଂସା କରିଥାନ୍ତି । କିନ୍ତୁ ସନ୍ଧାନ ପରେ ସେ ଜାଣିବାକୁ ପାଇଲେଯେ ଯଦୁମଣି ନୟାଗଡ଼ର ଲୋକ ।

୧) ଗୁହ—କବିବାକ ଚକ୍ରପାଣି ଜଣେ ଭଣ୍ଡାରି ସହିତ ନୟାଗଡ଼କୁ ଆସୁଥାନ୍ତି, ଯଦୁମଣିତ ଭଲ ଲୋକଙ୍କ ପାରେ ଅଠା ବୋଳିବା ଲୋକ । ତାଙ୍କୁ ବାଟରେ ଯିବାର ଦେଖି ପ୍ରଶ୍ନ କଲେ, "ଆଜ୍ଞା ! ଆପଣ କିଏ କି ?"

ଚକ୍ରପାଣି ଏକ ଅର୍ବାଚୀନ ଗାଉଁଲିଆ ଯୁବକର ଏ ପ୍ରଶ୍ନ ଶୁଣି ମୂର୍ଖ ମନେକରି ଯାଉ ଯାଉ ଗମ୍ଭୀର ସ୍ୱରରେ କହିଲେ, "ବିଷ୍ଣୁ ପର୍ଯ୍ୟାୟରେ ମୋର ନାମ ମିଳିବ ।"

ତହୁଁ ପ୍ରତ୍ୟୁତ୍ପନ୍ନ ମତି ଯଦୁମଣି କହିଲେ, "ତେବେ ଆପଣଙ୍କ ନାମ 'ଗୁହ' ।" ଭଣ୍ଡାରି ଝୋକାଟା ଖିଂ କରି ହସିଦେଇ କହିଲା, "ସାଆନ୍ତେ କ'ଣ ବିଷ୍ଣୁ" କହୁଛନ୍ତି । ସତରେ 'ଗୁହ' କହିଲେ ମଳକୁ ବୁଝାଏ ପୁଣି ବିଷ୍ଣୁଙ୍କୁ ମଧ୍ୟ ବୁଝାଏ ।

କବି କବିବାକ ଚକ୍ରପାଣି ସଙ୍ଗେ ସଙ୍ଗେ ଅଟକି ଗଲେ । ସତେ ତ ବିଷ୍ଣୁଙ୍କ ନାମ ଗୁହ, କିନ୍ତୁ ଅମରକୋଷର ବିଷ୍ଣୁ ପର୍ଯ୍ୟାୟରେ 'ଚକ୍ରପାଣି' ନାମଟିକୁ ସୂଚାଇ ଦେବାପାଇଁ ଗାଇ ଉଠିଲେ—

"ଉପେନ୍ଦ୍ର ଇନ୍ଦ୍ରାବରଜଶ୍ଚକ୍ରପାଣି ଶ୍ଚତୁର୍ଭୁଜଃ
ପଦ୍ମନାଭୋ ମଧୁରିପୁର୍ବାସୁଦେବ ସ୍ତ୍ରିବିକ୍ରମଃ ।"

କବି ଯଦୁମଣିଙ୍କ ନିକଟକୁ ଆସି କ୍ଷଣକାଳ ଭଲରୂପରେ ଚାହିଁଲେ । ଯେ କୌଣସି କୁତ୍ସିତ ଆବରଣ ମଧ୍ୟରେ ହୀରା ଥିଲେ ସୁଦ୍ଧା, ହୀରା ହିଁ ହୀରା ।

ଚକ୍ରବାକ ଅନୁମାନ କଲେ ଏ ତ ? ସେଇ ନୁହେଁ ହସି ହସି କହିଦେଲେ, ତୁମ୍ଭେ ଯଦୁମଣି ? ଭଲହେଲା ମୁଁ ଯେ ଚକ୍ରପାଣି ପଟ୍ଟନାୟକ ।

ଯଦୁମଣି ଶିଶୁପରି କରଯୋଡ଼ି କବିବରଙ୍କୁ ପ୍ରଣାମ କଲେ । ଚକ୍ରପାଣି ଯଦୁମଣିଙ୍କ ଶିର ଆଘ୍ରାଣି ଆଶୀର୍ବାଦ କରି କହିଲେ, "ତୁମର ବଂଶ ଗୁଣ ସମାଜରେ ଶ୍ରେଷ୍ଠତମ ହୋଇ ପାରିବ ।"

୨) ପାଦପୂରଣ — ନୟାଗଡ଼ ରଜା ବିନାୟକ ସିଂହ ମାନଧାତା ଜଣେ ସାହିତ୍ୟପ୍ରେମୀ ଥିଲେ । ସେ ବନବାକ ଚକ୍ରପାଣି ସଂସ୍କୃତ ପଣ୍ଡିତଙ୍କୁ ଖାଲି ବିଶେଷ ଆଦର ଦେଖାଉଥିଲେ । ସଧାରେ ରାଜଦରବାରରେ ସାହିତ୍ୟ ଚର୍ଚ୍ଚା ହେଉ । ଓଡ଼ିଆ ସାହିତ୍ୟକୁ ନୟାଗଡ଼ ରାଜବଂଶ ଓ ରାଜ୍ୟର ଅତୁଳନୀୟ ଦାନ । ଏଣୁ କବି ପଣ୍ଡିତ ସାହିତ୍ୟିକଙ୍କ ଦୃଷ୍ଟିରେ ନୟାଗଡ଼ ରାଜଦରବାର ଏକ ତୀର୍ଥସ୍ଥାନ । ନୟାଗଡ଼ ରାଜସଭାରୁ କବି ହିସାବରେ ସମ୍ମାନିତ ହେବା କମ୍ ଗୌରବର କଥା ନୁହେଁ ।

ସେଦିନ ନୟାଗଡ଼ ରାଜସଭାରେ ନିଯୁକ୍ତ ଥିବା ତୃଗଜସୋକ ପଣ୍ଡିତ ଜ.ଶିଶୁଣି ଅନୁପସ୍ଥିତ ରହିଲେ । ରଜା ବିନାୟକ ଅସ୍ଥିର ହୋଇ ଉଠିଲେ । କିନ୍ତୁ ପଣ୍ଡିତ ବନବାକ ଚକ୍ରପାଣି କହିଲେ— "କାହିଁକି ଆମର ଯଦୁମଣିଙ୍କ ସହିତ ଆଜି ଚର୍ଚ୍ଚା ହେଉ । ପରିଷଦଙ୍କ ବାରଣ ସତ୍ତ୍ୱେ ଯଦୁମଣିଙ୍କୁ ଡକରା ହେଲା । କୁତ୍ସିତ ବେଶଭୂଷା ଦେଖି ରଜା ମନରେ ଦୁଃଖିତ ହେଲେ ସତ, କିନ୍ତୁ ପୌଢ଼ ମହାପଣ୍ଡିତ 'ଗୁଣ୍ଡିଗୁ ଚମ୍ପୂ' ସ୍ରଷ୍ଟା ବନବାକ ଚକ୍ରପାଣି ପଟ୍ଟନାୟକଙ୍କ ଦୟାରୁ ଓଡ଼ିଆରେ ଶାସ୍ତ୍ର ଚର୍ଚ୍ଚା ହେବାରୁ ଯଦୁମଣି ସେ ଦିନୁଁ ଅମ୍ବ ସମ୍ମାନ ଲଭକରି ନିଜକୁ ଧନ୍ୟ ମଣିଲେ' ।

ଭୂମିରେ ଧୂଳି ଶଯ୍ୟାରେ ବସିଥିବା ବଢ଼େଇ ଯୁବକ ଯଦୁମଣିଙ୍କୁ ଆଭିଜାତ୍ୟ ବହୁମୂଲ୍ୟ କାଷ୍ଠାସନ କୁର୍ଚ୍ଚିରେ ବସିଥିବା ପୌଢ଼ ଚକ୍ରପାଣି ପାଦ ପୂରଣ ଲାଗି ଯଦୁମଣିଙ୍କୁ ପ୍ରଶ୍ନକଲେ—

ପ୍ରଥମ ପ୍ରଶ୍ନ – ପ୍ରମତ୍ତ କେଶରୀ ଗଜକପୋଳକୁ ନରେଖଇ କଦାଚିତେ ?

କ୍ଷୁଧିତ କେଶରୀ ଗଜ କପୋଳକୁ ନରେଖଇ କଦାଚିତେ ।

ଯଦୁମଣି ସାଥେ ସାଥେ ଉତ୍ତର ଦେଲେ—"ମହିଷାସୁର ରଥ ଗଣନାଥ ମାଥ କଇଲାଶ ପରବତେ ।" ଅର୍ଥାତ୍—ଚନ୍ଦ୍ରପାଣି ପଚାରିଥିଲେ, ଅତି ମତ୍ତସିଂହ ଗଜ ମସ୍ତକକୁ କେବେ କେବେ ଦେଖେ ମାତ୍ର ଆକ୍ରମଣ କରେନାହିଁ । ତାହା ଶୁଣି ଯଦୁମଣି ଉତ୍ତର ଦେଲେ – ପାର୍ବତୀଙ୍କ ବାହନ ସିଂହ କୈଳାଶ ପର୍ବତରେ ଗଣପତିଙ୍କ ମସ୍ତକକୁ ଏହିପରି ଦେଖିଥାଏ ।

ଚନ୍ଦ୍ରପାଣି ପୁଣି ପ୍ରୀତ ହୋଇ ପଚାରିଲେ—

"କବା ପ୍ରଶଂସିବା ପ୍ରଶଂସା ପଦବୀ ଅଛୁ ବୋଲି ବଳା ଗୃହରେ ?

ଯଦୁମଣି ହଠାତ୍ ଉତ୍ତରରେ କହିଲେ—

"ମୂକ କରିଅଛୁ ଯେ ବାଜାମଣିର ଶ୍ରୀଚରଣେ ବଳା ଗୃହରେ ।"

ଅର୍ଥାତ୍—ଚନ୍ଦ୍ରପାଣି ପଚାରିଲେ, ଇନ୍ଦ୍ରଙ୍କ ଠାରୁ ପ୍ରଶଂସା ପଦବୀ ଆଉ କାହାର ଅଧିକାର ଅଛି ବୋଲି ପ୍ରଶଂସା କରାଯାଇପାରେ ? ରସିକ ଯଦୁମଣି ଉତ୍ତରରେ କହିଲେ—ଯେଉଁ ସୁପୁରୁଷ ନିଜ ଜାୟାର ଅତିସୁନ୍ଦର ପାଦଯୁଗଳର ବାଜେଣି ନୂପୁରକୁ ଗୃହରେ ରକ୍ତରଙ୍ଗରେ ମୂକ କରିପାରେ । ଅର୍ଥାତ୍—ବିପରୀତ ରତିଦାନରେ ଯେ ନାରୀକୁ ସ୍ୱୀକୃତ କରାଇ ଅଧୀନ କରିପାରେ । (ବିପରୀତ ରତିରେ ସୁଭଗାନାରୀ ବାଜେଣି ନୂପୁର କାଢ଼ିଦେଇ ରତି ରଙ୍ଗରେ ଲିପ୍ତ ରହେ, କିନ୍ତୁ ଲଜ୍ଜା ଗୋପନ ଲାଗି ।)

ତୃତୀୟ ପ୍ରଶ୍ନ—ଚନ୍ଦ୍ରପାଣି ପ୍ରଶ୍ନକଲେ—

"ଯେହି ସମୟରେ ବଧୂ ଶ୍ୱଶୁରସଙ୍ଗ ଇଚ୍ଛା କରେ ?" ଏହାର ପାଦ ପୂରଣ କରନ୍ତୁ ।

ଯଦୁମଣି ଆକାଶରୁ ତୋଳା ଅ.ଣିଲା ପରି କହିଗଲେ—

"ଦ୍ରୁପଦ ନନ୍ଦନା ଗୃହୁ ସୁକେଶୀ<br>ଭୀମ ବୀର ସଙ୍ଗେ ସୁରତେ ପଶି,<br>ଗବାକ୍ଷ ମାର୍ଗରେ ବସି ବରସେ<br>ଲୋଚ୍ଚେ ଯେତେବେଳେ ପବନକୁ ସେ<br>ସେହି ସମୟରେ<br>ବଧୂ ଶ୍ୱଶୁର ସଙ୍ଗ ଇଚ୍ଛାକରେ ।"

ଅର୍ଥାତ୍—ଚକ୍ରପାଣିଙ୍କର ପ୍ରଶ୍ନଥିଲା, କେଉଁ ସମୟରେ ବଧୂ ଶଶୁରର ସାନିଧ୍ୟ ଲାଭ ପାଇଁ ଇଚ୍ଛାକରେ । ଯଦୁମଣି କହିଥିଲେ—ଦ୍ରୌପଦୀ ଓ ଭୀମଙ୍କ ରଣ୍ଡ ପରେ ଦ୍ରୌପଦୀ ବଗାକ୍ଷ ମାର୍ଗରେ ବସି ଭୀମଙ୍କ ତାତ ପବନକୁ ଇଚ୍ଛା କରିଥିଲେ । ଭୀମ ପବନସୁତ ଥିବାରୁ ଦ୍ରୌପଦୀ ତାଙ୍କର ବଧୂ ଅଟନ୍ତି ।

ଚତୁର୍ଥ ପ୍ରଶ୍ନ—ଚକ୍ରପାଣି ପ୍ରଶ୍ନକଲେ, "କାଣି ଗଣିକା" ଏହି ପଦକୁ ବାମରୁ ଦକ୍ଷିଣକୁ ଏବଂ ଦକ୍ଷିଣରୁ ବାମକୁ ପଢ଼ିଲେ ଯେପରି ଏକ ପଦବୋଲି ପ୍ରତୀତ ହେଉଛି, ସେହିପରି ଏହାର ଦକ୍ଷିଣ ଓ ବାମରେ ଏପରି ଏପରି ସମାନ ସଂଖ୍ୟକ ବର୍ଣ୍ଣ ବିନ୍ୟାସକରି ଗୋଟିଏ ତଦ୍ରୂପ ବାକ୍ୟ ରଚନାକର ।

ଯଦୁମଣି ତାହା ଶୁଣିବା ସଙ୍ଗେ ସଙ୍ଗେ କହିଲେ—

"କଡ଼ାକୁ କାଣି ଗଣିକାକୁଡ଼ାକ ।" ସଭାରେ ଆନନ୍ଦରେ ତାଳିଧ୍ୱନି ଉଚ୍ଛୁଳି ପଡ଼ିଲା । ଏପରି ଅଦ୍‌ଭୁତ କୃତିତ୍ୱରେ ରାଜା, ରାଜପରିଷଦ ଚମତ୍କୃତ ହୋଇଗଲେ । ଏମନ୍ତ କି ସ୍ୱୟଂ ବନ୍ଦବାକ ଚକ୍ରପାଣି ପଟ୍ଟନାୟକ ନିଜ ଆସନରୁ ଉଠିଯାଇ ଯଦୁମଣିଙ୍କୁ ଭୂରିଭୂରି ପ୍ରଶଂସା କରି ତାଙ୍କୁ ଧରିନେଇ ନିଜ ଆସନରେ ସ୍ଥାନଦେଲେ ।

ରାଜା ବିନାୟକ ସିଂହ ମାନଧାତା ଏହା ଦେଖି ତୁରନ୍ତ ଏକ ସ୍ୱତନ୍ତ୍ର ଆସନ ଯଦୁମଣିଙ୍କୁ ଦାନ କରି ତୁମ୍ଭେ ଆଜିଠାରୁ ରାଜକବି ହେଲ ବୋଲି କହିଲେ ।

ରାଜା ମାନଧାତା, ଚକ୍ରପାଣିଙ୍କୁ କହିଲେ, ଆପଣ ତ କେତେକ ପ୍ରଶ୍ନ କଲେ ଯଦୁମଣି ଆପଣଙ୍କୁ କିଛି ପ୍ରଶ୍ନ କରିବେ ଅନୁମତି ଦିଅନ୍ତୁ ।

ବନ୍ଦବାକ ଚକ୍ରପାଣି କହିଲେ—ପ୍ରଭୁଙ୍କର ଯେପରି ଇଚ୍ଛା ମୋର ଇଚ୍ଛା ତଦ୍ରୂପ । ଯୁବକ କବି ଯଦୁମଣି ମୋତେ ପ୍ରଶ୍ନ କରନ୍ତୁ । ମୁଁ ଉତ୍ତର ଦେଇପାରେ ନ ଦେଇ ପାରିଲେ ମଧ୍ୟ ଲଜ୍ଜିତ ହେବିନାହିଁ । କାରଣ ସେ ତରୁଣ ମୁଁ ବୃଦ୍ଧ ।

ରାଜାଙ୍କର ବାରମ୍ବାର ନମେ ଯଦୁମଣି ବାଧ୍ୟ ହୋଇ ଆସନରୁ ଉଠି ମହାକବି ଚନ୍ଦ୍ରପାଣିଙ୍କର ପଦସ୍ପର୍ଶ କରି ଓ ସଭାଜନମାନଙ୍କୁ ଯୋଡ଼ହସ୍ତ ହୋଇ ନମ୍ର ବଚନରେ କହିଲେ—

"ଛବିରେ କେ ଜଣେ ନବ ରବିକି (ଅବିର୍-ଫଗୁ)
କେ ପେଟ ପୋଷେ ଧନୁଶର ବିକି (ଅବାଉ-ଦୁବିଳ)
ଜଳଠାରେ ଝୁଣ୍ଟି କାହାର ନଖ (ଅବିର-ଅବ-ଛେଳି)
କାର ଭୟୁ ନାହିଁ ଉରଗ ମୁଖ (ଅବିର-ଅ-ବିଷ୍ଣୁ, ବି-ପକ୍ଷୀ
ବିଷ୍ଣୁଙ୍କ ବାହାନ ପକ୍ଷୀ ଗରୁଡ଼)
ବିଗୃର କହିବ
ତିନି ପଦାର୍ଥ ଏକ ହୋଇଥିବ । (ଅବିର)

ବୃଦ୍ଧ ସଂସ୍କୃତଜ୍ଞ କବି ଏହାର ଉତ୍ତର ପ୍ରକୃତରେ ହଠାତ୍ ଦେଇ ପାରିଲେ ନାହିଁ ବରଂ କହିଲେ, "ଯଦୁମଣି ! ତୁମେ ମୋର ପ୍ରିୟତମ ଅନୁଜ । ମୁଁ ତୁମ୍ଭ ପାଖରେ ହାରିଗଲି । ଗଜପତିଙ୍କ ବନ୍ଦୀକ ଉପାଧି ଆଜଠୁ ରଜୁବାକ୍ ହୋଇଗଲା ।

ସଂସ୍କୃତଜ୍ଞ କବି ଚନ୍ଦ୍ରପାଣି ପହେଳିକାତ୍ମକ ଏ ପ୍ରଶ୍ନର ଉତ୍ତର ଦେଇ ପାରି ନଥିଲେ । ଅବଶେଷରେ ଯଦୁମଣିଙ୍କର ଆଶୁ କବି ପ୍ରତିଭା ଦେଖି ଭୂୟସୀ ପ୍ରଶଂସା କରିଥିଲେ । ପୂର୍ବେ ଏପରି ପ୍ରଶ୍ନୋତ୍ତର କବିତାକୁ ନାଁହିଆ କୁହା ଯାଉଥିଲା । ଯଦୁମଣି ଏପରି କେତେକ କବିତା ରଚନା କରିଛନ୍ତି । ସେ ଗୁଡ଼ିକ "ନାମ ମାଳିକା" ନାମରେ ସଂଗ୍ରହ ହୋଇଅଛି । ସେହି ନାମ ମାଳିକାରୁ ଗୋଟିଏ ଉଦାହରଣ ଏଠାରେ ଦିଆଗଲା ।

( ସଗ-କଳଶୀ )

ତିନିବର୍ଣ୍ଣେ ତାର ହୋଇଛି ପ୍ରକାଶ
ସତ୍ୟ ଯୁଗେ ୱାରେକ ଏ ବଂଶ କଲା ନାଶ । ୧ । (ମୁରା)
ନେତ୍ର ଅନଳରେ କଦ୍ରେ ଯାଇଥିଲା ଜଳି (କାମ)
କାହାଯୋଗେ ପ୍ରତିବମ୍ବ ଦିଶେ କହ ଭଲି । ୨ । (କାଚ)

ଶଚୀ ଦେବୀଙ୍କର କନ୍ୟେ ଅଟଇ ଯେ ପତି (ଇନ୍ଦ୍ର)
ଆଦ୍ୟ ଗୁଡ଼ ପ୍ରାନ୍ତ ଯୁକ୍ତେ ନାମ ଅଟେଟ ଖ୍ୟାତି । ୩ ।
ବଇସ ବର୍ଗ ଦଳନ କରେ ଶୋଭା ପାଇ
ଦ୍ୱିଗ ବାସରେ ଭୂଷିତ ହିମ୍ଳୋଚନ ନୋହି । ୪ ।
ମାତାର ପଞ୍ଚତି ଯେହ୍ନି ସୂଚା ପନ୍ତ ସେହ୍ନି
ବଂଶ ଭାରତରେ କାହିଁ ରଖିଣ ଅଛଇ । ୫ ।
ମାର ତାର ରାଜା କରି ରଖିଛନ୍ତି ଯଶ
ଭୁବନରୁ ଆଦ୍ୟ ନାମ ନ କଲେ ପ୍ରକାଶ । ୬ ।
ଗୌରବେ ପତନ ହୁଏ ଜନ୍ମ ତ ବିଫଳ
ନାମ ଜପିଣ କରଟ ଗୃହକରେ ଖେଳ । ୭ ।
ଜଗତ ପବନ ନାମ କରିଣ ଧାରଣ
ଯଦୁମଣି ପ୍ରକାଶଇ କସ ତାଙ୍କ ନାମ । ୮ ।

ରାଜା ସେଦିନ ଯଦୁମଣିଙ୍କୁ ରାଜକବି ରୂପେ ଅଭିଷିକ୍ତ କରିବା ସଙ୍ଗେ ସଙ୍ଗେ ଏକବାଟୀ ଭୂସମ୍ପତ୍ତି ନିଷ୍କରରେ ଦାନ କରିବା ନିମନ୍ତେ କଚେରୀ ବେବର୍ତ୍ତାଙ୍କୁ ନିର୍ଦ୍ଦେଶ କରିଦେଲେ ।

ଯଦୁମଣି ରାଜାଙ୍କର ପ୍ରିୟପାତ୍ର ହେବାରୁ ରାଜକର୍ମଚାରୀମାନେ ଈର୍ଷା ପରାୟଣ ହୋଇ ଯଦୁମଣିଙ୍କୁ ରାଜ ଦରବାରରେ ସ୍ଥାନ ନ ମିଳିଲା ପରି ଚେଷ୍ଟା ଚଳାଇଲେ । ସେମାନେ ଭାବିଲେ ଯେ ଯଦୁମଣି ରାଜ ଦରବାରରେ ରହିଲେ କର୍ମଚାରୀମାନଙ୍କ ସ୍ୱେଚ୍ଛାଚାରିତାକୁ ବ୍ୟଙ୍ଗ କବିତା ଓ ବ୍ୟଙ୍ଗ କଥାରେ ରାଜାଙ୍କୁ ଜଣାଇ ଦେବେ ।

ପଣ୍ଡିତ ଚକ୍ରପାଣି ପଟ୍ଟନାୟକ ନୟାଗଡ଼ ରାଜସଭାରୁ ବିଦାୟ ନେବାପରେ ରାଜ କବିମାନେ ରାଜାଙ୍କ ନିକଟରେ ଯଦୁଙ୍କ କୁତ୍ସାର କାହାଣୀ କାହିଲେ । କିନ୍ତୁ ଚତୁର ରାଜା ସେମାନଙ୍କ କଥାକୁ କର୍ଣ୍ଣପାତ କଲେନାହିଁ । ରାଜକର୍ମଚାରୀ ଓ ପଣ୍ଡିତମାନଙ୍କର ଷଡ଼ଯନ୍ତ୍ର ଯୋଗୁଁ କଚେରୀ ବେବର୍ତ୍ତା ଯଦୁମଣିଙ୍କୁ ବହୁଦିନ ଯାଏ ଜମି ଦେଲେ ନାହିଁ । ଯଦୁମଣି ଜମି ପାଇବା

ନିମନ୍ତେ ବହୁବାର ବେବର୍ତ୍ତାଙ୍କ ଦ୍ୱାରସ୍ଥ ହୋଇଥିଲେ । ଶେଷରେ ବିରକ୍ତ ହୋଇ ରାଜାଙ୍କୁ ଜଣାଇବାକୁ କହିବାରୁ ବେବର୍ତ୍ତା ଓ କର୍ମଚାରୀମାନେ ଚକ୍ରାନ୍ତ କରି କହିଲେ, "ସାପ ନ ମରୁ କି ବାଡ଼ି ନ ଭାଙ୍ଗୁ ।" ଏପରି ଢ଼ିପ ଜମି ବାଛି-ବାଛି ଦେଇଥିବା ଯେ ପୁଅ ଅଖା ଧୋଉଥିବ ଗୁଣ ଗାଉଥିବ । ବେବର୍ତ୍ତା ଢ଼ିପ ଜମି ଦେଖି ଯଦୁମଣିଙ୍କୁ ପ୍ରଦାନ କଲେ । ଯଦୁମଣି ଜମିପଟ୍ଟା ପାଇ ଜମି ଦେଖିବାକୁ ଗଲେ । ଦେଖିଲେ ଅତି ନିକୃଷ୍ଟ ଢ଼ିପଜମି । ଯଦୁମଣି ହତାଶ ହୋଇ କବିତା ପଦଟିଏ ରଚନା କରି ରାଜାଙ୍କ ହସ୍ତରେ ଦେଲେ ।

"ଦେଉ ଆଜ୍ଞା ହେଲେ ହରଷେ, କରଣ ତା କଲେ ତରଷେ,
ବାଛି ବାଛି କରି ଦେଲେ ପଡ଼ିଆ, ଶ୍ରାବଣ ମାସରେ ଭାଙ୍ଗେ ନଡ଼ିଆ
ଏମନ୍ତ ସେ ଭୂଇଁ, ଗୃକୁଣ୍ଡା ବୁଣିଲେ ଉଠଇ ନାହିଁ ।"

କବି ଯଦୁମଣିଙ୍କ ଗୀତର ମର୍ମ ବୁଝିପାରି ରାଜା, ମନ୍ତ୍ରୀ ଓ ପରିଷଦ ବର୍ଗ ସମସ୍ତେ ବିସ୍ମିତ ହୋଇଗଲେ । ସେଠାରେ ବେବର୍ତ୍ତା ମଧ୍ୟ ଉପସ୍ଥିତ ଥିଲେ । ରାଜା ସଙ୍ଗେ ସଙ୍ଗେ ଏହାର କାରଣ କ'ଣ ଜାଣିବାକୁ ଚାହିଁଲେ । ବେବର୍ତ୍ତା ଆଉ କରିବେ କ'ଣ, ତଥାପି ଡ଼ିର ଡିର ଜମି ଖଣ୍ଡିକ କେଉଁଠାରେ ଦେଇଛନ୍ତି ଜଣାଇଲେ ।

ରାଜା କ୍ରୋଧାନ୍ୱିତ ହୋଇ ସଙ୍ଗେ ସଙ୍ଗେ ବେବର୍ତ୍ତାଙ୍କୁ ଏକମାସ ପାଇଁ କାର୍ଯ୍ୟାନ୍ତର କରିଦେଲେ । ରାଜା ନିଜେ ଯଦୁମଣିଙ୍କୁ ଭଲ ଜମି ଖଣ୍ଡିଏ ନିଷ୍କର ଲେଖାଇ ପ୍ରଦାନ କଲେ ।

ରାଜା ଯଦୁମଣିଙ୍କୁ ଉତ୍କୃଷ୍ଟ ବାବଲମଡ଼ା ଜମି ନିଷ୍କର ରୂପେ ପ୍ରଦାନ କରିବାରୁ ରାଜ କର୍ମଚାରୀମାନେ ଓ ପଣ୍ଡିତମାନେ ରାଗିଯାଇଥିଲେ । ସେମାନେ ଯଦୁମଣିଙ୍କୁ ଅସୁବିଧାରେ ପକାଇବା ପାଇଁ ଉପାୟ ଖୋଜିବାରେ ଲାଗିଲେ । ଯଦୁମଣିଙ୍କ ବାପା, ଜଗନ୍ନାଥ ଠାକୁରଙ୍କର ଜମି ଖଣ୍ଡିଏ ରଖି ଚାଷ କରୁଥିଲେ । ତାର ଖଜଣା କିଛି ବର୍ଷ ହେଲା ବାକି ପଡ଼ିଥିଲା । ଜଗନ୍ନାଥଙ୍କ ସମ୍ପତ୍ତି ବୁଝାସୁଝା କରିବା ପାଇଁ କରଣ ଥିଲେ ଶ୍ରୀ କାଳନ୍ଦୀ

ଚରଣ ଚ୍ୟାଉପଟ୍ଟନାୟକ । ସେ ଦେବକୀଙ୍କୁ ପ୍ରବୋଧନା ଦେଇ କହିଲେ, "ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ । ମୁଁ ସେ ବଢ଼େଇ ଟୋକାକୁ ପାନେ ଦେଉଛି ।"

ଯଦୁମଣିଙ୍କୁ ଡକାଇ ଚ୍ୟାଉପଟ୍ଟନାୟକ ଖଜଣା ମଗାଇଲେ । ଯଦୁମଣିଙ୍କ ପାଖରେ ପଇସା ପତ୍ର ନଥାଏ । ସେ ହାତଯୋଡ଼ି ଅନୁରୋଧ କଲେ, ମୋତେ କିଛି ଦିନ ସମୟ ଦେଲେ ମୁଁ ଯୋଗାଡ଼ କରି ଦେଇଦେବି । ପଟ୍ଟନାୟକେ ବହୁତ ଗାଳି ଗୁଲଜ କଲେ । ଯଦୁମଣି ତଥାପି ସ୍ଥିର ରହିଲେ । କିନ୍ତୁ ପଟ୍ଟନାୟକ ଥରକୁ ଥର ଖଜଣା ମଗାଇଲେ । ଯଦୁମଣି ଶେଷରେ ନିରୁପାୟ ହୋଇ ଗୋଟିଏ କବିତା ଲେଖି ରାଜା ବନାୟକ ସିଂହଙ୍କ ନିକଟକୁ ପଠାଇଲେ ।

"ଜମିର ମାଲିକ ଜଗା କାଳିଆ, ତହିଁ ପିଠ ଅଟେ ଚ୍ୟାଉ କାଳିଆ
ଜମି ଥିଲା ମଜା କସ ବାହୁନବା, ଯେସନେ ମଇଁଷି ଗୋଠ ଚାଳିଆ । ୧ ।
ଜମିର ଆକାର ତମ୍ବୁ, ତହିଁ ନ ରହଇ ଟୋପାଏ ଅମ୍ବୁ
ଚାରିପଟେ ବିଲ ଶଗଡ଼ ଆକାର, ମୋ ବିଲ ଖଣ୍ଡିକ ଅଟଇ ଶମ୍ବୁ । ୨ ।
ପାଞ୍ଚ କିଆରିକ ପାଞ୍ଚ ବନ୍ଧନ, ହିଡ଼ ହାଡ଼ ମେଲ ତହିଁ ଶୋଭନ
ପ୍ରତି କିଆରିରେ ତିନି ତିନି ଖାତ, ସେ ଅଟଇ ବଣ ପଞ୍ଚଲୋଚନ । ୩ ।
ମାଳିଆ ତହିଁକି ଡାହୁକାନନ୍ଦ, ବୃଷ୍ଟି ହେଲେ କରେ ସେ ଜଳଖାଇ
କର୍ପୂର ଚନ୍ଦନ ଗୋଳି ଦେଉଥାଇ, ପଟ୍ଟୁ ପଟ୍ଟୁ ପଟ୍ଟୁ ଥାଳି କି ଦେଇ । ୪ ।
କିସ କହିବି ସେ ଚ୍ୟାଉ ପଟ୍ଟନାୟକ ଗୁଣ,
ଭିଆଉ ଭିଆଉ ଦିଆଉ ଅଛି ସେ ଏତେ କଷଣ । ୫ ।
କଂସା ବିକି ଟଙ୍କା ଦେବାକୁ ମୋର ଚିତ୍ତ ବଳିଲା,
ପିଲାଏ କୋହଲେ ଆମ୍ଭର ଏବେ ସବୁ ସରିଲା । ୬ ।
ଭାତ ସିନା ଏବେ ଖାଇବା ଚଳେ ପତର ପାଡ଼ି,
ତୋରାଣି କେମନ୍ତେ ପିଇବା ଦେଲେ ମୁହଁକୁ ମାଡ଼ି ? । ୭ ।
ପୋଡ଼ା କପାଳକୁ ଜୁଟିଲା ହଂସା, ଜାଗର ପଥର କୁଣ୍ଡି ମୋ କଂସା
ଶବ ବୋଲିବାକୁ ଭଙ୍ଗା ମାଠିଆ, ରୂପା ଦୁର୍ଗା ଖଜା ବଡ଼ା ତାଟିଆ,
ଘରେ ନାହିଁ କିଛି, ବୁଢ଼ୀ ହୋଇ ନାହିଁ ମାଇପ ଅଛି ।"

ରାଜା କବିତାଟି ପଢ଼ି ଏତେ ଖୁସି ହେଲେ ଯେ କବିତାଟି ସଭାସଦ୍‌ମାନଙ୍କୁ ପଢ଼ି ଶୁଣାଇଲେ ଏବଂ ପୂର୍ବରୁ ବଳେୟା ଥିବା ଖଜଣା ଛାଡ଼ କରି ଦେଇ ଜମିକୁ ଜାଗିର ରୂପେ ଯଦୁମଣିଙ୍କୁ ପ୍ରଦାନ କରିଥିଲେ ।

ଯଦୁମଣି ରାଜାଙ୍କ ଠାରୁ ନିଷ୍କର ଜମି ପାଇ ଅତ୍ୟନ୍ତ ଖୁସି ହୋଇଗଲେ । ଦିନେ ରାଜା ଆସନରେ ବସିଛନ୍ତି । ପାର୍ଶ୍ୱରେ ଯଥାବିଧି ପୂର୍ବକ ମନ୍ତ୍ରୀ, ଦେବର୍ତ୍ତୀ, ପଣ୍ଡିତ ପ୍ରଭୃତି ଯେ ଯାହାର ଆସନରେ ଉପବିଷ୍ଟ ହୋଇଥାନ୍ତି । କବି ଯଦୁମଣି ସ୍ୱୀୟ ଆସନରେ ବସି ରାଜାଙ୍କୁ କହିଲେ, "ଛାମୁଁ ! ମୋତେ ଆପଣଙ୍କ ଦୟାରୁ ଉପଯୁକ୍ତ ଜମିଖଣ୍ଡିଏ ମିଳିଲା । କିନ୍ତୁ ଚାଷକୁ ଭାଗୁଆଙ୍କୁ ତାହା ଲଗାଇବାରୁ ପ୍ରାୟ ଅର୍ଦ୍ଧାଧିକ ଫସଲ ସେ ନେଇ ଯାଉଛି । ମୋତେ ଯାହା ମିଳୁଛି ତାହାରେ ମୋର ଘରର ଦୁଇ ମାସର ଖାଉଟିକୁ ମଧ୍ୟ ନିଅଣ୍ଟ । ଛାମୁଁ ! ଯଦି ଦୟାକରି ମୋତେ ବଳଦ ହଳଟିଏ ଦିଅନ୍ତେ, ତେବେ ମୋର ଜମି ମୁଁ ନିଜେ ଚାଷ କରନ୍ତି । ଚାଷରୁ ପାଇବା ଫସଲରେ ମୋର ପରିବାରର ବର୍ଷକ ଖାଉଟି ଅବଶ୍ୟ ହୋଇ ଯାଆନ୍ତା ।"

ତାହା ଶୁଣି ରାଜା ସନ୍ତୋଷ ହୋଇ କହିଲେ, "ଯଦୁମଣି ତୁମକୁ ଅବିଳମ୍ବେ ବଳିଷ୍ଠ କାମିକା ବଳଦ ହଳଟିଏ ଦିଆଯିବ । ତୁମେ ତୁମର ଜମି ନିଜେ ଚାଷକରି ସୁଖରେ ଚଳିବ । ନିଶ୍ଚୟ ଦିଆ, ଦିଆ ।"

କିଛି ଦିନ ବିତିଗଲା । ବର୍ଷା ହେଲା, ଚାଷ ସମୟ ଆସି ଉପସ୍ଥିତ ହେଲା । ତଥାପି ରାଜାଙ୍କ ଆଦେଶ ପାଇଥିବା କର୍ମଚାରୀ ଯଦୁମଣିଙ୍କୁ ବଳଦ ହଳଟିଏ ଯୋଗାଇଲେ ନାହିଁ ।

ଯଦୁମଣି ଦିନେ ରାଜସଭାରେ ରାଜାଙ୍କ ସମ୍ମୁଖରେ ଗାଇବାକୁ ଲାଗିଲେ—

"ଦିଆ ଦିଆ ବୋଲି ବୋଇଲେ ବରଷିଲେ ଜଳଦ,
ବଳମାଣ କେତେ ଚଷନ୍ତୁ ଦେଇଥିଲେ ବଳଦ ।
ଦେବେ ଦେବେ ବୋଲି ଯାହା ମୁଁ ଜଗତରେ କହିଲି,
ଦେବ ଦେବଙ୍କର ବାହନ ପଛଆଡ଼ୁ ପାଇଲି ।"

ଏପରି ଶୁଣି ରାଜା ଓ ପାରିଷଦବର୍ଗ ହସିଉଠିଲେ । ରାଜା କର୍ମଚାରୀ-ମାନଙ୍କୁ ଡ଼କାଇ ସଙ୍ଗେ ସଙ୍ଗେ ବଳଦ ହଳଟିଏ ଯଦୁମଣିଙ୍କୁ ଯୋଗାଇ ଦେଲେ ।

ନୟାଗଡ଼ ରାଜସଭାରେ ରାଜାଙ୍କ ଉପସ୍ଥିତ ସମୟରେ ଯଦୁମଣି ନିଶ୍ଚିତ ଉପସ୍ଥିତ ରହୁଥାନ୍ତି । ତାଙ୍କର ହାସ୍ୟ ରହସ୍ୟ କଥା ଗୁଡ଼ିକ ଶୁଣି ରାଜା ପରମ ତୃପ୍ତି ଲାଭ କରନ୍ତି ।

ରାଜା ଦେଖିଲେ ଯଦୁମଣି କିଛିଦିନ ହେଲା ପ୍ରତ୍ୟହ ବିଳମ୍ବରେ ସଭାକୁ ଆସନ୍ତି । ଏପରି କିଛିଦିନ ତାପରେ ପ୍ରାୟ ଦଶଦିନ ଯାଏ ମୋଟେ ସଭାରେ ଉପସ୍ଥିତ ହେଲେନାହିଁ । ରାଜା ଭାବିଲେ କବିଙ୍କର ନିଶ୍ଚୟ କିଛି ଅସୁବିଧା ହୋଇଛି । ଏହାର କାରଣ ଜାଣିବା ପାଇଁ ସେ ଦୂତକୁ ପଠାଇ ଯଦୁମଣିଙ୍କୁ ରାଜସଭାକୁ ଡ଼କାଇଲେ । ଦୂତ ସହିତ ଯଦୁମଣି ବାଡ଼ିଖଣ୍ଡିଏ ଧରି ନଇଁ ନଇଁ ଠେଙ୍ଗେଇ ଠେଙ୍ଗେଇ ଚାଲିଆସି ନିଜ ଆସନରେ ବସିଲେ ।

ରାଜା ପଚାରିଲେ—ଯଦୁମଣି ତୁମେ ଏପରି ବାଡ଼ିଧରି ଠେଙ୍ଗେଇ ଠେଙ୍ଗେଇ ଚାଲୁଛ କାହିଁକି ? ତୁମର କ'ଣ ଦେହର ସୁସ୍ଥତା ନାହିଁ ?

ଯଦୁମଣି କହିଲେ— ମହାରାଜ ! ମୁଁ ବାତ ଜ୍ୱରରେ ପୀଡ଼ିତ ହେଲି ! ଔଷଧ ଖାଇ ରୋଗ ଉଣା ହେଲେ ବି ଦୁର୍ବଳତା ରହିଛି । ଚାଲିଲାବେଳେ ଆଣ୍ଠୁଗୁଡ଼ାକ ଟାଣୁଛି । ତେଣୁ ପ୍ରଭୁଙ୍କ ରାଜ ସଭାରେ ନିୟମିତ ଉପସ୍ଥିତ ହୋଇ ପାରୁ ନାହିଁ । ଯଦି ଆପଣଙ୍କର ଅନୁଗ୍ରହ ହୁଅନ୍ତା ତେବେ ଯଥା-ଶୀଘ୍ରରେ ଉପଯୁକ୍ତ ସମୟରେ ପ୍ରଭୁଙ୍କର ସାକ୍ଷାତ ଲାଭ କରନ୍ତି ।

ରହସ୍ୟ ପ୍ରିୟ ରାଜା ମୃଦୁ ହସି ପ୍ରଶ୍ନକଲେ – "ତେବେ ତୁମର ଅଭିପ୍ରାୟ କ'ଣ ପ୍ରକାଶ କର ।"

ଯଦୁମଣି କହିଲେ –

"ନୋହିବ ହରଣ ନୋହିବ ଗାଣ୍ଡି, ଘୋଡ଼ା ନାମ ବହି ହୋଇବ ମାଇ
ପିଇବ ତୋରାଣି ଖାଇବ କୁଣ୍ଡା, ତେବେ ଯଦୁମଣି ହୋଇବ ଭେଣ୍ଡା ।"

ରାଜା ଯଦୁମଣିଙ୍କ ମନୋଭାବ ବୁଝିପାରି ହସି ହସି କହିଲେ – କବି ଭୁମ୍ଭର ଅଭିଳାଷ ଅବିଳମ୍ବେ ପୂରଣ ହେବ । ରାଜା ଏହା କହି ଅଶ୍ୱରକ୍ଷକଙ୍କୁ ଡ଼କାଇ ଆଦେଶ ଦେଲେ ଯଦୁମଣିଙ୍କୁ ଗୋଟିଏ ସୁଶ୍ରୀ ସୁଠାର ଓ ଶକ୍ତିଶାଳୀ ଘୋଡ଼ା ଦେବାପାଇଁ ।

ଅଶ୍ୱରକ୍ଷକ ସଙ୍ଗେ ସଙ୍ଗେ ରାଜାଙ୍କ ଆଦେଶ ପାଳନ କରି କବିଙ୍କ ସମୀପରେ ଘୋଡ଼ାଟିଏ ଆଣିଦେଲା । ସେହି ଦିନୁ ଯଦୁମଣି ଅଶ୍ୱପୃଷ୍ଠରେ ଆରୋହଣ କରି ରାଜସଭାକୁ ଠିକ୍ ସମୟରେ ଉପସ୍ଥିତ ହେଲେ ।

## ନୟାଗଡ଼ ରାଜସଭାରେ କବି ଯଦୁମଣି—

ଯଦୁମଣିଙ୍କ କାର୍ଯ୍ୟକଳାପ, ପ୍ରତ୍ୟୁତ୍ପନ୍ନ ବୁଦ୍ଧି ଓ କବିତ୍ୱ ଜନମ ରାଜା ବିନାୟକଙ୍କୁ ତୃପ୍ତି ପ୍ରଦାନ କଲା । ରାଜା ଯଦୁମଣିଙ୍କୁ ରାଜକବି ରୂପେ ସ୍ୱୀକାର କରିବା ସଙ୍ଗେ ସଙ୍ଗେ ନିଜର ବୟସ୍ୟ ରୂପେ ଗ୍ରହଣ କରିଥିଲେ । ସେ ସମୟରେ ପ୍ରତ୍ୟେକ ରାଜ ଦରବାରରେ ଜଣେ ଜଣେ ବିଦୂଷକ ରହି ରାଜାଙ୍କ ମନୋରଞ୍ଜନ କରୁଥାନ୍ତି । ଯେପରି ନୃପତି କୃଷ୍ଣଚନ୍ଦ୍ରଙ୍କ ଦରବାରରେ ଗୋପାଳଭଣ୍ଡ କଥା ଶୁଣାଯାଏ, ମାତ୍ର ଯଦୁମଣି ସେପରି ନଥିଲେ । ସେ ହାସ୍ୟ ମାଧ୍ୟମରେ ରୁଚି ରସାତ୍ମକ ସାହିତ୍ୟ ସୃଷ୍ଟି କରି ପାରୁଥିଲେ ।

"ହାସ୍ୟକରଃ କଳହରତିର୍ବିଦୂଷକଃ ସ୍ୟାତ୍ ସ୍ୱକର୍ମଜ୍ଞଃ ।"
ସ୍ୱକର୍ମ ହାସ୍ୟାଦି (ସାହିତ୍ୟ ଦର୍ପଣ)

କାର୍ଯ୍ୟ, ଶରୀର, ବେଶଭୂଷା, ଭାଷା ପ୍ରଭୃତି ଦ୍ୱାରା ହାସ୍ୟୋତ୍ପାଦକ, କଳହ ବିଷୟରେ ପ୍ରୀତି, ନିଜକାର୍ଯ୍ୟ ଭୋଜନାଦିରେ ସର୍ବଦା ସାବଧାନ ଏପରି ନାଟକୀୟ ପାତ୍ରକୁ ବିଦୂଷକ କୁହାଯାଏ । ସ୍ୱକାର୍ଯ୍ୟ ଅର୍ଥାତ୍ ନିଜର କାର୍ଯ୍ୟଦ୍ୱାରା ଲୋକଙ୍କୁ ହସାଇବା ପ୍ରଭୃତି ।

ମାତ୍ର ଯଦୁମଣି ଥିଲେ ରାଜାଙ୍କ ପରାମର୍ଶଦାତା ଓ ବୟସ୍ୟ । କଥା ପ୍ରସଙ୍ଗରେ ପଦେ ପଦେ ତାଙ୍କ ମୁଖରୁ ବାହାରି ପଡ଼ୁଥିଲା କବିତା । ସେ

ଥିଲେ "ଆଶୁକବି" କାଳିଦାସ ଓ ବୀରବଲଙ୍କ ସମକକ୍ଷ କହିଲେ ଅତ୍ୟୁକ୍ତି ହେବନାହିଁ ।

କୌଣସି ରାଜା ମହାରାଜା ନିଜର ବନ୍ଧୁ ଭାବରେ ସାଧାରଣ ବ୍ୟକ୍ତିକୁ ଗ୍ରହଣ କରିବା ସହଜ କଥା ନୁହେଁ । ବିକ୍ରମାଦିତ୍ୟଙ୍କ ରାଜସଭାରେ କବି କାଳିଦାସ ଯେଉଁ ପ୍ରତିଷ୍ଠା ଲାଭ କରିଥିଲେ ସମସ୍ତଙ୍କୁ ତାହା ଅବଶ୍ୟ ଜଣାଥିବ । ଯେପରି ମୋଗଲ ସମ୍ରାଟ ଆକବରଙ୍କ ରାଜ ସଭାରେ ପଣ୍ଡିତ ବୀରବଲଙ୍କୁ ବୟସ୍ୟ ରୂପେ ନିର୍ବାଚିତ କରାଯାଇଥିଲା ସେହିପରି ଯଦୁମଣି ରାଜା ବିନାୟକ ସିଂହଙ୍କ ବୟସ୍ୟ ରୂପରେ ନିଯୁକ୍ତ ଥିଲେ ।

ସାଧାରଣତଃ ରାଜାମାନଙ୍କ ଅନୁଗ୍ରହରେ ପ୍ରତିପୋଷଣ ହେଉଥିବା ବ୍ୟକ୍ତିମାନେ ରାଜାଙ୍କ ଭୁଲକୁ ମଧ୍ୟ ସମର୍ଥନ କରନ୍ତି । କିନ୍ତୁ ଯଦୁମଣି ସମର୍ଥନ କରିବା ଦୂରର ବ୍ୟାପାର, ସେ ରାଜା ହେଉ ବା ରାଜକର୍ମଚାରୀ ହେଉ ଯଦି କୌଣସି ଭୁଲ କାର୍ଯ୍ୟ କରନ୍ତି ତେବେ ସମାଲୋଚନା କରିବାକୁ ଛାଡ଼ି ଦେଲେ ପଛାଉ ନଥିଲେ । ସେ ଜାଣନ୍ତି ରାଜା ଓ ରାଜ କର୍ମଚାରୀଙ୍କ ସମାଲୋଚନା କଲେ ତାଙ୍କର ନିଶ୍ଚୟ ଅସୁବିଧା ହେବ । ତଥାପି ସେ ଉପଯୁକ୍ତ କଥା ପ୍ରକାଶ କରିବାକୁ ଦ୍ୱିଧା ପ୍ରକାଶ କରନ୍ତି ନାହିଁ ।

ଦିନେ ରାଜ ସଭାରେ ରାଜା ବିନାୟକ ସିଂହ, ମନ୍ତ୍ରୀ, ରାଜଗୁରୁ, ପଣ୍ଡିତଗଣ, ଯଦୁମଣି ଓ ଅନ୍ୟାନ୍ୟ ପରିଷଦବୃନ୍ଦ ଯେ ଯାହାର ଆସନରେ ବସିଛନ୍ତି । ରାଜା ଯଦୁମଣିଙ୍କୁ ପ୍ରଶ୍ନକଲେ, "ଯଦୁମଣି ତୁମେ କୁକୁର ।"

ଏକଥା ଶୁଣି ଉପସ୍ଥିତ ସଭା ସଦ୍‌ଜନମାନେ ହସର ଜୁଆର ସୃଷ୍ଟି କରିଦେଲେ । ଯଦୁମଣି ଏ ପ୍ରକାର ଅତର୍କିତ ପ୍ରଶ୍ନବାଣ ପାଇଁ ପ୍ରସ୍ତୁତ ନଥିଲେ । ମାତ୍ର ତାଙ୍କର ପ୍ରତ୍ୟୁତ୍ପନ୍ନ ମତି ହିଁ ତାଙ୍କୁ ମୁକ୍ତି ଦେଇଥିଲା । ସେ କ୍ଷଣକ ପାଇଁ ନୀରବ ରହିଲେ । ତାପରେ ହାତଯୋଡ଼ି ବିନୀତ ଭାବେ କହିଲେ, "ହଁ ଆଜ୍ଞା ! ମୁଁ କୁକୁର ଆଉ ଗୁମୁଁ ତୁଳସୀ ଗଛ ।"

ଯଦୁମଣିଙ୍କ ଠାରୁ ଏପରି ଉତ୍ତର ଶୁଣି ରାଜା ଖୁସି ହୋଇ ଉଚ୍ଚ ସ୍ୱରରେ ହସିଦେଲେ । ମାତ୍ର ଉପସ୍ଥିତ ଥିବା ପଣ୍ଡିତମାନେ କହିଲେ, "ଗୁମୁଁ ଆପଣ ହାରିଗଲେ ।"

ଯଦୁମଣି ମୁରୁକେଇ ହସି ତାଙ୍କ ସଙ୍ଗେ ସହଜ ସରଳ ଭାଷାରେ କହିଦେଲେ, "ସ୍ୱାମୀ ! ସେହି କଥା ଭାବୁଛି, ଆପଣ ମୋତେ କୁକୁର କହିଲେ, ମୁଁ ସଙ୍ଗେ ସଙ୍ଗେ କହି ପକାଇଲି ଆପଣ ତୁଳସୀ ଗଛ । ମାତ୍ର କୁକୁରର ଧର୍ମ ସେ ତୁଳସୀ ଗଛରେ ମୁତେ । ରାଜା ଯଦୁମଣିଙ୍କ କଥା ଶୁଣି ମନେ ମନେ ଲଜ୍ଜା ଅନୁଭବ କଲେ । ଭାବିଲେ—ଯଦୁମଣି ମୋତେ କଥାରେ ପରାସ୍ତକରି ଉପଯୁକ୍ତ ଉତ୍ତର ଦେଉଛନ୍ତି ।

ରାଜା କିଛି ସମୟ ନୀରବ ରହିଲେ । ତାପରେ ଅନ୍ୟ ବିଷୟ ଉପରେ କଥାକୁ ବୁଲାଇ ଦେଲେ । ତା' ପରେ ରାଜା କହିଲେ, "ଯଦୁମଣି ଚାଲ ତୋଟାକୁ ଯିବା ।" ଯଦୁମଣି ସଙ୍ଗେ ସଙ୍ଗେ କହିଲେ—"ଆଜ୍ଞା ! ମୁଁ ଟିକେ ତୋରାଣି ସାରି ଆସେ ।"

ରାଜାଙ୍କ ତୋଟାକୁ ଯିବା ଅର୍ଥ ତୋ' ସ୍ତ୍ରୀ ପାଖକୁ ଯିବା ଚାଲ । ଦ୍ୱିତୀୟ ଅର୍ଥ ହେଉଛି ସାଧାରଣତଃ ଗ୍ରୀଷ୍ମ ଦିନରେ ଆମ୍ବ, ପଣସ ବିଭିନ୍ନ ପ୍ରକାର ଗଛପୂର୍ଣ୍ଣ ତୋଟାରେ ଟିକିଏ ଶାନ୍ତି ପାଇବା ପାଇଁ ଯିବା ।

ଯଦୁମଣିଙ୍କ କହିବା ତୋରାଣୀ ଅର୍ଥାତ୍ ଖରାଦିନେ ଲୋକେ ତୋରାଣି ପଖାଳ ଖାଆନ୍ତି । ତେଣୁ ତୋଟାକୁ ଯିବା ପୂର୍ବରୁ ମୁଁ ତୋରାଣି ଟିକିଏ ପିଇଦେଇ ଆସେ । ଅନ୍ୟ ଅର୍ଥରେ ମୋ ସ୍ତ୍ରୀ ପାଖକୁ ଯିବା ପୂର୍ବରୁ ମୁଁ ତୁମ ରାଣୀ ଠାରେ କାମ ସାରିଦେଇ ଆସେ ।

ରାଜା କଥାଟି ଆରମ୍ଭ କରିଦେଲେ ସତ, କିନ୍ତୁ ସହ୍ୟ କରି ପାରିଲେ ନାହିଁ । ଉପସ୍ଥିତ ଥିବା ଲୋକେ ହସିଦେଲେ । ରାଜା ନିଜକୁ ଅପମାନ ବୋଧ କଲେ । ଏଣୁ ଯଦୁମଣିଙ୍କୁ ରାଜାଙ୍କ ଦରବାର ମନା ହୋଇଗଲା । ରାଜା ଯେତେବେଳେ ଯଦୁମଣିଙ୍କ ମୁଖ ଦେଖିବେ ନାହିଁ ବୋଲି କହିଲେ, ଯଦୁମଣିଙ୍କୁ ଆଉ ନୟାଗଡ଼ ରାଜସଭାକୁ ଆସିବା ଆବଶ୍ୟକ ପଡ଼ିଲା ନାହିଁ ।

ଯଦୁମଣି ଘରେ ବସି ବିଭିନ୍ନ ଦେବା ଦେବୀ ମୂର୍ତ୍ତି ନିର୍ମାଣ, ଚିତ୍ର ଅଙ୍କନ ଓ କବିତା ଲେଖିବାରେ ସମୟ ବିତାଇଲେ । ଯଦୁମଣି ନିରୁତ୍ସାହ ହେଲେ

ଅଞ୍ଜନା ତାଙ୍କୁ ସାହସ ଦିଅନ୍ତି । ଅଞ୍ଜନା କହନ୍ତି ଜଗନ୍ନାଥ ଆମର ଗୁହାରି ନିଶ୍ଚୟ ଶୁଣିବେ ଏବଂ ରାଜାଙ୍କ ମାନମରାନ୍ତରକୁ ଯଥାଶୀଘ୍ର ତୁଟାଇଦେବେ । ତୁମ୍ଭେ ସିନା ତୁମକୁ ଦରବାରକୁ ଆସି ଦେଖା ଦେବାକୁ ମନା କରିଦେଲେ, ତେଲେ ସେ ନିଶ୍ଚୟ ତୁମକୁ ଭଲ ପାଆନ୍ତି ।

ଆଷାଢ଼ ମାସ ଆସିଗଲା, ରଥଯାତ୍ରା ହେବ । ଜଗନ୍ନାଥଙ୍କୁ ଚାହ କରିବା ଓ ରଥ ପାଖେ ରହି ଆବଶ୍ୟକ ସ୍ଥଳେ ଜଗନ୍ନାଥଙ୍କର ସେବା କରିବା ଯଦୁମଣିଙ୍କର କୌଳିକ ବୃତ୍ତି । ଯଦୁମଣି କପଣ ସେ ବୃତ୍ତିରୁ ନିବୃତ୍ତ ରହିବେ । ଯଦୁମଣି ବାଧ ହୋଇ ରଥଯାତ୍ରାରେ ଯୋଗଦେଲେ । ଏଣେ ରାଜା ରାଣୀ ମଧ୍ୟ ପାତ୍ର ମନ୍ତ୍ରୀ ଗହଣରେ ବିଜେ କରିଛନ୍ତି ।

ରାଜା, ମନ୍ତ୍ରୀ ଓ ପ୍ରଜାମାନେ ରଥ ପାର୍ଶ୍ୱରେ ଚାଲିଥାନ୍ତି । ହଠାତ୍ ରାଜାଙ୍କର ଦୃଷ୍ଟି ପଡ଼ିଲା ତାଙ୍କର ପାଖରେ କଣା ଡ଼ୋଲଟିଏ ଘୋଡ଼ାଇ ହୋଇ କେହି ଜଣେ ଯାଉଛନ୍ତି ! ଡ଼ୋଲଟି ଚାଲିଲା ଭଳି ଦେଖା ଯାଉଛି । ଏହି ଦୃଶ୍ୟ ଦେଖି କେତେକ ଲୋକ ତାଳି ମାରିଲେ ଓ ହସିଲେ । ଆଉ କେତେକ ଆଶ୍ଚର୍ଯ୍ୟ ହୋଇ ଚାହିଁଛନ୍ତି । ରାଜା ହସି ହସି ମନ୍ତ୍ରୀଙ୍କୁ କହିଲେ "ମନ୍ତ୍ରୀ ବୁଝିଆସ ସେ ଲୋକଟି କିଏ ?" ପାଗଳ ନା ଏପରି କେହି ଜଣେ ଲୋକ ଅନ୍ୟମାନଙ୍କୁ ହସାଇବା ପାଇଁ ଏପରି ବେଶ କାଢ଼ିଛି ।

ରାଜାଙ୍କ ଆଦେଶରେ ମନ୍ତ୍ରୀ ଡ଼ୋଲ ପାଖରେ ଯାଇ ପଚାରିଲେ "ତୁମେ କିଏ ସେ ?"

ଯଦୁମଣି ଭିତରୁ କହିଲେ, "ମୁଁ ଯଦୁମଣି । ପ୍ରଭୁ ଜଗନ୍ନାଥଙ୍କୁ ବାଧ୍ୟବାଧ ଭାବରେ ଚାହ କରି ଚାହକର ହିସାବରେ ପ୍ରାଚୀନ ପ୍ରଥାମୂତାବକ ପ୍ରଭୁଙ୍କ ପଛ ଚାଲିଛି ।"

ମନ୍ତ୍ରୀ ହସି ହସି କହିଲେ—ତୁମେ ଡୋଲ କଣା କରି କାହିଁକି ଘୋଡ଼ ହୋଇଛ ?

ଯଦୁମଣି ଉତ୍ତର ଦେଲେ—ମୁଁ ଢେଙ୍କ କଣାବାଟେ ବେଶ୍ ବାଟ ଦେଖିପାରୁଛି । କିଛିତ ଅସୁବିଧା ହେଉନାହିଁ । ପୁଣି ରାଜା ଆଦେଶ ଯେ ମୋ ମୁଖ ଦେଖି ପାରିବେ ନାହିଁ । ମୁଁ କିନ୍ତୁ ମହାପ୍ରଭୁ ଓ ରାଜାଙ୍କୁ ଦେଖି ପାରୁଛି ।" ଏପରି କହି ଯଦୁମଣି ପୂର୍ବପରି ବସିଲେ ।

ମନ୍ତ୍ରୀ ଯାଇ ରାଜାଙ୍କୁ ସବୁକଥା ଜଣାଇଲେ । ରାଜା ରହସ୍ୟପ୍ରିୟ ଓ କ୍ଷଣକୋପି । ଯଦୁମଣିଙ୍କ ପ୍ରତି ତାଙ୍କର କ୍ରୋଧ ଦୂର ହୋଇ ଯାଇଥିଲା । ସେ କହିଲେ, "ଯାଅ ମନ୍ତ୍ରୀ ଯଦୁମଣିଙ୍କୁ କହ, ସେ ମୋତେ ମୁଖ ଦେଖାନ୍ତୁ ।"

ମନ୍ତ୍ରୀ ଯଦୁମଣିଙ୍କ ନିକଟକୁ ଯାଇ ସକଳ କଥା କହିଲେ । ଯଦୁମଣି ରାଜାଙ୍କ ସମ୍ମୁଖକୁ ଆସି ହାତଯୋଡ଼ି ଗାଇଲେ—

"ଅମଳ କମଳ ଦଳ ଲୋଚନ, କୁଣ୍ଡଳାଲଂକୃତ ଶୁଭ୍ର ଦର୍ଶନ,
କଥ୍ୟ କଥନକୁ ଦୃଢ଼ ସଯମ, ବିଚ୍ୟୁତି ବିଚାର କି ବିଘଟନ
ନବ ଦୁର୍ଗଶ୍ୱଣ, ଇଷ୍ଟ ଦେବତା ପରି ଆଚରଣ ।"

ପ୍ରକୃତରେ ରାଜା ରାଜବେଶରେ ବିରାଜମାନ କରିଥିବାରୁ ଅତ୍ୟନ୍ତ ମନୋହର ଦେଖା ଯାଉଥିଲେ । ତେଣୁ ଯଦୁମଣି ରାଜାଙ୍କର ନେତ୍ରଦ୍ୱୟକୁ ଅମଳ କମଳ ଦଳ ବୋଲି ବର୍ଣ୍ଣନା କରିଥିଲେ । ସ୍ୱର୍ଣ୍ଣ କୁଣ୍ଡଳ ଧାରଣ କରିବା ଯୋଗୁଁ କୁଣ୍ଡଳାଲଂକୃତ ବୋଲି କହିଥିଲେ । ହେ ରାଜା ଆପଣଙ୍କ କଥା ପାଣିରେ ସର ପକାଇଲା ପରି । କିନ୍ତୁ ଯେଉଁ କଥାରେ ବିରୋଧ କଲେ ଆପଣଙ୍କ ଚରିତ୍ରରେ ବିଚାର ବିଚ୍ୟୁତି ଦେଖାଯାଏ । ହେ ନବଦୁର୍ଗ-ରାଣ, ସହଜେ ଆପଣଙ୍କର ଇଷ୍ଟଦେବ 'ବାଉଁଶ ଅଟନ୍ତି ।' ଏଣୁ ଅଶିକ୍ଷିତ ବାଉଁଶଙ୍କ ପରି ଏପରି ଆଚରଣ ଦେଖାଇବା କ'ଣ ଉଚିତ ? ଏହାତ ଏକଜିଦିଆ ବୋଲି ଲୋକେ କହୁଛନ୍ତି ।

ରାଜା ସମସ୍ତ କଥା ବୁଝି ସଙ୍ଗେ ସଙ୍ଗେ ଓଃ ହୋ···କହି ହସି ହସି ଯଦୁମଣିଙ୍କୁ ପାଟଯଥା ପୁରସ୍କାର ଦେଇ ତାଙ୍କୁ ନିଜ ସାଥିରେ ରଥଯାତ୍ରାରେ ନେଇଗଲେ ।

## ବେଶ୍ୟାଳୟ ଓ କବି ଯଦୁମଣି—

ଯେଉଁ ସମୟରେ କବିମାନେ ସଭ୍ୟ, ସୁଶିକ୍ଷିତ, କାବ୍ୟକବିତାନୁରାଗୀ, ସୌନ୍ଦର୍ଯ୍ୟପ୍ରିୟ ଓ କଠୋର ପରିଶ୍ରମ ପୂର୍ବକ କାବ୍ୟ ରଚନା କରୁଥିଲେ ସେହିଁ ମାନେ ଯୌବନ ଲାଳସୀ ଥିଲେ । ବେଶ୍ୟାବୃତ୍ତି ମଧ୍ୟ ସମାଜ ସ୍ୱୀକୃତି ଲାଭ କରିଥିଲା । କେହି କେହି ବେଶ୍ୟା କାବ୍ୟ କବିତା ମଧ୍ୟ ରଚନା କରିଛନ୍ତି । କେହି କେହି ବଙ୍କ ପଣ୍ଡିତ ହେଲେ ମଧ୍ୟ ବେଶ୍ୟାସକ୍ତ ଥିଲେ ।

ମହାକବି କାଳିଦାସ କାବ୍ୟ କବିତା ରଚନା କରି ରାଜଦରବାର-ମାନଙ୍କରୁ ଯେଉଁ ବିପୁଳ ଅର୍ଥ ଉପାର୍ଜ୍ଜନ କରୁଥିଲେ ତାହା କେବଳ ବେଶ୍ୟା ମାନଙ୍କୁ ଉତ୍ସର୍ଗ କରିଦେଇ ଅତି ଦୟନୀୟ ଭାବେ ଦରିଦ୍ରତା ମଧ୍ୟରେ ଜୀବନ ଯାପନ କରୁଥିଲେ । ପରିଶେଷରେ ସେ ନିଜେ ମଞ୍ଜରୀଙ୍କ ବେଶ୍ୟାଳୟରେ ମୃତ୍ୟୁ ବରଣ କରିଥିଲେ ।

ସିଂହଳ ରାଜା କୁମାର ଦାସ ଏକଦା ଏକ କବି ସମ୍ମେଳନ ଉପଲକ୍ଷେ କାଳିଦାସଙ୍କୁ ନିମନ୍ତ୍ରଣ କରିଥାନ୍ତି । କୁମାର ଦାସ କାଳିଦାସଙ୍କର ଅତି ପ୍ରିୟ ବନ୍ଧୁ ଥିଲେ । କାଳିଦାସ ସିଂହଳରେ ପହଞ୍ଚି ସେ ରାଜ୍ୟର ଶ୍ରେଷ୍ଠ ସୁନ୍ଦରୀ ବେଶ୍ୟା ମଞ୍ଜରୀକା ଗୃହରେ ପ୍ରଥମେ ଅତିଥି ହେଲେ । ରାତ୍ରିର ସନ୍ଧି ସମୟ । ମଞ୍ଜରୀକା ମଧ୍ୟ ଜଣେ କବୟିତ୍ରୀ ଥିଲେ । ରାଜା କୁମାର ଦାସଙ୍କ ପ୍ରଦତ୍ତ ଏକ ସମସ୍ୟାର ମଞ୍ଜରୀକା ପୂର୍ତ୍ତି କରିବାରେ ବ୍ୟସ୍ତ ଥିଲେ । ଏଣୁ ମଞ୍ଜରୀକା କାଳିଦାସଙ୍କୁ କୌଣସି ପ୍ରକାର ପ୍ରଶ୍ରୟ ଦେଇ ନଥିଲେ । କାଳିଦାସ ବେଶ୍ୟା ମଞ୍ଜରୀକାଙ୍କୁ ଅନୁରୋଧ କରି ସମସ୍ୟାଟିକୁ ଜାଣିବାକୁ ଚାହିଁଥିଲେ ।

ସମସ୍ୟାଟି ଥିଲା—"କମଳେ କମଳୋତ୍ପତ୍ତିଃ ଶ୍ରୂୟତେ ନ ତୁ ଦୃଶ୍ୟତେ ।"

କମଳେ ଅର୍ଥାତ୍ ପଦ୍ମଫୁଲରେ ପଦ୍ମଫୁଲ ଫୁଟେ ଏହା ଶୁଣାଯାଉଛି, ମାତ୍ର ଦେଖା ଯାଉନାହିଁ । ଏହାର ଅନ୍ୟ ପଦ ପୂରଣ କରିବା ଥିଲା ମଞ୍ଜରୀକାର ସମସ୍ୟା । ମଞ୍ଜରୀକା କବି କାଳିଦାସଙ୍କୁ ଆତିଥ୍ୟ ପ୍ରଦାନ କରିବା ପୂର୍ବରୁ ସମସ୍ୟାଟି ପୂରଣ ନିମନ୍ତେ ଅନୁରୋଧ କରିଥିଲା । କାରଣ

ପ୍ରଖ୍ୟାତ ହେଲେ ରାଜାଙ୍କର ଆଦେଶ ଥିଲ ମୁଣ୍ଡକାଟ । ମହାକବି କାଳିଦାସ ମଞ୍ଜରୀଙ୍କ ମୁଖରୁ ସମସ୍ୟାଟି ଶୁଣି ସଙ୍ଗେ ସଙ୍ଗେ ଗାଇ ଉଠିଲେ—

"ବାଲେ ! ତବ ମୁଖାମ୍ଭୋଜେ ଦୃଷ୍ଟମ୍ ମିନ୍ଦବର ଦ୍ୱୟମ୍ ।"

ହେ ବାଲେ ଅର୍ଥାତ୍ ହେ ସୁନ୍ଦରୀ ତୁମ ମୁଖ କମଳରେ ଦୁଇଟି ନୀଳକମଳ ଦୃଷ୍ଟିଗୋଚର ହେଉଅଛି । ଏହା ଶୁଣି ସମସ୍ୟା ପୂର୍ଣ୍ଣ ନିମନ୍ତେ ସମ୍ମାନ ଓ ଅର୍ଥଲାଭ ଲୋକସାରେ କବିଙ୍କୁ ହଳାହଳ ବିଷପାନ କରାଇ ତାଙ୍କୁ ପଡ଼ିଥିଲା । ମହାକବି କାଳିଦାସ ସବୁଦିନ ପାଇଁ ମଞ୍ଜରୀଙ୍କ ବେଶ୍ୟାଳୟରେ ଏହି ସୁନ୍ଦର ଧରଣୀ ବକ୍ଷରୁ ବିଦାୟ ନେଇଥିଲେ । ଏଣୁ ଜୀବମାତ୍ରେ ହିଁ ସୁନ୍ଦରୀ ବେଶ୍ୟାମାନଙ୍କର ଅନୁଗାମୀ ହେବା ଆଦୌ ନିଶ୍ଚିତ କରିବା ଅନୁଚିତ ।

ଯଦୁମଣି କୁ-ସଙ୍ଗ ଓ କୁ-ପରାମର୍ଶରେ ପଡ଼ି, ତାଙ୍କର ପରମ ସୁନ୍ଦରୀ ଧର୍ମପତ୍ନୀ ଖଞ୍ଜନାଙ୍କ ପ୍ରତି ଅବହେଳା କରି 'ଶଶୀ' ନାମକ ଏକ ବେଶ୍ୟା ନିକଟରେ ପ୍ରଣୟ ପ୍ରାର୍ଥନା କରିଥିଲେ । ମାତ୍ର ଶଶୀ ଧନହୀନ ଯଦୁମଣିଙ୍କୁ ଉଚିତ ଶିକ୍ଷା ଦେଇଥିଲା । ରାତିସାରା ଦୁଆରେ ବସାଇ ସକାଳୁ ନିଜଘରେ ଫେରାଇ ଦେଲା ସିନା ହେଲେ ସ୍ନେହରେ ପାଖକୁ ଡାକି ନଥିଲା । ଶଶୀ ଜାଣିଥିଲା ଯଦୁମଣିଙ୍କ ଠାରୁ ପ୍ରଚୁର ଧନ ତ ମିଳିବ ନାହିଁ ତା ବ୍ୟତୀତ ସେହି ରାତି ତାନରେ କୌଣସି ଅସୁବିଧା ହୁଏ ହେବେ ଯଦୁମଣି ତା ବିରୁଦ୍ଧରେ କବିତା ଲେଖିବେ । ଫଳରେ ତାର ଅନ୍ୟାନ୍ୟ ଗ୍ରାହକମାନେ ଆଉ ଆସିବେ ନାହିଁ ।

ଯଦୁମଣି ପ୍ରଭାତ ପୂର୍ବରୁ ସ୍ୱଗୃହକୁ ଫେରି ଆସି ପତ୍ନୀ ଖଞ୍ଜନାଙ୍କ ନିକଟରେ ନିଜର ଭୁଲ ପାଇଁ ଅନୁତାପ କରିଥିଲେ ଓ ତାଙ୍କୁ ଯତି-ଜପ-ଧ୍ୱଂସକାରିଣୀ ରସବତୀ ସତୀ ବୋଲି ଚିହ୍ନଣ କରି ବେଶ୍ୟାକୁ କପଟ ମର୍କଟ ବଦନା ବଜାରୁଣୀ, ଅଣ୍ଡିରଚଣ୍ଡୀ ବୋଲି ବର୍ଣ୍ଣନା କରିଛନ୍ତି । ଏପରି ଦୁର୍ଦ୍ଦଶା ଯଦୁମଣି କର୍ମଦୋଷରୁ ପାଇଲେ ବୋଲି କହି କବିତାଟିଏ ମୁହେଁ ମୁହେଁ ଗାଇଲେ—

ଚାଣୁ ଚାଣୁ କ୍ଷଣେରେ ମୁଁ ପଡ଼ିଲରେ, ଜଣା ଶୁଣା ସରଣୀ ଛାଡ଼ିଲରେ ।
କଣାଶିଣା ବୁଦ୍ଧି ରେ, ଢେଳି ଢଣା ମଧ୍ୟରେ, ଚଣା ଫେଷାଇ ବଣା ଅଡ଼ିଲ ରେ
ନବଧଉଳ ଲକ୍ଷ ଫେଷି ଏରଣ୍ଡ ଫଳ, ନାରିକେଳକୁ ଯା ନ ପେଡ଼ିଲରେ ।
ପଣ୍ଡ କପ ଧ୍ୱଂସନ୍ତ କରିବା ରସବନ୍ଧ, ସଖୀ ନାୟିକା ସଙ୍ଗ ଏଡ଼ିଲ ରେ ।
ନାଟ ମରକତି କଜାର ନାହାକାଠି, ପାଦାନ୍ତ ରଥୀ ମୁଣ୍ଡ ମଣ୍ଡିଲ ରେ ।
ଚନ୍ଦ୍ରକାନ୍ତ ସୁରଙ୍ଗ, ପାରାଳ ଫୁଟା ଲିଙ୍ଗ, ଶିରେ ବାରୁଣୀ ଅଣି ଭିଡ଼ିଲ ରେ
କୁଶଳ କଥା ମୋର, ମୃଦୁଳମାନ ଗିର, ଗାଂଡ଼ିକ କରପଦ ଯୋଡ଼ିଲ ରେ
ସବିନ୍ତି ଉଜାଗର ନିଦ୍ରାରେ ଗରଗର, ହୋଇ ଜଗେ ଯେବେ ମୁଁ ରଡ଼ିଲ ରେ
ନ ଶୁଣିଲ ମୋ ଗିର, ଯଦୁମଣି ଉତ୍ତର, କର୍ମ ଦୋଷରୁ ଏହା ବଢ଼ିଲ ରେ

ଅନୁତାପ ଭରା ସ୍ୱାମୀଠାରୁ ପ୍ରଶଂସାମୂଳକ କବିତାଟି ଶୁଣି ରଞ୍ଜନା ହସି ହସି ସ୍ୱାମୀଙ୍କୁ କୋଳକୁ ଟାଣିନେଲେ । କହିଲେ—ତୁମେ ମୋର ଦେବତା, ଜଗନ୍ନାଥ ଠାକୁର, ତୁମେ ଏପରି କଣ କହୁଅଛ । "ତୁମ ଦୋଷ କ'ଣ ମୁଁ ଧରିପାରେ । ତୁମେ ତ ସୁପୁରୁଷ ପୁଅ, ତୁମର ଭୁଲ କ'ଣ ? ସବୁ ମୋର ଦୋଷ ।"

ପରବର୍ତ୍ତୀ ସମୟରେ କବିସୂର୍ଯ୍ୟ ବଳଦେବ ଯଦୁମଣିଙ୍କ ବେଶ୍ୟା ପ୍ରତି ଆସକ୍ତି କଥା ଶୁଣି ଶଠି ସହିତ ଖଣ୍ଡିଏ କବିତା ଲେଖି ଯଦୁମଣିଙ୍କ ନିକଟକୁ ପଠାଇଥିଲେ । ଯାହାକି ଯଦୁମଣି ପାଠକରି ତାଙ୍କର ଜୀବନରେ ବିରାଟ ପରିବର୍ତ୍ତନ ହୋଇଥିଲା ।

ଦାସୀ ବୋଲି ଯାହା କଲ ଦଇବ, ତା ସାଙ୍ଗେ ବଚନେ କିସ ଉଦ୍ଭବ
ହର୍ଷ ହେଉପଛେ ଉଦ୍‌ବେଗ ଶ୍ରେଣୀ, ନାସରେ ଧିକ ତା ଗୁରୁକୁ ଗଣି
କାହାରି ସେ ନୁହେଁ, ଜୁହାରି ଟେକିଇ ପରାଣ ଦହେ । ୧ ।
କି କାର୍ଯ୍ୟ ତାଠାରେ ସେ କି ନାୟିକା, 'ଧକା' ବକା ଏକା ଯାହା ଜୀବିକା
ରଙ୍ଗରେ ସଙ୍ଗରେ ରହାଇ ସେହି, ରସ ଖାଇ ଖାଇ ପରାଣ ଯାଇ
କହିବା କାହାକୁ, ଫନ୍ଦାକରେ ସେ ଜନାପବାଦକୁ । ୨ ।
ଖଟକୁ ଛେକ ଯାଏ ଅତି ସ୍ନେହେ, ନଟକୁଟ କଥା ହଜାରେ କହେ,
ବାବୁ ଘର ମାମୁଁ ପ୍ରିୟପତି ପତି, ଲମ୍ପଟ ଭଣ୍ଡ ମାନଙ୍କ ତ କରନ୍ତି
କରୁଛି ନୁହେ ଭଲ, ଛି ଛି ତା ମୁହେଁ ପଡ଼ୁ ନିଆଁ ଝୁଲ । ୩ ।

ଜାତିରେ ହାଡ଼ି ହୋଇଥିଲେ ହେଲେ, କାନ୍ତିରେ ରୂପା ଗୁଣ ଚନା ଥିଲେ
ଗୀତରେ ତାଙ୍କୁ ତଳପକୁ ଡ଼ାକ, ଗ୍ରୀତରେ ଭଡ଼ ଶୁଆଳ ସେ ଜାକ
କାନ୍ତିଟି ଛଡ଼ାଇ, ଋତି ଶେଷରେ ଧଏ ଘଷ୍ଡ଼ାଇ । ୪ ।
କନ୍ଦର୍ପ ପରି ହୋଇ ରୂପବନ୍ତ ଗଣେଶ ସମାନ ହୋଇ ପଣ୍ଡିତ
ଜନ୍ମ ଲଭିଥାଉ ଦ୍ୱିଜ କୁଳରେ, ମାତଙ୍ଗକୁ ଜିଣିଥାଇ ବଳରେ
ଧନନାହିଁ ଯେବେ, ମନ ନାହିଁ ବାରଙ୍ଗନାରେ କେବେ । ୫ ।
ଇତ୍ୟାଦି ।

## କବି ଯଦୁମଣି ଓ ଖଞ୍ଜନା—

ଯଦୁମଣିଙ୍କ ସ୍ତ୍ରୀ ଖଞ୍ଜନା ଅତି ସୁନ୍ଦରୀ ଥିଲେ । ତାଙ୍କ ବିଷୟରେ ରାଜବାଟୀରେ ଆଲୋଚନା ହୁଏ । ରାଣୀ ଓ ଦାସୀମାନେ ଖଞ୍ଜନାକୁ ଦେଖିବାକୁ ଚାହୁଁଥାନ୍ତି । ଯଦୁମଣିଙ୍କୁ କହିଲେ, ଯଦୁମଣି ଏହି ପ୍ରସ୍ତାବରେ ରାଜି ହୋଇ ନଥାନ୍ତି । ଖଞ୍ଜନା ମଧ୍ୟ ଖୁବ୍ ସତର୍କ, ସେ ଘରରୁ କେବେ ବାହାରକୁ ଆସନ୍ତି ନାହିଁ । କାରଣ ସେ ଜାଣନ୍ତି ତାଙ୍କ ସ୍ୱାମୀ ଭାରି ଦୁଷ୍ଟ । ରାଜ ଅନ୍ତଃପୁର ମଧ୍ୟରେ ଯଦୁମଣିଙ୍କୁ ଅତି ସ୍ନେହରେ ପଚାରିଲେ, "କବି ତୁମ ସ୍ତ୍ରୀଙ୍କୁ ତ ଦେଖାଇଲ ନାହିଁ, ତାଙ୍କ ରୂପ ଓ ଗୁଣ ବର୍ଣ୍ଣନା କରି ଦୁଇପଦ ଗୀତ ଗାଅ ।"

ଯଦୁମଣି ଗାଇବାକୁ ଲାଗିଲେ—

"ଖଚର ଗତି ଯାଉ ନିବର୍ଣ୍ଣରେ ହେବ ବନ୍ଧିତ ତାର ମେ ନାମରେ
ଅଶୋକେ ବୈଦେହୀ ଧୃତି ସମରେ, ଉଦ୍‌ବେଗ ଥାଏ ମୋ ମନ ଧାମରେ,
ବୋଲେ କମିତି ଖଂଜନାରେ
ଶ୍ରୀପତି କଣ୍ଠରେ ଯତି ନକରକୁ
ପଡ଼ିଲେ ତା କାନ୍ତି ଅନାରେ ।

ଅର୍ଥାତ୍ ତା ନାଁ ଗତିରେ ସୁନ୍ଦର ଖଚରଂ (ଆକାଶରେ ଚର) ଗୋଟିଏ ପକ୍ଷୀର ନାମ ଯାହା ତିନୋଟି ବର୍ଣ୍ଣରେ ପ୍ରସିଦ୍ଧ ଅଛି । ଖଞ୍ଜନ

ଅର୍ଥାତ୍ ଖଞ୍ଜନା । ଯେ ଖଞ୍ଜନା କହୁଛୁ କଥର ଅଟେ । ମୋର ମନ କାମ
ଲାଳସାରେ ଯେତେ ଅଧୀର ଥାଏ, କିନ୍ତୁ ସେ ଅଶୋକ କାନନର ବନ୍ଦିନୀ
ଖ୍ରୀବଶ ସୀତାଙ୍କ ପରି ଏକାନ୍ତ ଧୈର୍ଯ୍ୟଶୀଳା ଏବଂ ଆତ୍ମସଂଯମରେ ନିପୁଣା
ବିଶେଷତଃ ରାମ୍ଚନ୍ଦ୍ରଙ୍କ ସମ୍ମୁଖରେ ତାଙ୍କର ପରମ ଭକ୍ତ ସନ୍ତମାନେ ଥାଇ ମଧ୍ୟ
ଯେବେ ତା ସୌନ୍ଦର୍ଯ୍ୟ ସେମାନଙ୍କ ଆଖିରେ ପଡ଼ିଯିବ, ସେମାନେ ନିଶ୍ଚୟ
ତାକୁ ଅନାଇ ଦେବେ । କେବେ ସମ୍ଭାଳି ରହି ପାରିବେ ନାହିଁ ।

ବହୁ ଚେଷ୍ଟା କରି ରାଣୀ ଗୁଣ୍ଡିଚ୍ଚ ଯାତ୍ରା ସମୟରେ ଖଞ୍ଜନାକୁ ସାକ୍ଷାତ
କରିଥିଲେ ଓ ରାଜ ଅନ୍ତଃପୁରକୁ ନିମନ୍ତ୍ରଣ କରି ଆଣିଥିଲେ ।

ଖଞ୍ଜନା ନିମନ୍ତେ କବିଙ୍କ କବିତା—

ପଦ୍ୟୋଧରରେ ଚାରୁ ଅଟଇ ବୟସୀ ତୁ ଏ ଧରାରେ । ୧ ।
କୋଟି ସାମନ୍ତାଣି ମଥା ମଥାମଣି ପଦ ପଛିବେ ମୋ ଶିର ଧରାରେ । ୨ ।
ଲାବଣ୍ୟ ଭୂଷିତ ତୁ ପୁରୁଷାଦ୍ରିତ ତୁ
ଲାବଣ୍ୟବଶ ତୁ ଚାରୁ ମେଘାମ୍ବରରେ । ୩ ।
ମୋ ନରକଚ୍ଛେଦ ଦେଲୁ ନର୍କ ଛେଦା
ମାଳା ମୋ ଗଳାରେ ଗୁର୍ବି ମନୋହରାରେ । ୪ ।
ନାଭି ସାର୍ଦ୍ଧାନାଭି ବସ୍ତୁ ଆମୋଦିତ
ଖେଳା ଖଞ୍ଜରୀଟ ନେତ୍ରୀ ଜବା ଧରାରେ । ୫ ।
କ୍ଷମା ମହୋଦଧି ରସାମୃତ ନିଧି
ତୋ ନିଧି ଅବଧି ବଧି ସୁଧା ଧାରାରେ । ୬ ।
ଖଞ୍ଜା ତୋ ଖଞ୍ଜନା ଖଙ୍କାଅ ଗଞ୍ଜନା
ଖଲୁ ଖଙ୍ଗା ଯଦୁମଣି ତୋ ଖଟଣି ପରାରେ । ୭ ।

କବି ଯଦୁମଣିଙ୍କର ଏହି ସମୟରେ ଗୋଟିଏ ପୁତ୍ର ସନ୍ତାନ ଜନ୍ମଲାଭ
କରିଥିଲା । ତାହାର ନାମ ରଖିଥିଲେ 'ରାମହରି' । କେହି କେହି ଶ୍ରଦ୍ଧାରେ
ତାକୁ 'କପିଧ୍ୱଜ' ବୋଲି ମଧ୍ୟ ଡ଼ାକୁଥିଲେ ।

## ବିଦ୍ୟୁଲ୍ଲତା ପାଇଁ କବିତା—

ରାଜା ବିନାୟକ ସିଂହ, ଯଦୁମଣିଙ୍କୁ ଅତି ନିଜର ପରି ମନେ କରୁଥିଲେ । ବେଳେ ବେଳେ ରାଜା ନିଜର ଅନ୍ତରର କଥା ଯଦୁମଣିଙ୍କ ଆଗରେ ପ୍ରକାଶ କରୁଥିଲେ । ଏଣୁ ଯଦୁମଣି ରାଜାଙ୍କ ଅନ୍ତରକଥା ଜାଣି ପାରୁଥିଲେ । ଦିନେ ଯଦୁମଣି ଜାଣି ପାରିଲେ ଯେ ରାଜା ନୟାଗଡ଼ର "ବିଧୁ" ନାମ୍ନୀ ଏକ ବରଜୀ କନ୍ୟାର ରୂପରେ ବିଭୋର ହୋଇଛନ୍ତି । ଏଣୁ ଚତୁର କବି ଯଦୁମଣି ରାଜାଙ୍କ ମନକଥା ଜାଣିପାରି କବିତା ରଚନା କଲେ ।

"ହେ ରସିକ, ମଉଳ ପଛକେ ଯିବ,
ମରଜ ନଥିବା ଜବା ଅଧରାକ
ଅଟଭାରେ କେ ବରଜିବ ।
ବରଜୀ କୁଳରେ ହରଜ ଅଛି କେ ବିଧୁ ସମତୁଲ ହାସ
ମରଜରୁଛି ମୁଁ ଅରଜ ଦେବାକୁ ପାଉନାହିଁ ଅବକାଶ ।
ମନ୍ଦାର ଉରଜା ମନ୍ଦ ଉଦରାର ମନ୍ଦ ମନ୍ଦ ହାସ ଗୃହିଁ,
କନ୍ଦରପ୍ରିୟା ଲୀଳାକୁ ନ ବାଛି ସୁନ୍ଦର ରହିବେ କାହିଁ ?
ଲଟା କୁରଙ୍ଗୀ ନୟନା ଶୋଭାଙ୍ଗୀର କଟାକ୍ଷ ଗୃହାଣୀ ଛଟା
ପଟା ଚୋପ ଭଙ୍ଗୀ ନେନେ ସଙ୍ଗୀ ହେଲେ, ଧୈର୍ଯ୍ୟ ଧରିବ କେ ବେଟା ?
ଯଦୁମଣି ଭଣି ଧନ୍ୟ ସେ ରମଣୀ ଅଭିମାନ ଭୁକ୍ତଦାନୀ
ଅଦୂରେ ଯାଉଛି ଗନ୍ଧ ମର୍ମେ ଧାଇଁ ବାରବାମା ହେମଗାନୀ ।

ରାଜା କବିତା ଶୁଣି ବିଶେଷ ଖୁସି ହେଲେ । ସତେ ଯେପରି ଯଦୁମଣି ତାଙ୍କର ମନର କଥା କବିତାରେ ପ୍ରକାଶ କରିଛନ୍ତି । ଯଦୁମଣି ବାସ୍ତବିକ ଦରଦୀ ବନ୍ଧୁ । ସେଦିନ ସନ୍ଧ୍ୟାରେ ରାଜା ତାମ ଯାନରେ ବସି ନଗର ଭ୍ରମଣରେ ବାହାରିଲେ, ସଙ୍ଗରେ କବି ଯଦୁମଣିଙ୍କୁ ନେଲେ । 'ବିଧୁ' କି ମନେ ମନେ ଏହା ଲୋଡ଼ୁଥିଲା, ମାତ୍ର ତାର ବାପା ଏହି ପ୍ରସ୍ତାବରେ ରାଜି ନଥିଲେ ।

ରାଜା ବୁଲି ବାହାରିବା ଜାଣି 'ବଧୂ' ବା ବଦ୍ଯୁଲତା ଦୁଆରେ ଠିଆ ହୋଇଥାଏ । ରାଜା ବଧୂକୁ ଦେଖି ଯଦୁମଣିଙ୍କୁ ପାଖକୁ ଡ଼ାକି କହିଲେ, ଯଦୁମଣି ଦେଖୁଛ ! କେମିତି ମନକୁ ପାଉଛି ।

ଯଦୁମଣି ସଙ୍ଗେ ସଙ୍ଗେ ଗାଇଲେ—

"ଦେଖିଲି ବାଳାକୁ ସେ ପ୍ରେମଶିଳାକୁ ଦଳା କଜ୍ଜ୍ୱଳ କୁନ୍ତଳାକୁ
ଲମ୍ବାଇ ଗଳାକୁ ତା' ମୋତି ମାଳକୁ, ଗୃହୁଁ ଯେ ଥିଲି ଚପଳାକୁ,
ବାଳା ଯେ, କରଭରି ଦେଇ ଶିଳାକୁ
ନାସାର ଉପରେ ନଗୃଉଥିଲି ତା ବାଜେଣି ନୂପୁର କଳାକୁ ।"

ପରେ ପରେ ଯଦୁମଣିଙ୍କ ମଧ୍ୟସ୍ଥତାରେ ବଧୂର ପିତା ରାଜି ହେବାରୁ ରାଜା ବଧୂକୁ ଗ୍ରହଣ କଲେ । ତାର ସୁନ୍ଦର ରୂପରେ ରାଣୀ ମଧ୍ୟ ବଧୂକୁ ସମାଦରରେ ଗ୍ରହଣ କରିଥିଲେ । ବଧୂ ନିଜର ଚତୁରତାରେ ରାଜାଙ୍କୁ ନିଜର କରିପାରିଥିଲା ।

## ଯଦୁମଣି ଓ ବ୍ରାହ୍ମଣ—

ଯଦୁମଣି ଚାର୍ବାକ୍ ଦର୍ଶନ ଅଧ୍ୟୟନ କରି ପରଲୋକ ଓ ବ୍ରାହ୍ମଣ୍ୟ କର୍ମକାଣ୍ଡ ପ୍ରତି ବିଶ୍ୱାସ କରୁନଥିଲେ । କାରଣ ବ୍ରାହ୍ମଣ୍ୟ କର୍ମକାଣ୍ଡ ଲୋକଙ୍କୁ ଏପରି ଭୁଲ ବାଟରେ ନେଉଥିଲା, ଯାହାକି ପ୍ରତ୍ୟେକ ସଚେତନ ବ୍ୟକ୍ତି ମନରେ ବୈପ୍ଳବିକ ଚିନ୍ତାଧାରା ଉଦ୍ରେକ ହେବା ବିଚିତ୍ର ନୁହେଁ ।

"ଭସ୍ମୀଭୂତସ୍ୟ ଦେହସ୍ୟ ପୁନରାଗମନଂ କୁତ ।"
ବାଣୀକୁ ସେ ବାରମ୍ବାର ବିଶ୍ଳେଷଣ କରୁଥିଲେ । ସେ ଭାବୁଥିଲେ—
ନ ସ୍ୱର୍ଗୋ ନାପବର୍ଗୋବା ନୈବାତ୍ମା ପାରଲୌକିକଃ,
ନୈବ ବର୍ଣ୍ଣାଶ୍ରମାଦୀନାଂ କ୍ରିୟାଶ୍ଚ ଫଳ ଦାୟିକାଃ ।

ଯଦୁମଣି ଶ୍ରାଦ୍ଧ ପଦ୍ଧତିକୁ ଘୃଣା କରୁଥିଲେ । ଚାର୍ବାକ ଦର୍ଶନର ମତକୁ ଉଦ୍ଧାର କରି ସେ ଯୁକ୍ତି କରୁଥାନ୍ତି ।

"ପଶୁଶ୍ଚେନ୍ନ ହତଃ ସ୍ୱର୍ଗଂ ଜ୍ୟୋତିଷ୍ଟୋମେ ଗମିଷ୍ୟତି,
ସ୍ୱପିତା ଯଜମାନେନ ତତ୍ର କସ୍ମାନ୍ନ ହନ୍ୟତେ ।
ଗଚ୍ଛତାମିହ ଜନ୍ତୂନାଂ ବ୍ୟର୍ଥଂ ପାଥେୟ କଳ୍ପନମ୍,
ଗେହସ୍ଥ କୃତ ଶ୍ରାଦ୍ଧେନ ପଥି ତୃପ୍ତି ରବାରିତା ।"

ପଶୁବଳି ଉପରେ ଯଦୁମଣି ଲେଖିଛନ୍ତି—
"କର୍କଶ କରି କରେ କଟାରି ଧରି କୋପେ ହାଣଇ ଗଳା କନ୍ଧରୁ କରି
ଖାଇଣ ମହାମାୟୀ ସନ୍ତୋଷ ହୋଇ, ଜନ୍ମଜନ୍ମକେ ହଣା ହୋଇବୁ ତୁହି ।"

ଅର୍ଥାତ୍ ଯଦି ଯଜ୍ଞରେ ପଶୁବଳୀ ଦ୍ୱାରା ହିଂସିତ ପଶୁ ସ୍ୱର୍ଗଗାମୀ ହୁଏ, ତେବେ ଯଜ୍ଞକର୍ତ୍ତା ନିଜ ପିତାଙ୍କୁ ବଳିଦାନ କରି କାହିଁକି ସିଧା ସଳଖ ସ୍ୱର୍ଗକୁ ପଠାଉନାହିଁ । ଘରେ ଶ୍ରାଦ୍ଧ ପ୍ରଦାନ କଲେ ଯଦି ପରଲୋକଗତ ପିତୃପୁରୁଷ ତୃପ୍ତି ଲାଭ କରନ୍ତି ତେବେ ଘରୁ ବିଦେଶକୁ ଯାଉଥିବା ଲୋକମାନଙ୍କୁ ବାଟରେ ଖାଇବା ନିମନ୍ତେ ଖାଦ୍ୟପଦାର୍ଥ କାହିଁକି ଦିଆଯାଉଛି ? ସେମାନଙ୍କ ନାମରେ ଯଦି ବ୍ରାହ୍ମଣଙ୍କୁ ଭୋଜନ ପ୍ରଦାନ କରାଯାଆନ୍ତା ତେବେ ବାଟରେ ଯାତ୍ରା କରୁଥିବା ପଥିକମାନେ ତୃପ୍ତି ହୁଅନ୍ତେ ଏବଂ ଖାଦ୍ୟପଦାର୍ଥ ବହନ କରି ନେବାରୁ ମୁକ୍ତ ହୁଅନ୍ତେ ।

ଅକସ୍ମାତ ରାଜମାତାଙ୍କର ବିୟୋଗ ଘଟିଲା । ରାଜା ବହୁ ଅର୍ଥ ବ୍ୟୟକରି ଶୁଦ୍ଧକ୍ରିୟା ସମାପନ କଲେ । ମୃତ୍ୟୁ ପୂର୍ବରୁ ରାଜମାତା ପାଚିଲା ଆମ୍ବ ଖାଇବାକୁ ମନ କରିଥିଲେ । ଅସମୟରେ ଆମ୍ବ ମିଳିଲା ନାହିଁ । ରାଜା ବିଭିନ୍ନ ସ୍ଥାନକୁ ଆମ୍ବ ପାଇଁ ଲୋକ ପଠାଇଲେ । ଆମ୍ବ ଆସିବା ପୂର୍ବରୁ ରାଜମାତାଙ୍କର ଦେହାନ୍ତ ହୋଇଗଲା । କିନ୍ତୁ ରାଜମାତାଙ୍କର ଶେଷ ଇଚ୍ଛା ପୂରଣ ହୋଇ ପାରି ନଥିଲା । ଏଣୁ ରାଜା ବ୍ରାହ୍ମଣମାନଙ୍କୁ ଡକାଇ ମାଆଙ୍କର ଏ ପ୍ରକାର ଅପୂରଣୀୟ ଆଗ୍ରହ କଥା ପ୍ରକାଶ କଲେ ।

ବ୍ରାହ୍ମଣମାନେ ବିଭିନ୍ନ ସ୍ମୃତିଶାସ୍ତ୍ର ଆଲୋଚନା କରି ପରାମର୍ଶ ଦେଲେ ଯେ ପରଲୋକଗତ ମାତୃଦେବୀଙ୍କର ଶେଷଇଚ୍ଛା ପୂରଣ ନିମନ୍ତେ ଅଷ୍ଟୋତ୍ତର

ଶଦ୍ଦେ ସ୍ୱର୍ଣ୍ଣ ନିର୍ମିତ ଆମ୍ବ ବ୍ରାହ୍ମଣମାନଙ୍କୁ ଦାନକଲେ ମାତୃଦେବୀଙ୍କର ପରଲୋକଗତ ଆତ୍ମା ତୃପ୍ତି ଲାଭ କରିବ ।

ରାଜା ତାହାହିଁ କଲେ । ଯଦୁମଣି କିନ୍ତୁ କିଛି କହିପାରୁ ନଥାନ୍ତି । ତାଙ୍କ ଗୃହୀତ ମତାବଲମ୍ବୀ ମନ ବିଦ୍ରୋହ କରି ଉଠୁଥାଏ । ଯେଉଁ ଲୋକ ଧାତୁ ନିର୍ମିତ ଠାକୁର ଓ ପ୍ରତିମାକୁ ବ୍ୟଙ୍ଗକରି କହିପାରେ ଗୀତରେ—

"କେଉଁଠାରେ ଝଉଁଗଡ଼ୁ କେଉଁଠାରେ ମୁଦ
କେଉଁଠାରେ ବୋଲାଉଛ କରୁଣା ବାରିଧି ।"

ପୁଣି—"ଶିବା ଘଟଇ ଜଗା କାଠ, ଆଉ ଦେବତା ମାଠ ମାଠ ।"

ଯଦୁମଣି ରାଜାଙ୍କର ବ୍ରାହ୍ମଣମାନଙ୍କ କହିବା ପ୍ରକାରେ କାର୍ଯ୍ୟ ଦେଖି ନୀରବ ରହିଲେ । ସେ ଜାଣିଥିଲେ ବ୍ରାହ୍ମଣମାନେ ଶୂଦ୍ର ଯଦୁମଣିର ପ୍ରତିଭାକୁ ସହ୍ୟ କରିପାରୁ ନାହାନ୍ତି । ଏଣୁ ପଦେ କଥା ସେ କହିଲେ ପରିସ୍ଥିତି ଭଲ ହେବନାହିଁ । କେବଳ କବି ଯଦୁମଣି ସୁଯୋଗକୁ ଅପେକ୍ଷା କରିବା ହିଁ ବୁଦ୍ଧିମାନର କର୍ତ୍ତବ୍ୟ ବୋଲି ଭାବି ନୀରବଦ୍ରଷ୍ଟା ଭାବେ ସବୁ ଦେଖୁଥାନ୍ତି ।

ଯଦୁମଣିଙ୍କର ମାତୃଶ୍ରାଦ୍ଧ ବୈଶାଖ ମାସରେ ପଡ଼ିଲା । ଯଦୁମଣି ବହୁ ଅର୍ଥ ବ୍ୟୟକରି ଆଡ଼ମ୍ବରରେ ଶ୍ରାଦ୍ଧ ପାଳନ କଲେ । ଖଞ୍ଜନା ଏସବୁ କଥା କିଛି ବୁଝିପାରୁ ନଥାନ୍ତି । ଯେଉଁ ଲୋକ ଶ୍ରାଦ୍ଧ ନାଁ ଧରିଲେ ଯାଚିଡ଼ିଆଁ ମାରେ ସେ କାହିଁକି ମାତୃଶ୍ରାଦ୍ଧ ମହା ଆଡ଼ମ୍ବରରେ ପାଳନ କରିବା ନିମନ୍ତେ ବ୍ୟଗ୍ର ।

ଶ୍ରାଦ୍ଧ କଥା କହିଲେ ଧନ ନାହିଁ କହି ଏଡ଼ାଇ ଦଅନ୍ତି । ସେ ପୁଣି ରାଜାଙ୍କୁ ଜଣାଇ ଶ୍ରାଦ୍ଧ ନିମନ୍ତେ ଅର୍ଥ ବ୍ୟବସ୍ଥା କରିଛନ୍ତି । ଯଦୁମଣି ମଧ୍ୟ ବ୍ୟବସ୍ଥା କରିବା ନିମନ୍ତେ ରାଜାଙ୍କ ନିକଟକୁ କବିତାରେ ଲେଖି ପଠାଇଲେ—

ଆ-ଶ୍ରାଦ୍ଧ, ଆଶ୍ରାଦ୍ଧ ବୋଲି ବୋଲୁନାହିଁ ଶରୀର ବାର ଦିନ ଆସିବ
ଆଶ୍ରାଧ ଆଶ୍ରାଧ ବୋଲି ସେ କୋଲୁଛି ସେ ତାପ ଅପଣ ନାଶିବ ।"

ରାଜା କବିତା ପାଠକର ଟଙ୍କା ପଇସା ବ୍ୟବସ୍ଥା କରିଦେ'ଲେ । ଯେଉଁ ଏକଶହ ଆଠ ବ୍ରାହ୍ମଣ ରାଜମାତାଙ୍କ ଶ୍ରାଦ୍ଧରେ ସ୍ୱର୍ଣ୍ଣ ଆମ୍ବ ଗ୍ରହଣ କରି ପରଲୋକଗତ ଆତ୍ମାର ସଦ୍‌ଗତି ବ୍ୟବସ୍ଥା କରିଥିଲେ, ସେମାନଙ୍କୁ ଯଦୁମଣି ନିମନ୍ତ୍ରଣ କରି ଆଣି ମାତୃ ଶ୍ରାଦ୍ଧକାର୍ଯ୍ୟ ଶେଷରେ ଉତ୍ତମ ଭୋଜନ ପ୍ରଦାନ କଲେ । ଦକ୍ଷିଣା ଦେବା ପୂର୍ବରୁ ବ୍ରାହ୍ମଣମାନଙ୍କ ଗୋଡ଼ତଳେ ଲମ୍ବହୋଇ ପଡ଼ିଗଲେ । ବ୍ରାହ୍ମଣମାନେ ଯଦୁମଣିଙ୍କୁ ତଳୁ ଉଠାଇ କାରଣ ଜାଣିବାକୁ ଚାହିଁଲେ ।

ଯଦୁମଣି କହିଲେ—ହେ ମହାତ୍ମବୃନ୍ଦଗଣ ! ଆପଣ ଯେଉଁ ବ୍ୟବସ୍ଥା ରାଜମାତା ଶ୍ରାଦ୍ଧକ୍ରିୟାରେ ପ୍ରଦାନ କରିବା ହୋଇଛନ୍ତି, ସେହି ବ୍ୟବସ୍ଥାକୁ ଏ ଗରିବ ପ୍ରତି ପ୍ରଦାନ କରିବେ କି ନାହିଁ ?

ଜଣେ ପଣ୍ଡିତ କହିଲେ—ଏ କି ବିଚିତ୍ର କଥା ! ଆମେ ହେଲୁ ପୁରୋହିତ । ସର୍ବତ୍ର ସମାନ ଆମ ସନାତନ ଧର୍ମର ବ୍ୟବସ୍ଥା । ପ୍ରକାଶ କର ତୁମର ଅଭିପ୍ରାୟ କ'ଣ ?

ଯଦୁମଣି ହାତଯୋଡ଼ି କହିଲେ – ପଣ୍ଡିତଗଣ ! ଆପଣମାନେ ଜାଣନ୍ତି ମୁଁ କି ପ୍ରକାର ଦୁଃଖୀ । ପ୍ରତ୍ୟହ ଶିଳ୍ପକର୍ମ ନ କଲେ କିମ୍ବା ରାଜଦ୍ୱାରକୁ ନ ଗଲେ ମୋର ପରିବାର ଚଳାଇବା କଷ୍ଟସାଧ୍ୟ । ମା' ମୋର ବାତରୋଗରେ ଆକ୍ରାନ୍ତ ହୋଇ ବହୁକଷ୍ଟ ପାଇଲା, ମୁଁ ରାଜଦ୍ୱାରରୁ ଫେରି ଦେଖେ, ମା ବହୁ କଷ୍ଟ ଅନୁଭବ କରିଛି । ମୋତେ ଦେଖି କହିଲା ବ ପରେ ତୁ ଯଦି ତଉକାଠିରେ ମୋର ବାତ ହେବା ସ୍ଥାନକୁ ଚଉ ଦେଇ ଦଅନ୍ତୁ ତାହାହେଲେ ମୁଁ ଟିକଏ ଆରୋଗ୍ୟ ଲାଭ କରନ୍ତି । ମାତ୍ର ତଉକାଠି ଖୋଜି ଚଉ ଦେବା ପୂର୍ବରୁ ମା'ର ଦେହାନ୍ତ ହୋଇଗଲା । ଏଣୁ ପରଲୋକଗତ ଆତ୍ମାର ସଦ୍‌ଗତି ନିମନ୍ତେ ମୁଁ ଗୋଟିଏ ସ୍ୱର୍ଣ୍ଣ ନିର୍ମିତ ତଉକାଠିର ବ୍ୟବସ୍ଥା କରିଛି । ଏଣୁ ଆପଣମାନଙ୍କ ଗୋଡ଼ରେ ସାମାନ୍ୟ ଚଉ ସ୍ପର୍ଶ କରାଇଦେବି ତାପରେ ଆପଣମାନେ ଆପଣମାନଙ୍କ ଦକ୍ଷିଣା ଗ୍ରହଣକରି ଫେରିଯିବେ ।

ସମସ୍ତ ବ୍ରାହ୍ମଣ ମାରିବ । କେହି ପ୍ରତିବାଦ କରିବାର ଉପାୟ ନଥିଲା । ତାହାହିଁ କରାଗଲା, ସମସ୍ତଙ୍କ ଗୋଡ଼ରେ ଚଡ଼୍ ଦିଆଗଲା । ଚଣ୍ଡିନା ଏକଥା ପରେ ଶୁଣି ବହୁତ ଦୁଃଖକଲେ । ଯଦୁମଣିଙ୍କ ପାଦତଳେ ପଡ଼ି କହିଲେ, "ତୁମେ କ'ଣ କଲ, ଯେଉଁ ବ୍ରାହ୍ମଣମାନଙ୍କ ଅଭିଶାପରେ ଯଦୁବଂଶ ଧ୍ୱଂସ ପାଇଥିଲା ସେମାନଙ୍କ ଉପରେ ତୁମେ ଏପରି ଅବ୍ୟବସ୍ଥା କାହିଁକି କଲ ?" ରାଜା ବିନାୟକ ସିଂହ ମାନଧାତା ମଧ୍ୟ ଏ ସମ୍ବାଦ ପାଇ ବିଶେଷ ଉପ୍ରୁଖ୍ୟିତ ହୋଇଥିଲେ ।

ଏ ଘଟଣାର ଅଳ୍ପଦିନ ମଧ୍ୟରେ ହଠାତ୍ ବିନା ମେଘରେ ବଜ୍ରପାତ ହେଲା । ଯଦୁମଣିଙ୍କ ଏକମାତ୍ର ପୁତ୍ର ରାମହରି ସେଥିରେ ଜଳିଗଲା ।

ଶୁଣାଯାଏ ବ୍ରାହ୍ମଣମାନେ କୁସୁମୀ ନଦୀ ତଟରେ ବସି ଗାୟତ୍ରୀ ଜପ ପୂର୍ବକ ନିଜର ଦୁଃଖ ଅଶ୍ରୁପୂର୍ଣ୍ଣ ଲୋଚନରେ ଜ୍ଞାପନ କରିଥିଲେ ।

## ଯଦୁମଣିଙ୍କ ଦ୍ୱିତୀୟ ପୁରୀଯାତ୍ରା—

ଯଦୁମଣିଙ୍କ ପୁତ୍ର ବିୟୋଗ ଫଳରେ ଗଭୀର ଦୁଃଖ ହେଲା । ସେ ରାଜାଙ୍କ ଅନୁଗ୍ରହରୁ ସସ୍ତ୍ରୀକ ନୀଳାଚଳ ଯାତ୍ରାକରି ନୟାଗଡ଼ ପଣ୍ଡାଙ୍କ ଗୃହରେ ବାସକଲେ ।

ସେତେବେଳକୁ ଗଜପତି ମୁକୁନ୍ଦ ଦେବ ନୀଳାଚଳରେ ଅତି ଦାରିଦ୍ର୍ୟ ଅବସ୍ଥାରେ ରହୁଥିବାର ମାଦଳା ପାଞ୍ଜିରୁ ଜଣାଯାଏ ।

ଯଦୁମଣି ପୁରୀ ଗଜପତିଙ୍କୁ ସାକ୍ଷାତ ନକରି ସର୍ବପ୍ରଥମେ ନୀଳାଦ୍ରୀ ବିହାରୀ ଶ୍ରୀଜଗନ୍ନାଥଙ୍କ ଶରଣାପନ୍ନ ହେଲେ । ପୁତ୍ର ଶୋକରେ କବି ଦୁଃଖରେ ମ୍ରିୟମାଣ ହୋଇ ପଡ଼ିଥିଲେ । ଶ୍ରୀ ଜଗନ୍ନାଥ ଦର୍ଶନରେ ପୁତ୍ରଶୋକ କିଞ୍ଚିତ ମାତ୍ରରେ ଦୂର ହେବା ପାଇଁ କବି ଦମ୍ପତି ଶ୍ରୀକ୍ଷେତ୍ର ଯାଇଥାନ୍ତି । ସେମାନେ ଗରୁଡ଼ସ୍ତମ୍ଭ ନିକଟରେ ଦଣ୍ଡାୟମାନ ହୋଇ ନିଜର ଅନ୍ତରର ଦୁଃଖ ଜଣାଉଥାନ୍ତି । ଠିକ୍ ଏତିକିବେଳେ କବିସୂର୍ଯ୍ୟ ବଳଦେବ

ରଥ ଶ୍ରୀମନ୍ଦିରରେ ଉପସ୍ଥିତ । ସେ ଘର୍ଘବନ ପୁଷ୍ପରେ ଅବସ୍ଥାନ କଲାପରେ ମଧ୍ୟ ଉଚିତ ରାଜ ସମ୍ମାନ ଲାଭ କରିପାରି ନଥିଲେ । ସେ ମଧ୍ୟ ଦୁଃଖରେ ମ୍ରିୟମାଣ ହୋଇ ନିଜ ରଚିତ "ବାଧିଲି ଜାଣି କ୍ଷମା" ବ୍ୟାଜ ସ୍ତୁତିଟି ଗାନ କରୁଥାନ୍ତି—

ବାଧିଲି ଜାଣି କ୍ଷମା କର ନୋହିଲେ ରମା
ରମଣ ଦଣ୍ଡେ ଦିଅ ଟାଳି
ତୁମ୍ଭଙ୍କୁ ଜଗନ୍ନାଥ ଆଜ ମୋ ମନୋରଥ
ଭରତି କରି ଦେବ ଗାଳି ହେ, କୃପାନିଧି
କରୁଣା ସିନ୍ଧୁ ବୋଲିକରି, କହନ୍ତି ବୁଧେ ଉଚ୍ଚରି
କାଳ ସର୍ପ ଆପଣ କବଳ କର ପ୍ରାଣ
ପତିତ ମାନଙ୍କୁ ସବୁରି ହେ, କୃପାନିଧି ।

କବି ଯଦୁମଣି କିଛି ଦୂରରେ ଠିଆହୋଇ ଦୁଇବାହୁ ଉତ୍ତୋଳନ କରି ଅତି କରୁଣ ସ୍ୱରରେ ଭଜନ ଗାଉଥାନ୍ତି—

ନୀଳାଚଳ କଳାକର ! ଏତ କି ଏ ମିଛ
ଦେଲି ଯାହା ନେଲି ତାହା ଏଥିକୁ କମ୍ପାଇଁ ମହା-
ଦାତାପଣେ ପତାକା ବାନ୍ଧିଛ ?
ଓଜଶୀଳ ଭୋଜ ରାଜ ଘାବନ ହରଣେ ତେଜ
ଅର୍ପଣ କଲି କୃପଣ ନୋହି
ଗଙ୍ଗାର ଜଳେ କୁମ୍ଭୀର ଗଜ ଗ୍ରହଣେ କୁମ୍ଭୀର
ଜୀବ ରକ୍ଷାକଲି କଷ୍ଟ ବହି । ୧ ।
ବଳି ବଳିଷ୍ଟ ବଳୀକ ଅକଳିତ ବିଭୂତିକ
ଦଳିତ କରରେ କରିଥିଲି
ନ ମାନି କରି ରମାକୁ ଅକିଞ୍ଚନ ସୁଦାମକୁ
ବିପୁଳ ସମ୍ପଦେ ମଣ୍ଡିଦେଲି । ୨ ।
ଗୋକୁଳ କଳ-ଧଉତ ଗଉଡ଼ଙ୍କ ମହତ୍ତ୍ୱ
ନେଇଥିବା ପ୍ରକାଶରୁ କରି

ଦ୍ରୁପଦ ନୃପ ନନ୍ଦନା  ମହତ୍ତ୍ୱ ହର ବେଦନା
ବିନାଶନେ ହେଉ ଧନ୍ୱନ୍ତରି । ୩ ।
ପାତକୀ-ମୁକୁଟ ଶ୍ରେଣୀ  ଶିରୋମଣି ଯଦୁମଣି·
ମନ ତଳେ ନେଇ ନ ପାରିବ
ଏହା ଉଦ୍ଧାରଣେ ଯେବେ  ଚିତ୍ତ ଦେଇ ପାର ଲବେ
ତେବେ ସିନା ଦାତା ବୋଲାଇବ । ୪ ।

କବି ବଳଦେବ ଭଜନଟିର କିଛି ଅଂଶ ଶୁଣିଲା ପରେ ପ୍ରବୁଦ୍ଧ ହୋଇଗଲେ । ଏ ତ ସାଧାରଣ ଭଜନ ନୁହେଁ । ନିଶ୍ଚୟ କୌଣସି ଆଘାତପ୍ରାପ୍ତ ଗଭୀର ହୃଦୟର ଦୁଃଖୋଚ୍ଛ୍ୱାସ । ଶେଷରେ ଶୁଣିଲେ ଭଣିତା ପଦଟି—"ପାତକୀ ମୁକୁଟ ଶ୍ରେଣୀ, ଶିରୋମଣି ଯଦୁମଣି" ଏଇ ତେବେ ଯଦୁମଣି ?

ଯଦୁମଣିଙ୍କ ସୁନାମ ସେତେବେଳକୁ ସାରା ଓଡ଼ିଶାରେ ବ୍ୟାପିଯାଇଥାଏ । ତାଙ୍କର ନିର୍ଭୀକ ସମାଲୋଚନା ହାସ୍ୟରସ ଫୁଲର ବାସ୍ନା ପରି ପବନରେ ଚହଟିକରି ଦୁନିଆଁ ସାରା ଛୁଇଁ ଯାଉଥାଏ । କଠିନ ଶବ୍ଦାଡ଼ମ୍ବର ପାଣ୍ଡିତ୍ୟ କାବ୍ୟ କବିତା ସିନା ସମସ୍ତଙ୍କ ନିକଟକୁ ଯିବାକୁ ସମୟ ସାପେକ୍ଷ ହେଲେ କବି ଯଦୁମଣି ସମସ୍ତଙ୍କ ମନକୁ ସୁହାଇଲା ପରି ପଦେ ଦୁଇପଦ ଉଚ୍ଚାଟମାଳି ଗୀତ, ତା' ପଛକୁ ରୋଚକ କାହାଣୀ ଲୋକମାନଙ୍କ ମନକୁ ବେଶ୍ ଛୁଇଁ ଯାଉଥାଏ । କଥା କଥାରେ ଲୋକେ ଯଦୁମଣିଙ୍କ ଗୃଳକ ଚତୁର କଥାକୁ ଉଦାହରଣ ଦେଉଥାନ୍ତି । ଭୁଣ୍ଡି ବାଇଦ ସହସ୍ର କୋଶ ପରି କାହିଁ କେଉଁ ଦୂର ଦୂରାନ୍ତରେ, ସହରେ ଓ ପଲ୍ଲୀରେ ଯଦୁମଣିଙ୍କର ଖ୍ୟାତିଥାଏ ।

ଯଦୁମଣି ମଧ୍ୟ କବି ବଳଦେବଙ୍କ ଭଜନ ଶେଷ ପଦକ ଶୁଣି ସାରିଲା ପରେ ଆଉ କି ଧୈର୍ଯ୍ୟ ଧରି ରହିପାରନ୍ତି । ସଙ୍ଗେ ସଙ୍ଗେ ପରସ୍ପର ଭାବର ଆଦାନ ପ୍ରଦାନ ପରେ ଦୁହେଁ ଦୁହିଁଙ୍କୁ ଆଲିଙ୍ଗନ କଲେ । କବି ବଳଦେବ ଯଦୁମଣିଙ୍କ ପୁତ୍ର ବିପତ୍ତିରେ ଅତୀବ ଦୁଃଖ ପ୍ରକାଶ କରିଥିଲେ ।

## ଗଜପତି ମୁକୁନ୍ଦଦେବଙ୍କ ସହିତ ଯଦୁମଣିଙ୍କର ସାକ୍ଷାତ—

୧୮୧୭ ବିପ୍ଳବରେ ସମସ୍ତ ଓଡ଼ିଶାବାସୀ ଇଂରେଜ ବିରୁଦ୍ଧରେ ସଚେତନ । ଗଜପତି ମୁକୁନ୍ଦଦେବ ଅତି ଅସ୍ଥିରତା ମଧ୍ୟରେ ସମୟ କଟାଉଥାନ୍ତି । ଏପରି ସମୟରେ ବକ୍‌ସି ଜଗବନ୍ଧୁ, ଜୟୀ ରାଜଗୁରୁ ଗ୍ରାମେ ଗ୍ରାମେ ବୁଲି ବିପ୍ଳବର ମନ୍ତ୍ର ଜନସାଧାରଣଙ୍କ ନିକଟରେ ପ୍ରଚାର କରୁଥାନ୍ତି । ଯଦୁମଣି ମଧ୍ୟ ନୟାଗଡ଼ ରାଜା ଓ ପ୍ରଜାଙ୍କ ମତାମତ ବକ୍‌ସି ଜଗବନ୍ଧୁଙ୍କୁ ଘନ ଅନ୍ଧକାର ରାତିରେ ଗୁଳିଆ ପାହାଡ଼ ମଧ୍ୟରେ ଲୁଚି ଲୁଚି ଯାଇ ଦେଇଥିଲେ । ସେ ସମୟରୁ ଗଜପତି ମୁକୁନ୍ଦଦେବ ଯଦୁମଣିଙ୍କର ସ୍ୱଦେଶ ପ୍ରେମ ବିଷୟରେ ଜ୍ଞାତଥାନ୍ତି । ଯଦୁମଣି ଯେ ଜଣେ କବି ନୁହନ୍ତି, ଦେଶପ୍ରେମୀ ବୀର ଏକଥା ସେ ସ୍ୱୀକାର କରୁଥାନ୍ତି । ମନ୍ଦିରର ସିଂହଦ୍ୱାର ନିକଟରେ ଗଜପତି ମୁକୁନ୍ଦଦେବଙ୍କ ସହିତ ଯଦୁମଣିଙ୍କ ସାକ୍ଷାତ ହୋଇଗଲା ।

ଓଡ଼ିଆ ଜାତି ଓ ଧର୍ମର ମଉଡ଼ମଣି ଗଜପତି ଇଂରେଜ କମ୍ପାନୀ ଦ୍ୱାରା ନିର୍ଯ୍ୟାତିତ ହୋଇ ହୀନପ୍ରଭ ଓ ନିସ୍ପ୍ରମାଣ ହୋଇଥିବା କଥା ଯଦୁମଣି ଲକ୍ଷ୍ୟକରି କାନ୍ଦିପକାଇଲେ ।

ଗଜପତି ଯଦୁମଣିଙ୍କୁ ପଚାରିଲେ, ମହାପାତ୍ରେ କ'ଣ ଇଚ୍ଛା ? ସେତେବେଳକୁ ଗଜପତି ଓ ଯଦୁମଣିଙ୍କୁ ଦେଖିବାକୁ ଲୋକ ରୁଣ୍ଡ ହେଲେଣି । ସେହି ଜନ ସମୁଦ୍ର ମଧ୍ୟରେ ଯଦୁମଣି ଗାଇଲେ—

> ଧନୁପାସ ହେଲା ହନୁ ନ ଚଳିଲା କହିବାକୁ ବଡ଼ ଲାଜ,
> ମୁଁ ଆଁ କରଅଛି ମୁଆଁ ଖାଇବାକୁ ଦେବା ହେଉ ମହାରାଜ ।

ହାସ୍ୟ ରସିକ କବି ଗଜପତିଙ୍କୁ ଧନୁ ମୁଆଁ ମାଗିବା କଥା ଜନତା ଜାଣିଲେ । ଏଣୁ ଲୋକେ ହସି ଉଠିଲେ । ମାତ୍ର ଗଜପତି ବୁଝିନେଲେ ଯଦୁମଣି କ'ଣ କହିବାକୁ ଚାହୁଁଛନ୍ତି । ଯଦୁମଣି କହିବାର ଅର୍ଥହେଲା— ମୋତେ କହିବାକୁ ଲାଜ ଲାଗୁଛି । ହେ ଗଜପତି ମହାରାଜ ! ଆପଣଙ୍କ ବୀରତ୍ୱ ସମାନ ଧନୁର ଓଜନ ଆଜି ମଶାଏ ଓଜନର ଊଣାହେଲା ।

ଆପଣ ସତରେ ଦୁର୍ବଳ ହୋଇଗଲେଣି । ସେଥିପାଇଁ ବୀରଭୂମି ଉତ୍କଳର ଯୁଦ୍ଧାସ୍ତ୍ର ଏକାବେଳକେ ଅଚଳ ହୋଇଗଲାଣି । ଇଂରେଜମାନେ ରାଜ୍ୟ ବିସ୍ତାର କରିବାରେ ଲାଗିଛନ୍ତି । ଉତ୍କଳକୁ ମଧ୍ୟ ଅଧିକାର କରିବା ପାଇଁ ସବୁ ପ୍ରକାର ବ୍ୟବସ୍ଥା କରିଦେଲେଣି, ଆପଣ ଏହାର ପ୍ରତିକାର ପାଇଁ ସଜାଗ ହୁଅନ୍ତୁ ।

## ଦେବଦାସୀ ତିଳୋତ୍ତମା ଓ ଯଦୁମଣି—

ସେତେବେଳେ ତିଳୋତ୍ତମା ନାମରେ ଜଣେ ସୁପଣ୍ଡିତା ଦେବଦାସୀ ଶ୍ରୀମନ୍ଦିରର ନୀତି କରୁଥାନ୍ତି । ସେ ଯେପରି ସୁନ୍ଦରୀ ସେପରି ସୁ ବିଦୁଷୀ । ବଡ଼ବଡ଼ ପଣ୍ଡିତ ଓ କବିମାନଙ୍କୁ ସେ ଶାସ୍ତ୍ରାର୍ଥରେ ପରାସ୍ତ କରିଥାନ୍ତି । ଯଦୁମଣି ତିଳୋତ୍ତମାଙ୍କ ପରିଚୟ ପାଇ କବିତାଟିଏ ଲେଖି ପଠାଇଲେ—

"ଗନ୍ଧ ଧର ନଟଶୀ ନନ୍ଦ ଧୂପ ଲହରୀ
ଟେକି ଚନ୍ଦନ ହାସେ ସ୍ତନ ଶମ୍ଭୁଙ୍କୁ କରାଉଛୁ ସ୍ନାନ
ମୋ ଆନନ୍ଦ କାମରେ
ବସ୍ତ୍ରର ମରମରେ, ମୋ ମାଳୀ ନୋହିଲୁକ ଧେନରେ-
ରସବଲ୍ଲୀ, ଛଇଲ ରତନ ଚୁମ୍ବୁଁ
ବସ୍ତ୍ରର କଳା ଏ ଇଚ୍ଛା ମୁଁ
ହାଜର ହେଲେ ତୋର ସଗରଦାଣ୍ଡୀ ଗୃହର
ପାଳ କରିବ ମୋତେ ଗୁମ୍ଫୁଁରେ ।"

ଯଦୁମଣି ଭାବିଥିଲେ ତିଳୋତ୍ତମା ସାଧାରଣ ଦେବଦାସୀ ତାଙ୍କ କବିତା ବୁଝି ପାରିବେ ନାହିଁ । ମାତ୍ର ଲେଖାଟିପଢ଼ି ଦେବଦାସୀ ତିଳୋତ୍ତମା କହିଲେ—ମନ୍ଦ ଯେ ଗୃହର ସେ ନମସ୍କାର ନକଲେ ଅଧିକ କ'ଣ ହେଲା ?

ଯଦୁମଣି ଯାହା ହସ୍ତରେ ଲେଖାଟି ପଠାଇଥିଲେ ସେ ଆସି ଏକଥା ଜଣାଇଲେ । ପୁଣି ଯଦୁମଣି ଶେଷ ଦୁଇପଦକୁ ବଦଳାଇ ଲେଖି ପଠାଇଲେ— ହାଜର ହେଲେ ନେତ୍ରରାଜ ରାଜତ ଗାତ୍ର
ପାଳ କରିବ ମୋତେ ଚୁମ୍ବୁଁରେ ।

ଏ ପଦକ ନିବନ୍ଧାରେ ତିଳୋତ୍ତମା ବିଶେଷ ତୃପ୍ତି ଲାଭକରି ଯଦୁମଣିଙ୍କୁ ତାଙ୍କ ଗୃହକୁ ନିମନ୍ତ୍ରି ଆଣିଲେ । ଦେବଦାସୀଙ୍କ ସହିତ ଯଦୁମଣିଙ୍କର ବନ୍ଧୁ ସମସ୍ତ ପର୍ଯ୍ୟନ୍ତ ଶାସ୍ତ୍ରାର୍ଥ ହେଲା । ଦେବଦାସୀଙ୍କ ଅନୁରୋଧ ଯୋଗୁଁ ଶ୍ରୀମନ୍ଦିରରେ ଗାନ ପାଇଁ ଯଦୁମଣି ସୁଲଳିତ ଭଜନ ଲେଖି ଦେଇଥିଲେ ।

## ଚନ୍ଦନ ହଜୁରୀ ଓ ଯଦୁମଣି—

ଯଦୁମଣିଙ୍କ ପୁଣ୍ୟ ରହଣିକାଳ ମଧ୍ୟରେ ଚନ୍ଦନହଜୁରୀଙ୍କ ସହିତ ଘନିଷ୍ଠତା ଆସିଥିଲା । କବି ଯଦୁମଣି ଚନ୍ଦନହଜୁରୀଙ୍କ ନାମରେ ଏକ ଜଗନ୍ନାଥ ଜଣାଣ ଭଣିତ କରି ଉପହାର ଦେଇଥିବା କଥା ଲୋକ ମୁଖରୁ ଶୁଣିବାକୁ ମିଳେ ।

ଚକା ନୟନକୁ ପଞ୍ଚତ ରେଖି
ଡ଼କାଇ ଖର ନିଶ୍ୱାସ ପକାଇ
ଢ଼କା ପକାଇ ଗରୁଡ଼ ପଛରେ
ବିକାଶ ! ମୋ ଆର୍ତ୍ତି ଶୁଣ ସତ୍ୱରେ ହେ,
ଡ଼ଙ୍କା ବାଜୁଛି ମହିମା ହେ
ଠକାର କରି କର୍ଣ୍ଣେ ଗିର ନ ଶୁଣ
କାହିଁକି ବିରସ କର୍ମା ହେ । ୧ ।

କଷ୍ଟ ହରଣୀ ଦ୍ରୌପଦୀ ବିପତ୍ତି
ହରି ହରିଛ ପରା ଡ଼େଶ ଶ୍ରୁତି
ଦରିଦ୍ର ସୁଦାମାଙ୍କୁ କୋଟି ନିଧି
ପରିପୂର୍ଣ୍ଣେ ଦେଲ କୃପା ବାରିଧି ହେ,
ଧରି ଯା ମହିମା ଚିତ୍ତେ ହେ,
ସହିତ ଯାଉଛି ହରି ! ଆଉଥରେ
ନ ଗୃହିଁଲ କୃପା ନେତ୍ରେ ହେ । ୨ ।

ଆଜାନୁ ବାହୁ ! ମୁଁ ପତିତ ଜଣେ
ଅଜାମିଳଠୁ ବଳି ସହସ୍ର ଗୁଣେ
ଲଜ୍ଜା ହରି ନ ତାରିଲ ନିକର
ଧ୍ୱଜା ଚକରୁ ବହନ ଉତାର ହେ,
ମନ୍ଦାରେ ମୁଁ ଏହା ଭାବେ ହେ !
ବଜାଇ ଜୟ ଆର୍ତ୍ତତ୍ରାଣ ଡିଣ୍ଡିମ
ହଜାଇ ଦେଉଛି ଏବେ ହେ । ୩ ।
ପିତା ମାତା ସେବା ମୋର ଭଭଙ୍ଗ
ଲିତାକୁ ଲିତା ମୋ ଅସତ ସଙ୍ଗ
ସୀତାରେ ଅବଗାହି ନାହିଁ ଦିନେ
ଗୀତା ଭାଗବତ ନ ଶୁଣେ କର୍ଣ୍ଣେ ହେ
ପୀତାମ୍ବର ଚରଣ ଚିନ୍ତ ହେ !
କି ତାପ ଚିହ୍ନ ଗୁପତୁଁ ଶରଇବ
ମୋ ଅନ୍ତକାଳେ ସେମିତି ହେ । ୪ ।
ବଟପୁଟ ବାସୀ ଆରତ ତ୍ରାଣ
ଘଟ ଘଟକେ ରହି ସବୁ ଜାଣ
ଖଟନ୍ତି ଯେଉଁ ଚରଣେ କମଳା
ହଟକରି ମୋ ଦୁର୍ଦ୍ଦଶା ନଗଲ ହେ,
ନଟବର ବେଶଧାରୀ ହେ !
ଝଟତିରେ ପ୍ରଭୁ ! ଶ୍ରୁତି ଡେରି ଶୁଣ
ଏ ଦୀନଜନ ଗୁହାରି ହେ । ୫ ।
ପାଣ୍ଡବ ପ୍ରିୟ ! ଦଣ୍ଡୁଛ କି ଦୋଷେ
ଦାଣ୍ଡକୁ ଏକଥା କେମନ୍ତେ ଦିଶେ
ଶୁଣ୍ଡରେ ମଇଷ ଛଳେ ଆପଣ
କାଣ୍ଡକରେ ନେଲ ବାଳର ପ୍ରାଣ ହେ
ତାଣ୍ଡବ ନୃତ୍ୟକାରୀଙ୍କି ହେ !
ଖଣ୍ଡି କରିଦେଲ ବିଷ୍ଣୁ କୁଟ ମାୟା
ଲଗାଇ ଦେଲ ଢେଙ୍କି କି ହେ । ୬ ।

ଆଜି ତ କେହି ନାହିଁ ମୋର ପ୍ରଭୁ
ଆରତତ୍ରାଣ ପରତ୍ରାଣ ସବୁ
ସାରଥି ହୋଇ ପାର୍ଥ ରଥେ ଶ୍ୟାମ
ଭାରତ ଯୁଦ୍ଧେ ଭରତିଆ ଢ଼ମ ହେ !
ସାର ଘଣ୍ଟେ ଦୋଡ଼ାଇଣ ହେ !
ମାର ପିଅରଣ ପଗଣ ରଖିଣ
ରୁହାଇଛୁ ବଡ଼ ପଣ ହେ । ୭ ।

ପକ୍ଷପ୍ରାଣ-ଜଳ-ରକ୍ଷଣ ବୋଲି
ଲକ୍ଷ୍ମଣ ଅଗ୍ରଜଙ୍କୁ ଆଶ୍ରେ କଲି
ପକ୍ଷ ଦାୟକ ହେ ଲକ୍ଷଣ ସୁଖ !
ଦକ୍ଷ ପଣେ ରଖିବାରେ ମାଇକ୍ଷ ହେ
ଲକ୍ଷ୍ୟ କେ ତୁମର ଅଛି ହେ !
ବକ୍ଷ ବିଦାରିଛ ନଖେ ହିରଣ୍ୟର
ପ୍ରହ୍ଲାଦ ମାନ ଇଛି ହେ । ୮ ।

ଧଣ୍ଡାମାଳ ବୁହା ! ଦୁର୍ଦ୍ଦଶା ରାହୁ
ଚଣ୍ଡାଳ ଗ୍ରାସୁଅଛି ଗୃହୁଁ ଚୃ ?
ଭଣ୍ଡାରେ ଖଣ୍ଡା ନାହିଁକ ମହିମା
ଚଣ୍ଡାକର ଧ୍ୱଂସୁନାହିଁ ମହିମା ହେ !
ଅଣ୍ଡା କରି କୃପା ଜଳ ବୃଷ୍ଟି କର
ମୋ ଚିତ୍ତ-ଚାତକ ପାଟି ହେ । ୯ ।

ମନ୍ଦର ଧର ନୀଳଗିରିବାସୀ
କନ୍ଦରବାସୀ ପ୍ରାୟେ ଅଛ ବସି
ପନ୍ଦର ନେତ୍ର ଧାତା ପୁରନ୍ଦର
ବନ୍ଦନ କରନ୍ତି ଯେଉଁ ପୟର ହେ
ଛନ୍ଦ ଛାଡ଼ ଦେବରାଜେ ହେ,
ନନ୍ଦ ନନ୍ଦନ ଶ୍ରୀଚରଣାର ବନ୍ଦେ
ଚନ୍ଦନ ହନୁସ ଭଜେ ହେ । ୧୦ ।

## କୁଞ୍ଜବିହାରୀ ଭ୍ରମରବର ରାୟ ଓ ଯଦୁମଣି—

ଯଦୁମଣି ବହୁବାର ଖଣ୍ଡପଡ଼ା ରାଜଦରବାରକୁ ଯାଇ ସାହିତ୍ୟାଲୋଚନା ଓ ହାସ୍ୟରସ ପରିବେଷଣ କରୁଥିଲେ । ଯୁବକ ରାଜା କୁଞ୍ଜବିହାରୀ ଭ୍ରମରବର ରାୟ ରାଜସିଂହାସନରେ ବସିବା ପରେ ଯଦୁମଣି ଆଉ ଖଣ୍ଡପଡ଼ା ଯାଇ ସାହିତ୍ୟ ଚର୍ଚ୍ଚା କରିବାର ସୁଯୋଗ ହରାଇଲେ ।

କବି ବୃଦ୍ଧ ବୟସରେ ଆର୍ଥିକ ଅନାଟନର ସମ୍ମୁଖୀନ ହୋଇ କିଛି ସାହାଯ୍ୟ ଆଶାରେ ଖଣ୍ଡପଡ଼ାସ୍ଥ କଣ୍ଟିଲୋଠାରେ ପ୍ରତିଷ୍ଠିତ ନୀଳମାଧବ ଠାକୁରଙ୍କ ଦର୍ଶନ ନିମନ୍ତେ ଖଣ୍ଡପଡ଼ା ଯାତ୍ରାକଲେ । ନୂତନ ରାଜା କବି ଯଦୁମଣିଙ୍କୁ ନିଜ ଦରବାରରେ ପାଇ ବିଶେଷ ଖୁସି ହେଲେ । ଚତୁର କବି ଯଦୁମଣି ରାଜାଙ୍କ ବ୍ୟବହୃତ ସଂକଠଉର ଚୂଳକୁ ଲକ୍ଷ୍ୟକରି କବିତାଟିଏ ଗାନ କଲେ—

"ନୀଳମାଧବ-ନିଳୟ-ଧାରୀ ଧରା କ୍ଷତ୍ରିୟ କୁଳ କମଳାଙ୍କ
କୁଞ୍ଜବିହାରୀ କୁଞ୍ଜରର ଶ୍ରୀମଦ୍ଧର୍ମରାଜ ଭ୍ରମରବର ରାଜାଙ୍କ
ପଦାବ୍‌ଜ, ଧାମରମ୍ୟରମା ସ୍ମାରକ
ତାଟଙ୍କ ଶଙ୍କା ଅଙ୍କୁରିଏ ପାଦୁକା ଦନ୍ତୀ ଦନ୍ତ ଚୂଳ ଯୋଡ଼କ ।
ଭୂଷଣ ପ୍ରଶସ୍ତି ଦନ୍ତୀଦନ୍ତେ ନାସ୍ତି ଗ୍ରସ୍ତି ବା ଅଙ୍କ ଅବଙ୍କ
କନକ କୁଳଶ ମାଳ ଗଜଦନ୍ତ ପ୍ରବାଳ ପଞ୍ଚରତ୍ନ ସଙ୍କା
ପଦାବ୍‌ଜ, ଧାମରମ୍ୟରମା ସ୍ମାରକ
ତାଟଙ୍କ ଶଂଙ୍କା ଅଙ୍କୁରିଏ ପାଦୁକା ଦନ୍ତୀଦନ୍ତ ଚୂଳ ଯୋଡ଼କ ।

ଅର୍ଥାତ୍ ନୀଳମାଧବ ମନ୍ଦିର ଧାରଣ କରିଥିବା ଧରାର କ୍ଷତ୍ରିୟ କୁଳର କମଳ ପ୍ରାୟ, ଅଳଙ୍କାର ସ୍ୱରୂପ କୁଞ୍ଜବିହାରୀ ଯେ କି ଉନ୍ନତ ମହାବଳ ବଣ୍ୟ ଦନ୍ତାହସ୍ତୀର ବିନାଶକ ଅଟନ୍ତି । ସେହି ମର୍ଦ୍ଦରାଜ ଭ୍ରମରବର ପଦବୀଧାରୀ ରାଜାଙ୍କ ପାଦପଦ୍ମର ଧାମ ଅର୍ଥାତ୍ ସ୍ଥାନ ଏ ପାଦୁକାର ଦନ୍ତୀ ଅର୍ଥାତ୍ ହାତୀଦାନ୍ତ ନିର୍ମିତ ଚୂଳ ଯୋଡ଼କ ରମ୍ୟ ଲକ୍ଷ୍ମୀଙ୍କ ରମଣୀୟ ହସ୍ତର ତାଟଙ୍କ ଅର୍ଥାତ୍ କେଉଁ ଭୂଷଣର ଶଙ୍କା ଜାତ କରୁଛି । ରାଜା ବିଷ୍ଣୁ ସ୍ୱରୂପ କଳ୍ପିତ ହେଉଥିବା ଯୋଗୁଁ ଲକ୍ଷ୍ମୀ ତାଙ୍କ ପାଦପଦ୍ମରେ ନତ ରହିଥାନ୍ତି ।

ରାଜା ଏପରି ପ୍ରଶଂସାମୂଳକ କବିତା ଶୁଣି ବିଶେଷ ଆନନ୍ଦିତ ହୋଇ କବିଙ୍କୁ ପ୍ରଚୁର ଅର୍ଥ ପ୍ରଦାନ କରି ପ୍ରତ୍ୟୋଜନୀୟ ଅଭାବ ଦୂର କରାଇ ଦେଇଥିଲେ । ଏହାପରେ କବି ବିଭିନ୍ନ ରାଜ୍ୟ ରାଜ ଦରବାରରେ ନିଜର ହାସ୍ୟରସାତ୍ମକ ସାହିତ୍ୟ ରଚନା କରି ଜୀବିକା ନିର୍ବାହ କରୁଥିଲେ ।

## କବିଙ୍କ ଶେଷ ଜୀବନ—

ଯଦୁମଣିଙ୍କ ଏକମାତ୍ର ପୁତ୍ର ରାମଚନ୍ଦ୍ରର ଅକାଳ ମୃତ୍ୟୁ ଯୋଗୁଁ କବି ଦାରୁଣ ଦୁଃଖରେ କାଳାତିପାତ କରିଥିଲେ । ତାଙ୍କର ଅନ୍ୟ ପୁଅ ଜନ୍ମ ହୋଇ ନଥିଲା । ଗୋଟିଏ କନ୍ୟା ଜାତ ହୋଇଥିଲା, ତାହାର ନାମ ରମା ବୋଲି ରଖିଥିଲେ । ଯଦୁମଣି କନ୍ୟା ରମାଙ୍କୁ ଝଣ୍ଡପଡ଼ା ଗଡ଼ର ନରସିଂହ ମୁଣୀନ୍ଦ୍ର ନାମକ ଏକ ଯୁବକସହିତ ବିବାହ ଦେଇଥିଲେ । ଯଦୁମଣି ଶେଷରେ ଝିଅ ଓ ଜୁଆଇଁଙ୍କୁ ନିଜ ଘରକୁ ଡାକି ଆଣିଥିଲେ କାରଣ ନରସିଂହଙ୍କର ପିତାମାତା କେହି ନଥିଲେ ତେଣୁ ଯଦୁମଣିଙ୍କ କଥାନୁସାରେ ସେ ଇଟାମାଟିରେ ଆସି ରହିଥିଲେ । ରମାଙ୍କ ଗର୍ଭରୁ ଗୋଟିଏ ପୁଅ ଜନ୍ମ ହୋଇଥିଲା । ଯଦୁମଣି ସେହି ପୁଅର ନାମ ତାଳଧ୍ୱଜ ରଖିଥିଲେ । ଶେଷରେ ଯଦୁମଣି ତାଳଧ୍ୱଜକୁ ପୋଷ୍ୟ ପୁତ୍ର ରୂପେ ଗ୍ରହଣ କରିଥିଲେ । ରମାଙ୍କ ଗର୍ଭରୁ ଗୋଟିଏ କନ୍ୟା ଜନ୍ମ ହୋଇଥିଲା । ତାରନାମ ଇନ୍ଦୁମତୀ । ଯଦୁମଣି ନାତୁଣୀ ଇନ୍ଦୁମତୀଙ୍କୁ ବ୍ରଜବଲ୍ଲଭ ସହିତ ବିବାହ କରାଇ ଦେଇଥିଲେ । ଯଦୁମଣି, ଖଞ୍ଜନା, କନ୍ୟା ରମା, ନାତି ନାତୁଣୀ ଜୁଆଇଁଙ୍କୁ ଘରେ ରଖି ସବୁ ଦୁଃଖ ଭୁଲି ଯାଇଥିଲେ ।

କିଛିଦିନ ପରେ ଯଦୁମଣି ଖବର ପାଇଲେ ଯେ ନୟାଗଡ଼ ରାଣୀ କୁମୁଦିନୀଙ୍କ ଦେହାନ୍ତ ହୋଇଗଲା । ଏ ଖବର ପାଇବା ମାତ୍ରେ ଯଦୁମଣି ଦୁଃଖରେ ଭାଙ୍ଗି ପଡ଼ିଥିଲେ । କାରଣ ରାଣୀ ସମସ୍ତ ଅଦମପୁରରେ ଯଦୁମଣିଙ୍କ ପୃଷ୍ଠପୋଷକ ରୂପେ ସମସ୍ତ ପ୍ରକାର ସାହାଯ୍ୟ କରୁଥିଲେ । ରାଣୀଙ୍କ ମୃତ୍ୟୁ ଖବର ପାଇ ସେ ଯେତେ ଦୁଃଖିତ ହୋଇଥିଲେ ପୁତ୍ର ମୃତ୍ୟୁରେ ମଧ୍ୟ ସେପରି ହୋଇ ନଥିଲେ କହିଲେ ଚଳେ । ଯଦୁମଣି ହୃଦୟରେ ଏକମାତ୍ର ଚିନ୍ତା

ରାଣୀ କ୍ୟାଣ୍ଟ ସେ ଏକଲବେ କପରି । କିଏ ତାଙ୍କୁ ସକଳ ପ୍ରକାର ସାହାଯ୍ୟ କରିବ । ତଥାପି ଯଦୁମଣି ରାଜବାଟୀକୁ ଯାଇ ରାଜା ବିନାୟକ ସିଂହଙ୍କୁ ସାନ୍ତ୍ୱନା ଦେଉନ୍ତି ଓ ସହାନୁଭୂତି ପ୍ରକାଶ କରନ୍ତି । ତଥାପି ରାଜା ରାଣୀଙ୍କୁ ଝୁରି ଝୁରି ଅଳ୍ପଦିନ ମଧ୍ୟରେ ସେ ମଧ୍ୟ ସଂସାର ତ୍ୟାଗକଲେ । ଯଦୁମଣି ବର୍ତ୍ତମାନ ନିଃସହାୟ ଏହି ବୃଦ୍ଧ ବୟସରେ ସେ କିପରି ପରିବାର ଚଳାଇବେ ଏହି ଚିନ୍ତା ସବୁବେଳେ ତାଙ୍କ ମନରେ ଦେଖାଦେଲା ।

ରାଜାଙ୍କ ମୃତ୍ୟୁ ପରେ ଯୁବରାଜ ବ୍ରଜବଲ୍ଲଭ ସିଂହାସନ ଆରୋହଣ କଲେ । ସେ ଆଠଗଡ଼ ରାଜକୁମାରୀ 'କଳାବତୀ'ଙ୍କୁ ବିବାହ କରିଥିଲେ । ଆଠଗଡ଼ର ଯୁବରାଜ ରାମଚନ୍ଦ୍ର ଓ ଯୁବରାଜ ବ୍ରଜବଲ୍ଲଭ ଦୁହେଁ ଏକତ୍ର ହୋଇ ସୁରାପାନ ଓ ବେଶ୍ୟାସକ୍ତ ରହିଲେ । ଯେତେବେଳେ ଯଦୁମଣି ଯେତେ ପ୍ରକାର ସୁ-ଉପଦେଶ ଦେଲେ ମଧ୍ୟ ତାହାକୁ କେହି ଗ୍ରହଣ କଲେ ନାହିଁ । ରାଜଦରବାରରେ କ୍ରମେ ବିଜ୍ଞ, ଜ୍ଞାନୀ ଓ ପଣ୍ଡିତମାନଙ୍କର ସ୍ଥାନ ଶୂନ୍ୟ ହୋଇଗଲା, ଏହାର ବଦଳରେ ଖଳ ଚରିତ୍ରବାନ ବ୍ୟକ୍ତି ତଥା ଚାଟୁକାରମାନଙ୍କର ସ୍ଥାନ ବଢ଼ିଲା । ଖଳଲୋକଙ୍କ ପ୍ରରୋଚନାରେ ପଡ଼ି ଯୁବରାଜ ବ୍ରଜବଲ୍ଲଭ ଯଦୁମଣିଙ୍କର ଜାଗିର ଜମି ସବୁ ଉଚ୍ଛେଦ କରି ନୂତନ ଚାଟୁକାରମାନଙ୍କୁ ଯୋଗାଇ ଦେଲେ । ବ୍ରଜବଲ୍ଲଭ ବୟସରେ ନିଜର ପୁତ୍ରତୁଲ୍ୟ ହୋଇଥିବା ଯୋଗୁଁ ଯଦୁମଣି ରାଜଦରବାରରେ ହାସ୍ୟ ପରିବେଷଣ କରିବାକୁ ଉଚିତ ମନେ କରିନଥିଲେ । ପରିବାର ଭରଣ ପୋଷଣ ନିମନ୍ତେ ଅର୍ଥ ଉପାର୍ଜ୍ଜନ କରିବା ନିମନ୍ତେ ଶେଷରେ ନୟାଗଡ଼ ତ୍ୟାଗ କରିଥିଲେ । ସେ ରଣପୁର, ଦଶପଲ୍ଲା, ଢେଙ୍କାନାଳ, ତିଗିରିଆ, ଆଠଗଡ଼, ଖଲିକୋଟ, ମହୁରି ବଡ଼ମ୍ବା, ନରସିଂହପୁର, ଅନୁଗୁଳ ପ୍ରଭୃତି ରାଜ୍ୟକୁ ଯାଇ ସାହିତ୍ୟ ଚର୍ଚ୍ଚା କରି ଅର୍ଥ ଉପାର୍ଜ୍ଜନ କରିବାକୁ ବାଧ୍ୟ ହୋଇଥିଲେ ।

ବ୍ରଜବଲ୍ଲଭ ଅପୁତ୍ରିକ ହୋଇ ଶୀଘ୍ର ମୃତ୍ୟୁବରଣ କରିଥିଲେ । ଫଳରେ ତାଙ୍କର ସାନଭାଇଙ୍କର ପୁତ୍ର ଲଡ଼ୁକେଶ୍ୱର ପୋଷ୍ୟପୁତ୍ର ରୂପେ ନୟାଗଡ଼ ରାଜସିଂହାସନ ଆରୋହଣ କରିଥିଲେ । ଲଡ଼ୁକେଶ୍ୱର ନାବାଳକ ଥିବାରୁ ଇଂରେଜ ସରକାରଙ୍କର ଲୋଲୁପ ଦୃଷ୍ଟି ନୟାଗଡ଼ ଉପରେ ପଡ଼ିଥିଲା ।

କିଛିଦିନ ପରେ ଖଞ୍ଜନାଙ୍କର ୭୫ ବର୍ଷ ବୟସରେ ମୃତ୍ୟୁ ହୋଇଥିଲା । ଯଦୁମଣି ଖଞ୍ଜନାଙ୍କ ବିୟୋଗରେ ଗଭୀର ଦୁଃଖରେ ଭାଙ୍ଗି ପଡିଲେ । କାରଣ ଖଞ୍ଜନା ଥିଲେ ଯଦୁମଣିଙ୍କ ସହଧର୍ମିଣୀ ଓ ସହକର୍ମିଣୀ । ବିପଦ, ଆପଦ, ସୁଖ ଓ ଦୁଃଖରେ ସେ ସ୍ୱାମୀଙ୍କୁ ଉଚିତ ପରାମର୍ଶ ଦେଉଥିଲେ ।

ଶେଷ ସମୟ ଯଦୁମଣି ଅସହାୟ ଭାବେ ବିଭିନ୍ନ ରାଜା ମହାରାଜାଙ୍କ ନିକଟକୁ ସାହାଯ୍ୟ ପାଇଁ ଦୌଡ଼ି ଦୌଡ଼ି କ୍ଳାନ୍ତ ହୋଇ ଯାଇଥିଲେ । ଏଣେ ଖଞ୍ଜନାଙ୍କ ବିୟୋଗ ଯଦୁମଣିଙ୍କୁ ସଂସାର ପ୍ରତି ବିତୃଷ୍ଣା ଆଣିଥିଲା । ସବୁଦିନ ଶ୍ରୀଗୁଣ୍ଡିଚା ଯାତ୍ରା ଲାଗିଥାଏ । ନୟାଗଡ଼ରେ ମହାସମାରୋହରେ ରଥଯାତ୍ରା ପାଳନ ହେଉଥାଏ । କବି ଯଦୁମଣି ଶଯ୍ୟାଶାୟୀ ହୋଇ ତାଙ୍କର ପ୍ରିୟ କବିତାଟି ପାଠ କରୁଥାନ୍ତି—

"ପ୍ରାଣ ମିତଣୀରେ ଦେଖିଲେ ରହୁଛି ଲାଖି
ଭାଲୁଣୀ ପରାଏ କାଳିଆ ମୁହଁକୁ, ଗୃଲୁଣୀ ପରାଏ ଆଖି ।"
ପଣ୍ଡା ରନ୍ଧା ଭାତ ଚଣ୍ଡାଳ ସେ ଯେବେ ନୟନେ ଚାଅଇ ଦେଖି
ଭଣ୍ଡାରୀ ବୁହନ୍ତି ତାଙ୍କଠାରୁ ନେଇ ବ୍ରାହ୍ମଣ ଖାଅନ୍ତି ଚାଖି ।
ଜଗତଯାକ ଭଜୁଥାନ୍ତି ତାହାଙ୍କୁ, କେଉଁ ଗୁଣ ତାର ଦେଖି
ପୁରତେ ନରତେ ବସିଛି ଯାହାର, ବିଗୁଣ ଶାଗୁଣା ପକ୍ଷୀ ।
ଧଳା କଳା ବେନି ଭାଇ ଯେ ମଧ୍ୟରେ ଜଗିଛନ୍ତି ବେନି ପାଖି
ଜଗତ ଯାକର ମନ ମୋହୁଅଛି ବନ ହଳଦିଆ ମୁଖୀ ।
ଯଦୁମଣି ଭଣେ ଏ ଜଗତ ଧନ-ଜନଙ୍କୁ ପାରଇ ଦେଖି
ନାମ ଧରିଥିବୁ ପରେ ଯେବେ ଯମ କରଣ ନ ପାରେ ଲେଖି ।

ସେତେବେଳକୁ ଠାକୁର ରଥ ଉପରେ ବିଜେ ହୋଇଥାନ୍ତି । ଯଦୁମଣି କ୍ଷୀଣ ସ୍ୱରରେ ପୁଅ ତାଳଧ୍ୱଜକୁ ପଚାରିଲେ ବାପା, ଠାକୁର କେଉଁଠି ?

ପୁଅ କହିଲେ—ଠାକୁର ରଥକୁ ବିଜେ ହେଲେଣି ବୋଲି ଲୋକେ କହୁଛନ୍ତି ।

ଯଦୁମଣି "ଧେଉ" କହି ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ । ସେଦିନ ୧୮୬୬ ମସିହା ଆଷାଢ଼ ଶୁକ୍ଳପକ୍ଷ ଦ୍ୱିତୀୟା ତିଥି ଶ୍ରୀ ଗୁଣ୍ଡିଚା । ଓଡ଼ିଶା ସାହିତ୍ୟ ଆକାଶରୁ ଏକ ଚିର ହାସ୍ୟମୟ ଉଜ୍ଜ୍ୱଳ ଜ୍ୟୋତିଷ୍କ ସବୁଦିନ ପାଇଁ ଲିଭେଇ ଗଲା ।

କବିଙ୍କ ମୃତ୍ୟୁ ସମ୍ବାଦ ପାଇ ନୟାଗଡ଼ରୁ ଶହଶହ ଲୋକ ଇଟାମାଟିକୁ ଆସି ଶେଷ ଦର୍ଶନ କରିଥିଲେ । ଶୋକାକୁଳ ଜନତା କବିଙ୍କ ଅନ୍ତ୍ୟେଷ୍ଟି କ୍ରିୟା ସମାପନ କରିଥିଲେ । ଏହି ଅନ୍ତ୍ୟେଷ୍ଟି କ୍ରିୟା ନିମନ୍ତେ ରାଜା ମଧ୍ୟ ସକଳ ପ୍ରକାର ସାହାଯ୍ୟ ଯୋଗାଇ ଦେଇଥିଲେ ।



# କବି ଯଦୁମଣିଙ୍କ ଜଣାଣ

## ଏକ

ନୀଳାଚଳ କଳାକର ! ଯତ କି ଏ ମିଛ
ନେଲ ଯାହା ଦେଲ ତାହା ଏଥକୁ କମ୍ପାଇଁ ମହା-
ଦାତାପଣେ ପତାକା ବାନ୍ଧିଛ ? (ଘୋଷା)

ଊର୍ଜଶୀଳ ଭୋଜ ଗଜ- ଯାବନ ହରଣେ ତେଜ
ଅର୍ପଣ କଲ କୃପଣ ନୋହି,
ଗଜ୍ଜର ଜଳେ କୁମ୍ଭୀର ଗଜ ଗ୍ରହଣେ କୁମ୍ଭୀର
ଜୀବରକ୍ଷା କଲ କଷାବନ୍ତି । ୧ ।

ବଳି ବଳିଷ୍ଠ ବଳୀକି ଅକଳଙ୍କ ସ୍ୱଭୂତିକି
ଦଳିତ କରରେ କଶିଥିଲ,
ନ ମାନି କରି ରମାକୁ ଅକିଞ୍ଚନ ସୁଦାମାକୁ
ବିପୁଳ ସମ୍ପଦେ ମଣ୍ଡି ଦେଲ । ୨ ।

ଗୋକୁଳ-କୁଳ ଧଉତ ଗଉରାଙ୍ଗିଙ୍କ ମହତ୍ତ୍ୱ
ନେଇଥିବା ସକାଶରୁ କରି,
ଦ୍ରୁପଦ ନୃପ ନନ୍ଦନା ମହତ୍ତ୍ୱ ହରି ବେଦନା
ବିନାଶନେ ହେଲ ଧନ୍ୱନ୍ତରି । ୩ ।

ଭାର୍ଗବ-ନୟନେ ଦର୍ଭ ଯୋଗେ ହରି ଶୋଭା ଗର୍ବ
ଯାଚି ଦେଲ ବଢ଼ାଇ ସ୍ନେହକୁ
ଦ୍ୱାରବତୀ ପୁରେ ଅନ୍ଧ- ସୁତ ସଙ୍ଗେ କରି ଦ୍ୱନ୍ଦ୍ୱ
ଛଡ଼ାଇଲ ନେତ୍ର ସନ୍ତାପକୁ । ୪ ।

ପାତକୀ-ମୁକୁଟ ଶ୍ରେଣୀ ଶିରୋମଣି ଯଦୁମଣି
ମନ ତଳେ ନେଇ ନ ପାରିବ,
ଏହା ଉଚ୍ଚାରଣେ ଯେବେ ଚିତ୍ତ ଦେଇ ପାର ଲବେ
ତେବେ ସିନା ଦାତା ବୋଲାଇବ । ୫ ।

(କଳାକର-ଚନ୍ଦ୍ରମା, ଊର୍ଜଶୀଳ-ବଳବନ୍ତ, ଭୋଜ-କଂସ, କଳଧଉତ-ସୁବର୍ଣ୍ଣବର୍ଣ୍ଣ, ଗୌରାଙ୍ଗି-ଗୋପୀମାନେ ।

# ଦୁଇ

ନଳା ନୟନକୁ ପଣ୍ଡିତ କେହ୍ନ ତକାଇ ଖର ନିଃଶ୍ୱାସ ପକାଇ
ଡଙ୍କା ପକାଇ ଗରୁଡ ପଲ୍ଲରେ, ବଙ୍କାରି ! ମୋ ଆର୍ତ୍ତି ଶୁଣ ସତ୍ୱରେ ହେ,
ଢକ୍କା ବାଜୁଛି ମହିମା ହେ !
ଠକାର କରି କର୍ଣ୍ଣେ ଗିର ନ ଶୁଣ, କାହିଁକି ବଚନ କର୍ମା ହେ । ୧ ।

କଷ୍ଟ ହରଣୀ ଦ୍ରୌପଦୀ ବଚନ, ହରି ! ହରିଛ ପରି ତେଜରି ଗ୍ରୁଣ୍ଡି
ଦରିଦ୍ର ସୁଦାମକୁ କୋଟି ନିଧି ଘରି ପୂର୍ଣ୍ଣ ଦେଲ କୃପା ବାରିଧି ହେ,
ଧରିଯା ମହିମା ଚିତ୍ତେ ହେ !
ସରିତ ଯାଉଛି ରହି ! ଆଉ ଥରେ, ନଗ୍ରହିଲ କୃପା କେବେ ହେ । ୨ ।

ଆଜାନୁ ବାହୁ ! ମୁଁ ପଣ୍ଡିତ ଜଣେ, ଅଜାମିଳ୍କୁ ବଳ ସହସ୍ର ଗୁଣେ
ଲଜ୍ଜା ହରି ନ ତାରିଲେ ନିକର, ଧ୍ୱଜା ଚକରୁ ବହନ ଉପର ହେ,
ମଜ୍ଜାରେ ମୁଁ ଏହା ଭାବେ ହେ !
ବଜାଇ ଜୟ ଆର୍ତ୍ତତ୍ରାଣ ଡିଣ୍ଡିମ, ହଜାଇ ଦେଉଛ ଏବେ ହେ । ୩ ।

ପିତାମାତା ସେବା ମୋର ବିଭଙ୍ଗ, ଲିତାକୁ ଲିତା ମୋ ଅସତ ସଙ୍ଗ
ସୀତାରେ ଅବଗାହି ନାହିଁ ହରେ, ଗୀତା ଭାଗବତ ନ ଶୁଣେ କର୍ଣ୍ଣେ ହେ,
ପୀତାମ୍ବର ଚିତ୍ତେ ଚିନ୍ତ ହେ !
କ ତାପ ଚିସ ଗୁପତୁଁ ଚରିଇବ, ମୋ ଅନ୍ତକାଳେ ଯେମିତି ହେ । ୪ ।

ବଟ ପୂଠ ବାସୀ ଆରତ ତ୍ରାଣ ! ଘଟ ଘଟକେ ରହି ସବୁ ଜାଣ
ଖଟନ୍ତି ଯେଉଁ ଚରଣେ କମଳା, ହଟକରି ମୋ ଦୁର୍ଦ୍ଦଶା ନ ଗଲ ହେ,
ନଟବର ବେଶଧାରୀ ହେ !
ଝଟତିରେ ପ୍ରଭୁ ! ଗ୍ରୁଣ୍ଡି ତେଜରି ଶୁଣ, ଏ ଦୀନଜନ ଗୁହାରୀ ହେ । ୫ ।

ପାଣ୍ଡବ ପ୍ରିୟ ! ଦଣ୍ଡୁଛ କି ଦୋଷେ, ଦାଣ୍ଡକୁ ଏକଥା କେମନ୍ତେ ହସେ
ଗୃଣ୍ଡରେ ମହିଷ ଛଳେ ଆପଣ, କାଣ୍ଡକରେ ନେଲ ବାଳର ପ୍ରାଣ ହେ !
ତାଣ୍ଡବ ନୃତ୍ୟକାରୀଙ୍କି ହେ !
ଭଣ୍ଡି କରିଦେଲ ବିଷ୍ଣୁ କୂଟ ମାୟା, ଲଗାଇ ଦେଲ ହେଳିକା ହେ । ୬ ।

ଆଜ ତ କେହି ନାହିଁ ମୋର ପ୍ରଭୁ, ଆରତତ୍ରାଣ ପରିତ୍ରାଣ ସବୁ
ସାରଥି ହୋଇ ପାର୍ଥ ରଥେ ଶ୍ୟାମ, ଭାରତ ଯୁଦ୍ଧେ ଭରିଥିଆ ଉତ୍ତମ ହେ !
ସାର ଘଣ୍ଟେ ଘୋଡ଼ାଇଣ ହେ !
ମାର ପିଅର ତା ପରାଣ ରଖିଣ, ଚୁହାଇଛ ବଡ଼ ପଣ ହେ । ୭ ।

ପକ୍ଷହୀନ-ଜନ-ରକ୍ଷଣ ବୋଲି, ଲକ୍ଷ୍ମଣ-ଅଗ୍ରଜଙ୍କୁ ଆଦରି କଲି
ପକ୍ଷ ଦାୟକ ହେ ଲକ୍ଷ୍ମଣ-ସୁଖ ! ଦକ୍ଷ ପଣେ ରଖିବାରେ ମାଇକ୍ଷ ହେ !
ଲକ୍ଷ୍ୟ କେ ତୁମ୍ଭର ଅଛି ହେ !
ବକ୍ଷ ବିଦାରିଛ ନଖେ ହିରଣ୍ୟରେ, ପ୍ରହ୍ଲାଦ ମାନ ରକ୍ଷି ହେ । ୮ ।

ଧଣ୍ଡାମାଳ ଚୂଡ଼ା ! ଦୁର୍ଦ୍ଦଶା ବଡ଼ୁ, ଚଣ୍ଡାଳ ଗ୍ରାସୁଅଛି ଗୃହୁଁ ଗୃହୁଁ
ଭଣ୍ଡାରେ ଖଣ୍ଡା ନାହିଁକି ମହିମା, ଚଣ୍ଡୀକର ହିଶୁନାହିଁ ମହିମା ହେ,
ହଣ୍ଡା ମୋ ଯାଉଛି ଫାଟି ହେ !
ଅଣ୍ଡାକର କୃପା ଜଳ ବୃଷ୍ଟି କର, ମୋ ଚିତ୍ତ ଗୃତକ ପାଟି ହେ । ୯ ।

ମନ୍ଦର ଧର ନୀଳଗିରି ବାସୀ ! କନ୍ଦର ବାସୀ ପ୍ରାୟେ ଅଛ ବସି
ଇନ୍ଦର ନେଇ ଧାତା ପୁରନ୍ଦର, ବନ୍ଦନ କରନ୍ତି ଯେଉଁ ପୟର ହେ,
ଛନ୍ଦ ଗୁଡ଼ ଦେବ ରାଜେ ହେ !
ନନ୍ଦ ନନ୍ଦନ ଶ୍ରୀ ଚରଣାର ବନ୍ଦେ ଚନ୍ଦନ ହଜୁରି ଭଜେ ହେ । ୧୦ ।

## ତିନି

( ରାଗ-ପୂରବୀ ! ତାଳ-ଆଠତାଳୀ )

ଅବିରତେ ହରି ଭଜରେ ମାନସ ଅବିରତେ ହରି ଭଜ,
ଦାବବ ରବିଜ ଛବିଜ ପଙ୍କଜ ଅବଳମ୍ବେ ତୁମ୍ଭ ହେଳ ରେ (ଘୋଷା)
ନବୀନ ଜଳଦ ଛବି ନଟବର ପବିତ୍ର ପଦ ସରୋଜ,
ଅବିର ହୋଇବୁ ସ୍ରବିବାର ହେଉଁ ମଧୁପାନେ ଭୃଙ୍ଗସାଜ ରେ । ୧ ।
ଗବୀଶ ଧ୍ୱଜ ଅବ୍ଜ ଜ ଅହିରିଜ ଆଦି ଅପର ସମାଜ,
ସବିନସ୍ତ ଭରେ ଜବିଜ୍ଞ ଗୁଣରେ, ଭବ ହୋନ୍ତି ଯାଙ୍କୁ ଭୋଜ ରେ । ୨ ।
ଗର୍ବୀ ଗର୍ବ ଗଞ୍ଜା ଛବିତା ନାମ ଯା, ପର୍ବଧର ଦେବରାଜ,
ଦୁର୍ବଗଲ୍ ତାର ଗର୍ବ ଅହଙ୍କାର, ଶରଣାର୍ଥୀ ପଦକଞ୍ଜ ରେ । ୩ ।

ସବ ଆହାର ସହ୍ୟତେ ଦେବା ଦେବ, ଦାନବାଦଙ୍କ ଯେ ପୂଜା,
କହ ଯଦୁମଣି ନ ବସ୍ତୁରୁ ସେହ୍ନ, ନନ୍ଦାତ୍ମଜ ନାମ ବ୍ରଜ ରେ । ୪ ।

(ରବଜ-ଯମ, ଛବଜ ପଦ୍ମଜ—ତେଜରୁ ଜାତ ଗବ, ଥବର-ବୃଦ୍ଧ, ଟଙ୍କାଶ-ଶମ୍ଭୁ, ଗବାଶ ଧ୍ୱଜ-ମହାଦେବ ଶିବ, ଅବ୍ଜ-ବ୍ରହ୍ମା, ଅହିରାଜ—ଅନନ୍ତ, ପବିଧର-ବଜ୍ରଧର, ଛବଶ ନାମ ଯା-ଇନ୍ଦ୍ରଙ୍କର ଛବଶ ଗୋଟି ନାମ, ଓବ ଆହାଶ-ଅଗ୍ନି ଦେବତା, ନାମବ୍ରଜ-ନାମ ସମୂହ)

## ଗୃହ

ଚକା ନୟନକୁ ତକାରେ (ଗୃହାଁରେ) ମାନସ, ଚକା ନୟନକୁ ତକା
ନାଳୀକ-ବନ୍ଧୁଙ୍କ ନାଳ ନେଝ ତେଜ, ନସର ପାରିନ୍ତ ପଂକା (ଘୋଷା)

ଯାହା ବଜେ ଭୁଜେ ପଡ଼ ଗୃହ ଭୁଜେ ବହରେ ବଲେମ କକା,
ଦର୍ଶନ ମାତ୍ରକେ ସେ ଅଘ ଲଙ୍ଘନ କଲେ ମଘବାରି ବକା । ୧ ।

ପଶୁ ତୁର୍ଯ୍ୟକେ ଦୁଷ୍ଟପଣ ସଜିକେ ମୃଷ୍ଟ ଯେଉଁ ଶଣ୍ଢାବକା,
ଯୁଗଳ ବଧାତ ସର୍ଜି ଦର୍ଜି ଦେଲେ, ଅର୍ଜିତ ବୃଜିନ ଦକା । ୨ ।
ବାଜା ବଜା ପାପୀ ରଜା ଅଜାମିଳ, ପୁତ୍ରକୁ ଡାକବା ଡ଼କା,
ଗତିଷ୍ଟ ନଷ୍ଟ ଦୁରନ୍ତ ପାପିଷ୍ଠକୁ ଭୃତ୍ୟେ ମାଇଲେ ଧକ୍କା । ୩ ।
ନନ୍ଦା ସ୍ତୁତି ଭକ୍ତି ଯେନ ମୁକ୍ତିଦେବା, ଶକ୍ତି ମନ୍ତ୍ରେ ଜଣେ ପକ୍କା,
ଚେଦ ରାଜପୁତ୍ର, ନଧାଜ ପବନ ପ ସବୁ ଯେ କଲେ ଏକା । ୪ ।
ମହା ମହିମା-ବନ୍ତ ବୋଲି ଯା ନାମେ, ବ୍ରହ୍ମାଣ୍ଡେ ବାଜଇ ଡଙ୍କା,
ମାନ ହାନି କରି ସେ ମାନ ଟେ ବନ୍ଧ କୃପକୁ କଲେ ବୋକା । ୫ ।
ଯଦୁମଣି ଭଣେ କଲିକର୍ମୀ ଗୁଣେ, ରଖିବେ ନାହିଁ କଡ଼କା,
ନୀଳାଚଳ ଚୂଳେ ନୀଳଚକ୍ର ଚଳେ ପାପୀ ପାବନ ପଂଡ଼କା ।୬ ।

(ତକା-ଗୃହାଁ, ନାଳୀକ-ପଦ୍ମ, ବନ୍ଧୁଜ-ପଦ୍ମର ବନ୍ଧୁ ସୂର୍ଯ୍ୟଙ୍କ ପୁତ୍ର ଯମ, ବଜେ ଭୁଜେ-ବଜପୁ କରିଥିବା କ୍ଷେତ୍ର ମଧ୍ୟରେ, କକା-କାକ, ତୁର୍ଯ୍ୟକେ-ମାନବେତର ଜୀବ ମଧ୍ୟରେ, ମୃଷ୍ଟ ମର୍ଦ୍ଦିତ, ଚେଦ ରାଜପୁତ୍ର-ଶିଶୁପାଳ, ନଧାଜ-ଭସ୍ମ, କଡ଼କା-ସନ୍ତାପ, ପଂଡ଼କା-ପତାକା)

## ପାଞ୍ଚ

ଚକା ଭୁ ଉତ୍ତମ କରରେ ମାନସ ଚକା ଭୁ ଉତ୍ତମ କର,
ସେ ଚକାଚଳ ମୁକୁଟ-ଅଳଂକାର ଚକାନୟନ ଦ୍ୱିଭୁଜ । ୧ ।

ସାବିତ୍ରୀ-ପ୍ରମୋଦ ପ୍ରକାଶ ଅରୁଣ ସୁଧା କରଣ-ମଣ୍ଡଳ,
ଜଳଧି ପୁତ୍ରୀ ବିଶ୍ୱଧାତ୍ରୀ ଦୁହିଁଙ୍କ ଗଣ୍ଡମଣ୍ଡନ-ମୁକୁଳ । ୨ ।

ବାରବେଣିପୁର ନାରଙ୍ଗୀ ନିକର, ତାରଣେ ସର୍ବସ୍ୱଚିହ୍ନ,
ସଂଗ୍ରହେ ଗରୁଆ ଦେବାରୁ ଫରୁଆ ଫିଟି ପଡ଼ିଥିଲା ପର । ୩ ।

ମାଣିକ୍ୟ ହୀରକ ମାଳମଣି ଠେକ କଳର ଝଳ-ଦନ୍ଧୁଆ
ଜଗଜ୍ଜନ-ମନ ମୋହନ ଲାବଣ୍ୟ ଲକ୍ଷ୍ମୀର ବେନି ବନ୍ଧୁଆ । ୪ ।

ପରମ ପାତକୀ ସମ ଯଦୁମଣି, କବିରାୟ କହେ ଭାଳ,
ଲୋଚନ-ଗାଣ୍ଡ-ବନ୍ଧଙ୍କର ଉଲ୍ଲାସ ପୀୟୂଷ ପ୍ରାଶନ ଥାଳ । ୫ ।

## ଛଅ

"ପ୍ରାଣ ମିତଣୀରେ ଦେଖିଲେ ରହୁଛି ଲାଖି
ଭାଲୁଣୀ ପରାଏ କାଳିଆ ମୁହଁକୁ, ଗୁଲୁଣୀ ପରାଏ ଆଖି ।"
ପଣ୍ଡା ରନ୍ଧା ଭାତ ଗଣ୍ଡାକ ସେ ଯେବେ ନୟନେ ଦଅଇ ଦେଖି
ଭଣ୍ଡାରୀ ବୁହନ୍ତି ତାଙ୍କଠାରୁ ନେଇ ବ୍ରାହ୍ମଣ ଖାଆନ୍ତି ଚାଖି ।
ଜଗତଯାକ ଭଜୁଥାନ୍ତି ତାହାକୁ, କେଉଁ ଗୁଣ ତାର ଦେଖି
ପୂରତେ ନିରତେ ବସିଛି ଯାହାର, ନିର୍ଗୁଣ ଶାଗୁଣା ପକ୍ଷୀ ।
ଧଳା କଳା ବେନି ଭାଇ ଯେ ମଧ୍ୟରେ ଜଗିଛନ୍ତି ବେନି ପାଖି
ଜଗତ ଯାକର ମନ ମୋହୁଅଛି ବନ ହଳଦିଆ ମୁଖୀ ।
ଯଦୁମଣି ଭଣେ ହି ଜଗତ ହୀନ-ଜନଙ୍କୁ ପାରଇ ରଖି
ନାମ ଧରିଥିବୁ ପରେ ଯେବେ ଯମ କରଣ ନ ପାରେ ଲେଖି ।

# ଯଦୁମଣିଙ୍କ ନାମଗୀତିକା

୧ । ଧର୍ମ ଅର୍ଥକାମ, ମୋକ୍ଷକୁ ଘେନଣ, ଗୃଣଦ୍ୱଗେ ବଜେ କର,
ସତ୍ତ୍ୱ ରଜ ତମ, ଧବଳାଡ ବର୍ଣ୍ଣ, ବସ୍ତ୍ରାଳଣ ନେଇ ଧର ।
ସେ ନଗ୍ରରେ ଷୋଳ ସେନାପତ୍ତ ଗେଳ, ବସ୍ତ୍ରାଳଣ କାଢ଼ ବୁଲି,
କ୍ଷଣକେ ମରନ୍ତ କ୍ଷଣକେ ତରନ୍ତ କ୍ଷଣକେ ତହିଁରେ ଚଳି ।
ମାର ମାର ଡ଼ାକ ପଡ଼ଇ ଅନେକ ଗୃହିନାମ ସେନାପତ୍ତି,
ତଳେ ଭୟ ନାହିଁ ଭୁଣ୍ଡି ନ ଫିଟଇ ପର ପାଣିରେ ଚଳନ୍ତି ।
କେ ନଗ୍ର ମଧରେ ସିଂହାସନେ ବସି ଧାଇଁ ଆସେ କର ରଣ,
ଏ ନାମ କାରହିଁ ଯଦୁମଣି କହି ସନ୍ଦେହମନେ ହୋଇଣ ।

୨ । ଜଗତରେ ସାର ସୁନ୍ଦର ଶରୀର ତା' ଠାରୁ କେ ବଳ ନାହିଁ,
ସମସ୍ତଙ୍କୁ ସେତ ଯାହାର କରେତ, ପାଦପାଣି ତାର ନାହିଁ ।
ଜୀବନ ତା' ନାହିଁ କଥା ନ କହଇ, କ୍ଷଣକେ ଯାଏ ସେ ବୁଲି
ସମସ୍ତେ ତାହାର ଅଟନ୍ତି ଗୃକର କ୍ଷଣେ କେ ଭୁଲିବ ପାର ।
ଜୀବନ ରଖଇ ଜୀବନ ନଅଛ, ଅନେକ ନାମ ତାହାର,
ଚକ୍ଷୁ ବନ୍ଧନ ସେ ଭେଳ ପ୍ରାୟ ସେ, ବଢ଼ଲୋକରେ ସେ ଧାର ।
ଘରେ ଘରେ ଥାଇ, ନଥିଲେଟି ସେହି, ଧିକ ସମସ୍ତ ତାହାର,
ଯଦୁମଣି ଭଣି, କାଲିକର୍ମ ଗଣି, ସୁଖ ଦୁଃଖ ତାହାଠାର ।

୩ । ପାଣିରେ ଚଳଇ ନାବ ସେ ନୁହଇ ସର୍ପ ନୋହି ଜହ୍ନା ଥାଇ,
ଦେଖିବା ସୁନ୍ଦର, ନାହିଁ ପେଟ ତାର, ଜଳ ଆହାର କରଇ ।
ବର୍ଣ୍ଣରେ ନିର୍ମିତ କର୍ଣ୍ଣରେ ଶୁଣିତ, ତାର ବ୍ୟବସାୟେ ତୋଷ,
କଥା ନ କହନ୍ତି ଭୂମିରେ ରହନ୍ତି, ସାର କରଇ ପ୍ରକାଶ ।
ସବୁଠାରେ ଥାଇ ଯଶ ନ କରଇ, ସ୍ଥାନେ ସ୍ଥାନେ କରେ ଯଶ,
ମାରଇ ତାରଇ ଯଦୁମଣି କହି ଏହାର ନାମଟି କସ ?

୪ । ବହୁକଣ୍ଠଧାରୀ କାର୍ଯ୍ୟେ ଦରକାରୀ, ସମସ୍ତରେ ଲୋଡ଼ା ହୋଇ,
ଘରେ ଘରେ ସେହି ଯତନେ ରହଇ, ପାଦ ପାଣି ମୁଖ ନାହିଁ ।
ବହୁ ଦୂର ଯାଏ, ବାର୍ତ୍ତା କୁ ଆଣଇ ଶୁଣି ଭଲମନ୍ଦ ଜାଣି,
ମନ ଉଦୟ ସେ କରଇ ହରଷେ ଶ୍ରବଣରେ ତତ୍‌କ୍ଷଣି ।
ସକଳ କଥାଇ ଲୋଡ଼ା ସେହିବାରେ, ତା ନାମ କହ ଅଟଇ,
କହ ଯଦୁମଣି ପଚ୍ଛରଇ ଗୁଣି ସଂଶୟ ଦିଅ ପିଟାଇ ।

୫ । ବେଜବର୍ଣ୍ଣେ ନାମ ତାହାର ଉଡ଼ି କରେ ଆହାର,
ତାହାର ଅଇଁଠା ନଖାଅ ଦେବେ କରି ଆହାର ।
ପକ୍ଷୀଜନ୍ତୁ ନୋହି ଅଟେ ତା ପକ୍ଷଥଣ୍ଟ ବିସ୍ତାର,
ବିଧାତା ନିର୍ମିତ ନୁହଇ ରଜା ଋଷିଙ୍କ ଧାର ।
ପାଦ ଥାଇ ପର ପାଦରେ ସେ ଯେ ହୁଅଇ ଗତି,
ଅଷ୍ଟଧାତୁ ମଧ୍ୟେ ଧାତୁଯେ ହୋଇ ଭୂଷଣ ନତି ।
ବହୁ ଦ୍ରବ୍ୟ ଆୟୋଜନରେ ଭାର ହୋଏ କାରଣ,
ଯଦୁମଣି ଏହା ପଚାରେ କହ ତାହାର ନାମ ।

୬ । ଜଗତରେ ସାର ଅଟଇ ବେଜ ବର୍ଣ୍ଣରେ ନାମ,
ଚତୁର୍ଥ ପଞ୍ଚମ ବର୍ଗରେ ବର୍ଣ୍ଣ ବିଶ୍ରାମ ସ୍ଥାନ ।
ପ୍ରାଣୀଙ୍କ ଜୀବନ ରକ୍ଷାର୍ଥେ ସେ ତ ଜନମ ହୋଇ,
ଯେ ଶୂନ୍ୟ ହୋଇଲେ ଦରିଦ୍ର ସଙ୍ଗେ ସମାନ ସେହି ।
ତରିଷ ଦୁହିତା ମେଳରେ ଜଳ ଅନେକ ଯୁକ୍ତେ,
ଜୀବ ହୀନ ବଟପରେ ସେ ସର୍ବସିଦ୍ଧ ବୋଲନ୍ତେ ।
ଅଣ୍ଡଜରେ ଯେ ଜାରଜ ସୂତକରେ ପ୍ରସିଦ୍ଧ,
ତା ବିନେ ବିଷମ ସମସ୍ୟା ଘଟେ ଜାଣନ୍ତି ବୃଦ୍ଧ ।
କହ ଯଦୁମଣି ପଚାରେ କହ ନାମ ତାହାର,
ସଙ୍ଗରେ ଯେ କଥା କହିବ ହୃଦେ କରି ବିଚାର ।

୭ । ଗଜ ନୋହି ଗଜ ପ୍ରାସ୍ୟେକ ଶୋଭାବନ ଶରୀର,
ନେ ହେ ଧାତା ସୁତ ବଲ୍ଲକୀ ନୋହେ ଶବ୍ଦ ତାହାର ।
ଦେଖି ନେ ହି ନର ଶ୍ରେଣୀରେ ଶ୍ରଦ୍ଧ ଅଟେ ବହୁତ,
ଷଡ଼ଗୋଟି ପାଦ ରହିଛି ସଦେ ତା ଗତାଗତ ।
ଅସୁର ନାମକୁ ବହିଛି ଚଳଧାତେ ବିନାଶ,
ତାହାକୁ ତାହାର ଭୟ ଯେ ଏହା କର ପ୍ରକାଶ ।
ଗହନେ ରହଇ ଦିବସେ ଶ୍ରୁତି ଗୋଚର ହୋଇ,
କି ନାମ ତାହାର ଅଟଇ ଯଦୁମଣି କହଇ ।

୮ । ଗୃହବର୍ଣ୍ଣେ ନାମ ଅଟଇ ପ୍ରଧାନ ବେଦ ଧାତୁରେ ତ ପ୍ରକାଶ,
ଦ୍ୱିଖଣ୍ଡ ବର୍ଣ୍ଣରେ ପ୍ରାନ୍ତ ଯୁକ୍ତକଲେ ରସ ତତ୍ତ୍ୱେ ନାମ ଆଭାଷ
ପ୍ରାନ୍ତରେ, ଦିବର୍ଣ୍ଣ ମିଶ୍ରିତେ ଉକାର
ମାଗିବା ପ୍ରଭୁଙ୍କ ନାମ ପ୍ରକାଶିତ, ଆଦ୍ୟବେଦ ଘର୍ଦ୍ଧ ଅର୍ଥର ।

୯ । ମଙ୍ଗଳ ହଂସ ଦେଖିବା ବନ୍ଧଦେହ ଆଦ୍ୟବର୍ଣ୍ଣ ଯୁକ୍ତ କରିଲେ
ଯୋଷା ଭୂଷା ନାମ ପ୍ରକାଶ କି ହେବ ଏ କଥା କହିବଟି ଭଲେ
ମରମ, ନଜାଣିଲେ କହି ନ ପାର,
କହେ ଯଦୁମଣି କିସ ଅଟେ ନାମ କହିବ ଏକଥା ବିଚାର ।

୧୦ । ସାରଙ୍ଗେ ଗମନ ଜଗତେ ପ୍ରଧାନ ଜୀବନ ଜଜାତ ବୋଲାଇ
ଜ୍ୟେଷ୍ଠ ଶ୍ରେଷ୍ଠ ହୋଇ ପ୍ରସାଦେ ନରହି ନିଗମରେ ସାର ସେ ହୋଇ
ବୃକ୍ଷରେ, ରହି ସେ ଅଟନ୍ତ ପ୍ରଧାନ,
ବେଦଷଡେ ନାମ ପ୍ରକାଶ ଅଟଇ ବିଧାନ କରତା ଯେ ଜାଣ
ଉକତ ବରଜ ହୋଇ ଶୋଭାବନ ଜନକ ମହି ସେ ବୋଲାଇ
ନିଧନ ଉତ୍ପତ୍ତି କାରଣ ସେହିଟି କାରଣେ କାରଣ ଅଟଇ
କି ନାମ, କହିବ ଫିଟାଇ ସଭାରେ,
ଏ ଅଟେ ବିଷମ ବୁଝିଲେଟି ଗମ ବିଗମନ ଧରି ମନରେ ।

୧୧ । ଦାତା ବୋଲାଇଣ ଦଅନ୍ତି ଜୀବନ ଜୀବର ଜୀବନ ଭରତା
ଉତ୍ପତ୍ତି ସକଳ ଅଶନ ବଫଳ ମାତାରୁ ଜନମ ଯେ ମାତା
ଗଜେନ୍ଦ୍ର, ଗମନ ଗଜେନ୍ଦ୍ର ବୋଲାଇ
ନାଗରେ ମଣ୍ଡିତ ନୁହନ୍ତି ଅନନ୍ତ ନୁହନ୍ତି କମଳାଙ୍କ ସାଇଁ ।
କାହାର ଏ ନାମ କହିବ ଫେଣ୍ଡଣ ବୁଝିଣ ଏହାର ମରମ
ଅର୍ଥ ବୁଝିଲେଟି କହିପାରିବଟି ନଇଲେ ହେଉଥିବ ଭ୍ରମ
କହ ହେ, ଏ ଭାବ ଯେପରି ଘଟଣ
କହେ ଯଦୁମଣି ଏ ରସରେ ଭଣି ହୟଗ୍ରୀବ ପଦ ଧ୍ୟାଇଣ ।

୧୨ । ସାରଙ୍ଗ-ଅଇରି ସାରଙ୍ଗ-ବଇରୀ ସାରଙ୍ଗେ ଭୂଷଣ,
ସାରଙ୍ଗ-ଗମନ ସାରଙ୍ଗ-ଶୋଭନ ସାରଙ୍ଗ-ମଣ୍ଡନ ।
ସାରଙ୍ଗ-ଆଳୟା ବାହନ ସାରଙ୍ଗ ସାରଙ୍ଗ ଧାରଣ,
ସାରଙ୍ଗ-ବହାରୀ ସାରଙ୍ଗେ ସଂହାରୀ ସାରଙ୍ଗ ରମଣ ।
ସାରଙ୍ଗ-ଧାରଣ ହୃଦରେ ସାରଙ୍ଗ ଶବ୍ଦରେ,
ସାରଙ୍ଗ-ଚନ୍ଦ୍ରଣ ଯଦୁମଣି ଗାନ ନାମ କି ବିସ୍ତାରେ ।

୧୩ । ବାଜି ନାମ ବହି ପକ୍ଷୀ ନୁହଇ, ବାଜି ରାଜ ବୋଲି ଜଗତେ କହି
ବାଜି ପଡ଼ିଲେ ଗମଇଁ ଚଞ୍ଚଳ, ବାଜିସାର ସେ ତ ବହୁ ରଙ୍ଗର
ବାଜି ପରି ଚଳେ, ବାଜ ବଲ୍ଲେମକୁ ନଏ ଚପଳେ ।
ଯାନ ବାହନ ତା ନାମ ବହଇ, ଯାନରେ ବହଇ ଶ୍ରେଷ୍ଠ ଯେ ହୋଇ
ଯାନ ସେ ବାହନରେ ଯେ ଶୋଭିତ ଯାନ ଯା ଅଟେ ବାହନ ସେହି ତ
ଯାନ ନାମ କହ, ଯାନ ନୋହେ ଯଦୁମଣି ପ୍ରକାଶ ।

୧୪ । ତିନୋଟି ବର୍ଣ୍ଣରେ ନାମ ପ୍ରକାଶ ତାହାର,
ସପ୍ତବାର ଅବତାରେ ସେହି କାର୍ଯ୍ୟକାରୀ ।
ଶରୀର ରୋମ ନିର୍ମିତ ନରେ ଉପକାରୀ,
ଆଦ୍ୟ ପ୍ରାନ୍ତେ ଦନବାର ନାମକୁ ବିସ୍ତାର ।
ବନରେ ରହଇ ସେ ଯେ ବନେ ନ ରହଇ,
ବ୍ୟଞ୍ଜନ ବେନି ବର୍ଣ୍ଣରେ ନାମ ପ୍ରକାଶଇ ।

୧୫ । ତ୍ରିକୋଟି ବର୍ଣ୍ଣରେ ନାମ ସ୍ତ୍ରିଶଙ୍କ ଆଦର,
ସର୍ବ ଦ୍ରବ୍ୟ ବ୍ୟବହାର ଅଟଇ ତାହାର ।
ଅଙ୍କରେ ବିଶ୍ରାମ ହୋଇ ଶୋଭିବନ ପାଇଁ,
ଆଦ୍ୟାନ୍ତେ ବେଦବର୍ଣ୍ଣେ ଶରୀର ବୋଲାଇ ।
ଆଦ୍ୟ ମଧ୍ୟ ଚଷକରେ ଲେଡ଼ାହେ ବିଶେଷ,
ତରକୁ ଓଜନ ସେ ଯେ ଔଷଧେ ପ୍ରକାଶ ।
ବିବାହରେ ଲୋଡ଼ା ହୋଇ ବେଦୀରେ ଦର୍କାର
ଚନ୍ଦ୍ରିଇ ଯଦୁମଣି କ ନାମ ତାହାର ।



# ହାସ୍ୟ ରସିକ ଯଦୁମଣି

କବି ଯଦୁମଣିଙ୍କ ହାସ୍ୟରସ ପରିବେଷଣ ତଥା ପ୍ରତ୍ୟୁତ୍ପନ୍ନମତିତାର ଅସଂଖ୍ୟ ଉଦାହରଣ ଆଜି ଲୋକ ମୁଖରୁ ଶୁଣିବାକୁ ମିଳୁଛି । ଯଦି କେହି ହାସ୍ୟରସରେ ସୁନାମ ଅର୍ଜନ କରେ ତା ନାମ ଆଗରେ ଯଦୁମଣି ନାମଟି ବିଶେଷଣ ରୂପେ ବ୍ୟବହାର ହେଉଛି । ସେହି ହାସ୍ୟରସ ମୂଳକ ଦୃଷ୍ଟାନ୍ତଗୁଡ଼ିକରୁ କେତେକ ଏଠାରେ ଦିଆଗଲା ।

## ବାପ ଶଳାର ଯେଉଁ ବୁଦ୍ଧି ପୁଅ ଶଳାର ସେହି ବୁଦ୍ଧି—

ଥରେ ରାଜା ବିନାୟକ ସିଂହ ମାନଧାତା ନିଜର ପୁତ୍ର ବ୍ରଜବଲ୍ଲଭଙ୍କ ଦ୍ୱାରା କବି ଯଦୁମଣିଙ୍କୁ ଡକାଇଲେ । ଯଦୁମଣି ସେତେବେଳେ ନିଜର ଶାଳୀ ଘରକୁ ଆସିଥିବାରୁ କାର୍ଯ୍ୟରତ ଥିଲେ । ରାଜକୁମାର ଯେତେବେଳେ ଯଦୁମଣିଙ୍କୁ ରାଜା ଡକାଇଛନ୍ତି ବୋଲି ରାଜ ଦରବାରରେ ଉପସ୍ଥିତ ହେବା ନିମନ୍ତେ କହିଲେ, ଯଦୁମଣି କାର୍ଯ୍ୟବ୍ୟସ୍ତ ହୋଇ ସଙ୍ଗେ ସଙ୍ଗେ କହିଲେ, "ବାପା ଶଳାର ବୁଦ୍ଧି ଯେପରି ପୁଅ ଶଳାର ବୁଦ୍ଧି ସେପରି ।" ରାଜକୁମାର ବ୍ରଜବଲ୍ଲଭ ଯଦୁମଣିଙ୍କ ଠାରୁ ଏପରି ଶୁଣି ରାଗରେ ଫେରିଆସି ରାଜାଙ୍କୁ କହିଲେ । ରାଜା ପୁଅଠାରୁ ଏପରି ଶୁଣି ସଙ୍ଗେ ସଙ୍ଗେ ଲୋକ ପଠାଇ ଯଦୁମଣି ଯେଉଁ ଅବସ୍ଥାରେ ଥିବେ ଆଣିବାକୁ ଆଦେଶ କଲେ ।

ରାଜ କର୍ମଚାରୀମାନେ ଅବହେଳା ନକରି ସଙ୍ଗେ ସଙ୍ଗେ ଯାଇ ଯଦୁମଣିଙ୍କୁ ଘରୁ ନେଇ ଆସିଲେ । ଯଦୁମଣି ରାଜକର୍ମଚାରୀଙ୍କୁ ଦେଖି ନିରୁପାୟ । କ'ଣ କରିବେ କିଛି ସ୍ଥିର କରି ପାରିଲେ ନାହିଁ । ଯଦୁମଣି ଯାଇ ରାଜଦରବାରରେ ଉପସ୍ଥିତ ହେଲେ ।

ରାଜା ଯଦୁମଣିଙ୍କୁ ଦେଖି ପଚାରିଲେ, "କହେ, ମହାପାତ୍ରେ ତୁମକୁ ପୁଅ ଦ୍ୱାରା ଡକାଇଥିଲି ତୁମେ ପୁଅକୁ ଏପରି କାହିଁକି କହିଲ ।"

ଯଦୁମଣି ସଙ୍ଗେ ସଙ୍ଗେ କହିଲେ, "ମହାରାଜ ! ମୁଁ ତ ଯେପରି କିଛି ଅପରାଧ କରିନାହିଁ । ମୁଁ ମୋର କୁଡ଼ିଆ ଘରଟିକୁ ବହୁକଷ୍ଟରେ ଛପର କରିଥିଲି । ଅମାନିଆ ମାଙ୍କଡ଼ଗୁଡ଼ାକ ସେହି କୁଡ଼ିଆ ଘର ଉପରକୁ ଡେଇଁ ନଷ୍ଟ କରିଦେଲେ । ଏଣେ ତା ପରେ ପରେ ପବନ ବହିବାରୁ ସବୁତକ ନଡ଼ା ପବନରେ ଉଡ଼ି ପଳାଇଲା । ମୁଁ ବଡ଼ ଦୁଃଖରେ ଚଳିବାକୁ ପଡ଼ୁଛି । ଘରେ ନଡ଼ା ନାହିଁ । ଏଣେ ଚନ୍ଦ୍ର ସୂର୍ଯ୍ୟ ଗତାଗତ କରୁଛନ୍ତି । ଆଉଥରେ ଛପର କରିବାକୁ ପାଖରେ ନଡ଼ା ନାହିଁ କି ପଇସା ନାହିଁ । ସେଥିରେ ଚିନ୍ତିତ ରହିଥିଲି । ତେଣୁ ରାଜକୁମାରଙ୍କୁ ଦେଖି ମୋର ଦୁଃଖ କଥା କହିଦେଲି । ପ୍ରଭୁ ! ସେ କ'ଣ ମୋ କଥାକୁ ଭୁଲ ମଣିଲେକି ? ଯଦି ସେପରି କିଛି କହିଦେଇ ଥାଏ ମୋତେ କ୍ଷମା ଦିଅନ୍ତୁ ।"

•

ରାଜା ଯଦୁମଣିଙ୍କ ମୁଖରୁ ଏପରି ଶୁଣି ଆଶ୍ଚର୍ଯ୍ୟ ହୋଇଗଲେ ଏବଂ ଘର ଛପର କରିବା ପାଇଁ ସମସ୍ତ ଭାର ସୁବ୍ୟବସ୍ଥା କରିଦେଲେ ।

## ଢୋଲକାଠି –

ଥରେ ରାଜା ବିନାୟକ ସିଂହ ମାନଧାତା ଓ ଯଦୁମଣି ଜଗନ୍ନାଥ ଦର୍ଶନକୁ ପୁରୀ ଯାଇଥିଲେ । ସେଠାରେ ଜଣେ ଜଗନ୍ନାଥଙ୍କ ସେବା ବେଶ୍ୟା ନାଗରମାନଙ୍କ ଠାରୁ ବହୁତ ଧନ ଆଦାୟ କରୁଥିଲା । ଏକଥା ଯଦୁମଣି ଶୁଣି କହିଲେ, "ମୁଁ ଆଜି ରାତିରେ ସେ ବେଶ୍ୟା ପାଖକୁ ଯାଇ ତା ରୋଜଗାର ଧନରୁ କିଛି ଆଦାୟ କରି ଆଣିବି ।" ଯଦୁମଣି ବେଶ୍ୟା ଘରକୁ ଯାଇ ସାରା ରାତି ତା ନିକଟରେ କଟାଇଲେ ଏବଂ ବେଶ୍ୟା ଯେତେ ପଇସା ଚାହିଁଲା ଦେଲେ । ରାତି ପାହିଲା, ବେଶ୍ୟା ଯଦୁମଣିଙ୍କୁ ଘରୁ ବାହାର ବାହାରକୁ ଯିବା ପାଇଁ ଅନୁରୋଧ କଲା । ଯଦୁମଣି ବେଶ୍ୟା ଘରୁ ବାହାରକୁ ଆସିବେ କ'ଣ ଶେଜ ଓ ଶେଜ ତଳ ଦାଣ୍ଡା ଖୋଜିବାକୁ ଲାଗିଲେ । ଘର ବାହାରକୁ ନଯାଇ ଏପରି ଖୋଜିବାର ଅଭିପ୍ରାୟ ବେଶ୍ୟା ଯଦୁମଣିଙ୍କୁ ପଚାରିଲା ।

ଯଦୁମଣି କହିଲେ, "ନୟାଗଡ଼ ର ଜାଗିବାହାରକୁ ବଜେ ହେଲେ ମୁଁ ତାଙ୍କ ଆଗରେ ଢ଼ୋଲ ବଜାଇ ବଜାଇ ଯାଏ । ମୁଁ ତୁମ ପାଖକୁ ଆସିଲା ବେଳେ ମୋର ଢୋଲ କାଠିଟି ସଙ୍ଗରେ ନେଇ ଆସିଥିଲି । ଏଠି କେଉଁ- ଠାରେ ପକାଇ ଦେଲି, ତାହା ମୋତେ ମିଳୁନାହିଁ । ନ ମିଳିଲେ ଆଜ ମୋ ଗୃହକର ସରିଯିବ ।"

ବେଶ୍ୟା ଦେଖିଲା ଯେ ରାତି ପାହି ଆସିଲାଣି । ଏ ଗୋଟିଏ ଢୋଲ ବଜାଇବା ହାଡ଼ି । ଏହାକୁ ମୁଁ ଘରେ ପୂରାଇଥିଲି ବୋଲି ଲୋକେ ଜାଣିଲେ ମୋତେ ଘୃଣା କରିବେ ଅଜାତିଆ କରି ରଖିବେ । ଦ୍ୱିତୀୟତଃ ହାଡ଼ି ସଙ୍ଗେ ରାତିସାରା ଥିଲିବୋଲି ଅନ୍ୟ ଗ୍ରାହକମାନେ ଆଉ ଆସିବେ ନାହିଁ । ଏକଥା ଯଦି ପ୍ରକଟ ହେବ ତାହାହେଲେ ମନ୍ଦିର ବାଛନ୍ଦ ହୋଇଯିବ ।

ବିଚରା ବେଶ୍ୟା ଯଦୁମଣିଙ୍କୁ ଢୋଲ କାଠିର ମୂଲ୍ୟ ଯାଚିଲା । ଯଦୁମଣି କହିଲେ ପଇସା କଣ କରିବି ? କଣା କାଠି ମୋ ଢୋଲକୁ ଖାପିବ ନାହିଁ ।

ଶେଷରେ ଯଦୁମଣି ବେଶ୍ୟାକୁ ନିଜେ ଦେଇଥିବା ଟଙ୍କାର ଦଶଗୁଣ ଟଙ୍କା ଆଦାୟ କରି ସେଠୁ ଘରୁ ପଦାକୁ ଆସିଥିଲେ । ରାଜା ମାନଧାତା ଯଦୁମଣିଙ୍କ ଏପରି କାର୍ଯ୍ୟ ଶୁଣି ଆନନ୍ଦରେ ତାଙ୍କୁ ଉପହାର ଦେଇଥିଲେ ।

## ଘୋର ଜାଡ଼ରେ—

ଶୀତଦିନ ଆସିଗଲା । ଯଦୁମଣିଙ୍କ ଘରେ ଶୀତଲୁଗା ଆଦୌ ନଥାଏ । ଖଞ୍ଜନା ଶୀତଲୁଗା ନଥିବା ବିଷୟ ବହୁତ ଥର ସ୍ୱାମୀଙ୍କୁ କହୁଥାନ୍ତି । ଯଦୁମଣି ବାରମ୍ବାର ଶୀତଲୁଗା ନଥିବା କଥା ସ୍ତ୍ରୀଙ୍କଠାରୁ ଶୁଣି ଘରେ ରହି ପାରିଲେ ନାହିଁ । ଯଦୁମଣି ଦିନେ ମାଘମାସ ଶୀତ ପ୍ରଭାତରୁ ଯାଇ ରଣପୁର ରାଜ ଦରବାରରେ ପହଞ୍ଚିଲେ ।

ରାଜା ଯଦୁମଣିଙ୍କ ଆଗମନ ଦେଖି ପଚାରିଲେ, "ମହାପାତ୍ରେ, ଏତେ ଜାଡ଼ରେ କୁଆଡ଼େ ଆସିଲେ କି ?

ଯଦୁମଣି କରଯୋଡ଼ କହିଲେ, "ଘୋର ଜାଡ଼ରେ, ପଳାଇ ଆସିଲି ଘାରଜା ଡ଼ରେ ।"

ରାଜା ଯଦୁମଣିଙ୍କ ମନୋଭାବରୁ ଆସିବା ଉଦ୍ଦେଶ୍ୟ ଜାଣିପାରି ସଙ୍ଗେ ସଙ୍ଗେ ମନ୍ତ୍ରୀଙ୍କୁ ଆଦେଶ ଦେଲେ ଯେ ଦୁଇଟି ପାଗ୍ଲେଡ଼ା ଯଦୁମଣିଙ୍କୁ ଦେବା ପାଇଁ ।

ମନ୍ତ୍ରୀ ଦେଖିଲେ ଗନ୍ତାଘରେ ଯେଉଁ ଶାଲ ଅଛି ତାହା ସବୁ ବହୁ ଦାମର । ଏଣୁ ଯଦୁମଣିଙ୍କୁ ଶାଲ ଦେବାରେ ମନ୍ତ୍ରୀ ଡେରି କରିଦେଲେ । ତା ପରଦିନ ଯଦୁମଣି ରାଜାଙ୍କୁ ଭେଟି କହିଲେ—
"ତୁମ୍ଭେ ଆଜ୍ଞାଦେଲେ ବଡ଼ ପାଗ୍ଲେଡ଼ା, ମନ୍ତ୍ରୀ କାଢ଼ିଦେଲେ ବଡ଼ପା ଗ୍ଲେଡ଼ା ।"

ରାଜା ସଙ୍ଗେ ସଙ୍ଗେ ମନ୍ତ୍ରୀଙ୍କୁ ଡ଼କାଇ ବହୁତ ଧିକ୍କାର କଲେ ଓ ଯଦୁମଣିଙ୍କୁ ଦୁଇଟି ମୂଲ୍ୟବାନ ଶାଲ ଆଣି ପ୍ରଦାନ କଲେ ।

## ଦଂଖଣ୍ଡି ଆମ୍ବୁଲ ଲୋଡ଼ା—

ସେତେବେଳେ ଇଟାମାଟିରେ ଜଣେ ବିଶିଷ୍ଟ ନିଷ୍ଠାପର ବ୍ରାହ୍ମଣ ରହୁଥିଲେ । ସେ ପୁରୋହିତ କର୍ମ କରି ଓ ନାନା ଶାସ୍ତ୍ର ପୁରାଣ ପ୍ରଭୃତି ପାଠ କରି ଲୋକଙ୍କୁ ଶୁଣାଇ ସର୍ବସାଧାରଣଙ୍କ ଦ୍ୱାରା ପ୍ରଶଂସାର ପାତ୍ର ହୋଇଥିଲେ । ତାଙ୍କର ଜ୍ଞାନରେ ଯଦୁମଣି ମଧ୍ୟ ମୁଗ୍ଧ ହୋଇ ତାଙ୍କ ସହିତ ବେଶ୍ ମିଳାମିଶା, ବନ୍ଧୁତାପୂର୍ଣ୍ଣ ବ୍ୟବହାର ଦେଖାଉଥିଲେ । ଦିନେ ପୁରୋହିତ ସନ୍ଧ୍ୟାବେଳେ ପିଣ୍ଡାରେ ବସି 'ଲାବଣ୍ୟବତୀ' କାବ୍ୟ ପଢ଼ି ଅର୍ଥ କରି ଲୋକଙ୍କୁ ଶୁଣାଉଥିଲେ । ପୁରୋହିତଙ୍କ ସୁନ୍ଦର ବ୍ୟାଖ୍ୟାରେ ବହୁତ ଲୋକ ଆଗ୍ରହରେ ଶୁଣୁଥିଲେ । ସେ ଦିନ ଯଦୁମଣିଙ୍କର ଆମ୍ବୁଲ ଖାଇବା ପାଇଁ ଇଚ୍ଛା ହେଲା । ସେ ପୁରୋହିତଙ୍କ ପାଖକୁ ଯାଇ ଦଣ୍ଡାୟମାନ ହୋଇ କହିଲେ, ପୁରୋହିତ ମହାଶୟେ ଶୁଣିବଟି, ତା ପରେ ଗାଇଲେ—

"ଅଚ୍ୟୁତ ଖଣ୍ଡ ଚ୍ୟୁତ ହୋଇଥିବ,
ଆନନ୍ଦ ମୂଳକ ଦିଖଣ୍ଡ ଦେବ ।"

ପୁରୋହିତ ସଙ୍ଗେ ସଙ୍ଗେ ଯଦୁମଣିଙ୍କ ଉଦ୍ଦେଶ୍ୟ ବୁଝିପାରି କହିଲେ, "ମୁଁ ଅବିଳମ୍ବେ ତୁମର ଇଚ୍ଛା ପୂର୍ଣ୍ଣ କରିବି, ବସନ୍ତୁ ।"

'ନାହିଁ ବହୁତ କାମ ଅଛି କହି ଯଦୁମଣି ସେଠାରୁ ଚାଲିଗଲେ । ପାଖରେ ବସିଥିବା ଲୋକେ ପୁରୋହିତଙ୍କୁ ପଚାରିଲେ, "ମହାଶୟ ଯଦୁମଣି ତୁମଙ୍କୁ କ'ଣ କହିଲେ ଆମଙ୍କୁ ବୁଝାଇବାକୁ ଅନୁରୋଧ ।"

ପୁରୋହିତ ଲୋକଙ୍କ ଅନୁରୋଧ ରକ୍ଷାକରି କହିଲେ—ଅଚ୍ୟୁତଙ୍କ ଖଡ୍‌ଗର ନାମ ନନ୍ଦକ, ଅର୍ଥାତ୍ ନନ୍ଦକ ଚ୍ୟୁତ ହୋଇଥିବ । ଦେଖନ୍ତୁ ଆନନ୍ଦ ମୂଳକରୁ ନନ୍ଦକ କାଟିଲେ ଆମୂଳ ବା ଆମ୍ବୁଲ ଦ'ଖଣ୍ଡ ସେ ମାଗିଲେ । ବୁଝିଲ ଯଦୁମଣିଙ୍କୁ ଦଖଣ୍ଡ ଆମ୍ବୁଲ୍ ଲୋଡ଼ା ।

ପୁରୋହିତଙ୍କ ଠାରୁ ଯଦୁମଣିଙ୍କ କଥାର ଅର୍ଥ ଶୁଣି ଲୋକେ ହସି ଉଠିଲେ । ପରେ ପୁରୋହିତ ମହାଶୟ ଯଦୁମଣିଙ୍କ ଗୃହକୁ ଆମ୍ବୁଲ ଆଗ୍ରର ଦୁଇବଡ଼ା ପଠାଇ ଦେଲେ ।

## ମଲ୍ଲୀହିଅ ଚନ୍ଦ୍ରମା—

ଦିନେ ସକାଳ, ଯଦୁମଣି ପିଣ୍ଡାରେ ବସି ଦାନ୍ତ ଘଷୁଥାନ୍ତି । କୁଣ୍ଢିରେ କ୍ଷୀର ବଡ଼ାମାନ ଧରି ମୁଣ୍ଡାଇ ସୁନ୍ଦରୀ ଗୋପାଳ ଝିଅଟିଏ ରାଜମାର୍ଗରେ ଯାଉଥିଲା । ତାର ସୁନ୍ଦର ମୁଖ ମଣ୍ଡଳ ଓ ମନ ଭୁଲାଣିଆ ରୂପ ଦେଖି ଯଦୁମଣିଙ୍କ ମନ ଚଞ୍ଚଳ ହେଲା । ସେ ହସି ହସି ଗୋପାଳ ଝିଅକୁ ପାଖକୁ ଡାକିଲେ । ଏ ଗଉଡୁଣୀ ଏଣିକି ଆସିଲୁ ? ଗଉଡୁଣୀ ପାହାଚ କଡ଼କୁ ଛିଡ଼ା ହୋଇ ମୁରୁକେଇ ହସି ଅନ୍ୟଦିଗକୁ ମୁହଁଟି ବୁଲାଇ ଦେଇ କହିଲା, "କ'ଣ ପାଇଁ ଡାକିଲ ?"

ଯଦୁମଣି ପଚାରିଲେ, ଆଜି ତତେ ନୂଆଁ ଦେଖୁଛି, ତୁ କେଉଁ ଗଉଡ଼ ଘର ଝିଅ ନା ବୋହୂ ମ ? ଆଜି ପ୍ରଥମଥର ପାଇଁ ଆସିଛୁ ନା କ'ଣ ?

ଗଉଡୁଣୀ କହିଲା ମୋ ମା' ମଲ୍ଲୀ ନିତି ସାହିକୁ ଦୁଧ ବିକି ଆସେ । ମୁଁ କେବେ ଆସି ନଥିଲି । ଆଜି ନୂଆଁ କରି ଆସିଛି ସାଆନ୍ତେ ।

କବି ଯଦୁମଣି ହସି ଦେଇ କହିଲେ, "ଯେ, ତୁ ମଲ୍ଲୀଝିଅ, ତାକୁ ତ ମୁଁ ଭଲଭାବେ ଚିହ୍ନେ । ଆଗୁ, କହିଲୁ ତୋ ନାମ କ'ଣ କି ?

ଗଉଡୁଣୀ କହିଲା, "ମୋ ନାମ ଚନ୍ଦ୍ରମା ।"

ଯଦୁମଣି କଅଁ କେଇ ପଚାରିଲେ, "ଆ···ଟିକେ ଦୁଧର ଦାମ ଟକଟେନେବୁ ଚନ୍ଦ୍ରମା ?"

ମଲ୍ଲୀଝିଅ ଚନ୍ଦ୍ରମା ଖୁବ୍ ଚତୁରୀ ସେ କବିଙ୍କର ମନୋଭାବ ଠିକ୍ ଠଉରେଇ ନେଲା, ଭାବିଲା ମଁଧ ଟିକିଏ, ତାପରେ କହିଲା, "ବଡ଼ାଙ୍କର ମୂଲ୍ୟ ଯେତେ" କହି କହି ସେ ଚାଲିଗଲା । ଯଦୁମଣି ନିଜେ ଅପମାନିତ ହୋଇଥିଲେ ।

ଭାତରେ ପଶରବା—

ଦିନକର ଘଟଣା ଯଦୁମଣିଙ୍କ ପାଖରେ ପଇସାଟିଏ ହେଲେ ନାହିଁ । ସ୍ତ୍ରୀ ଖଞ୍ଜନା କହିଲେ, ଆଜିତ ପଇସା ନାହିଁ, କାଲି ବାଉଁଶ କରଡ଼ ମୁଠିଏ କିଣିଥିଲି । ସେହି କରଡ଼ ତରକାରି କରିଦେଇଛି ଖାଇ ରାଜ ଦରବାରକୁ ଯାଅ । ଯଦୁମଣି ନିରବ ହୋଇଗଲେ । ମୌନ ସମ୍ମତି ଲକ୍ଷଣ । ସେ କିଛି ନ କହିବାରୁ ତାଙ୍କର ରାଜିଅଛି ଜାଣି ପତ୍ନୀ ରନ୍ଧନ କାର୍ଯ୍ୟ ଶେଷକଲେ । ଭୋଜନ ଶେଷକରି ଠିକ୍ ସମୟରେ ଯଦୁମଣି ରାଜ ସଭାରେ ଉପସ୍ଥିତ ହେଲେ ।

ରାଜସଭା ଶେଷହେଲା, କବି ରାଣୀ ମହଲକୁ ପ୍ରବେଶ କଲେ । ସେ ଏପରି ଦିନେ ଦିନେ ରାଣୀଙ୍କୁ ସାକ୍ଷାତ କରନ୍ତି । ପଣ୍ଡିତ ରାଣୀଙ୍କୁ କିଛି ଉପଦେଶ ପରିପୂର୍ଣ୍ଣ ଦେବାଦେବୀ ବନ୍ଦନା ଇତ୍ୟାଦି କବିତାମାନ ଶୁଣାନ୍ତି ।

ରାଣୀ ଖୁସି ହୋଇ ତାଙ୍କୁ କିଛି ପୁରସ୍କାର ଦିଅନ୍ତି । ସେ ଦିନ ରାଣୀ ଯେତେବେଳେ ଯଦୁମଣିଙ୍କୁ ଦେଖିଲେ, ବସିବା ପାଇଁ ଆସନ ଦେଲେ । ଯଦୁମଣି ଆସନ ଉପରେ ବସିଲେ, ସେ ଜାଣନ୍ତି ରାଣୀ ରାମ ଉପାସନା କରନ୍ତି । ତେଣୁ ଆଗରୁ ରାମଚନ୍ଦ୍ରଙ୍କର ବନ୍ଦନାଟିଏ ରଚନା କରି ନେଇ-ଥିଲେ । ବୃଦ୍ଧ ମଣି ରାଣୀଙ୍କୁ ତାହା ଗାନକରି ଶୁଣାଇଲେ । ଗୀତଟି ଶୁଣିଲା ପରେ ରାଣୀ ଖୁସିହୋଇ ପଚାରିଲେ, "କବି ଆଜି ଆପଣଙ୍କର କି ତରକାରି ହୋଇଥିଲା ।" ଏହା ଶୁଣି ଯଦୁମଣି ଗାଇବାକୁ ଆରମ୍ଭ କଲେ—

"ପିନ୍ଧିଥିଲା ବନରୁ ମୁଣ୍ଡରେ ଟୋପି, କୃଷ୍ଣ ଅବତାରେ ମୋହିଲେ ଗୋପୀ
ରାମ ଅବତାରେ ରାବଣ ମାରି, ଆଜି ହୋଇଥିଲା ସେହି ତର୍କାରି ।"

ବିଦୁଷୀ ରାଣୀ କବିଙ୍କର ପଦ୍ୟଟିକୁ ମନେ ମନେ ଅର୍ଥ କଲେ । ଭାବିଲେ ବାଉଁଶ କଡ଼ି ଠିକ୍ ଛତୁପରି ଟୋପି ଦେଖାଯାଏ । ବାଉଁଶ ନଳୀକୁ ବଂଶୀ ରୂପେ ଶ୍ରୀକୃଷ୍ଣ ବ୍ୟବହାର କରି ଗୋପୀମାନଙ୍କୁ ମୋହିତ କରିଥିଲେ । ରାମ ଅବତାରରେ ବାଉଁଶ ଶରରେ ରାବଣ ରାକ୍ଷସକୁ ମାରିଥିଲେ । ଅର୍ଥାତ୍ ଯଦୁମଣିଙ୍କର ଆଜି ସେହି ତର୍କାରି ହୋଇଥିଲା ।

ରାଣୀ ବିଷୟଟିକୁ ଅନୁଧ୍ୟାନ କରି କଦଳୀ, ମୁନ୍ଗା, ବାଇଗଣ ଇତ୍ୟାଦି ବିଭିନ୍ନ ପ୍ରକାର ପରିବାରୁ ଗରୁଆକୁ ଡ଼ାକି କବିଙ୍କ ସହିତ ଗୃହକୁ ପଠାଇ ଦେଲେ ।

## କାମ କାକର ତଣ୍ଡା କାଳିଚନ୍ଦ୍ର—

ଦିନେ ରାଜା ଓ ଯଦୁମଣି ସନ୍ଧ୍ୟା ଭ୍ରମଣରେ ବାହାରିଥାନ୍ତି । ସେମାନେ ଯିବା ବାଟ ଦେଇ ଜଣେ ବଡ଼ ସୁନ୍ଦରୀ ଝିଅ ଚାଲିଯିବାର ଦେଖିଲେ । ଝିଅଟି ଜଣେ ବେଶ୍ୟା । ଦୂରରୁ ତା ଅଙ୍ଗ ସୌଷ୍ଠବ ରମଣୀୟ ହେଲେ ହେଁ ଦୁର୍ଭାଗ୍ୟକୁ ତାର ମୁହଁଟି ବସନ୍ତ ରୋଗ ଦ୍ୱାରା ଆକ୍ରାନ୍ତ ହୋଇ କଳା କଳା ଚିହ୍ନରେ ଭରି ଯାଇଥାଏ ।

ରାଜା ଯଦୁମଣିଙ୍କୁ ଏ ଦୃଶ୍ୟ ଦେଖି କହିଲେ, "କବି, ସୁନ୍ଦରୀକୁ ଦେଖିଲ ତ ? କବି ହୃଦୟ କଣ୍ଟୁ ଭାବାନ୍ତର ସୃଷ୍ଟି ହେଉନାହିଁ । ବସନ୍ତ ମୁହଁକୁ ଉପମା ଦିଅନ୍ତୁ । ଯଦୁମଣି ହସି ହସି ଗାଇବାକୁ ଲାଗିଲେ—

'କାମ କାକର ଛଣା ଜାଳିଚନ୍ତି'

କର୍ମ ବିପାକରୁ ସୁନ୍ଦରୀ ମୁଖ ବିକୃତ ହୋଇଥିଲେ ହେଁ କବି ସୁନ୍ଦରୀର ସୌନ୍ଦର୍ଯ୍ୟ ପ୍ରତି ଅବମାନନା ନ କରି ସୌନ୍ଦର୍ଯ୍ୟ ପ୍ରତି ସମ୍ମାନ ପ୍ରଦର୍ଶନ କରି ସୁନ୍ଦରୀ କାମ ରୂପକ କାକରା ଛଣା ପାଇଁ ଜାଳିଚନ୍ତି ବୋଲି କହିଥିଲେ ।

## ଆରେ ଚନ୍ଦ୍ରଘଣ୍ଟା, ଘଣ୍ଟା ଲଣ୍ଠା ତଳେ ନ କର ହଣ୍ଟା—

ଯଦୁମଣିଙ୍କ ବାପାଙ୍କ ଶ୍ରାଦ୍ଧତିଥି । ଘରେ ଭୋଜ ଭାତର ଆୟୋଜନ ହୋଇଥାଏ । ବନ୍ଧୁ ବାନ୍ଧବମାନେ ଆମନ୍ତ୍ରିତ ହୋଇ ବିଭିନ୍ନ ଯାଗାରୁ ଆସିଛନ୍ତି । ଏଣେ ସାଇ ଭାଇ ଓ ଗାଁ ଲୋକେ ତ ଆସିବା କଥା । ଭୋଜି ସଭା ଆରମ୍ଭ ହୋଇଗଲା । ଧାଡ଼ି ଧାଡ଼ି ହୋଇ ସମସ୍ତେ ଖାଇବା ପାଇଁ ଖଲିପତ୍ର ଧରି ବସିଗଲେ । ପରଷା ମଧ୍ୟ ଆରମ୍ଭ ହୋଇଗଲା ।

ଯଦୁମଣିଙ୍କ ଶଳା ଦଶପଲ୍ଲାରୁ ଆସିଥାନ୍ତି । ସେ ଯଦୁମଣିଙ୍କ ନିକଟରେ ଖାଇବାକୁ ବସିଥାନ୍ତି । କାନିକା, ପାୟସ, ଡ଼ାଲି, ଶାକରା, ସାଗ ସବୁ ଭଲ ହୋଇଥାଏ ମାତ୍ର ତିଅଣରେ ବେଶି ପାଣି ହୋଇ ଯାଇଥିଲା । ଯଦୁମଣିଙ୍କ ପତ୍ନୀ ଖଞ୍ଜନା ରୋଷେଇ ବାସରେ ବେଶ୍ ନିପୁଣା, ମାତ୍ର ଦୈବଯୋଗ କିଆଁ ପାଣି କଥା ସେ ଦିନ ତିଅଣ କେମିତି ବିଗିଡ଼ି ଯାଇଥିଲା ।

ସମସ୍ତେ ଅନୁଭବ କଲେ ହେଁ କେହି କିଛି କହୁନାହାନ୍ତି । ମାତ୍ର ପ୍ରିୟ ଶାଳକ ବାରମ୍ବାର ଏହି କଥା ଯଦୁମଣିଙ୍କ କାନରେ ଫୁସ୍ ଫୁସ୍ କରି କହୁଥାଏ । ଯଦୁମଣି ଦେଖିଲେ ଶାଳକ ଯୋଗୁଁ ସବୁ କଟିଡ଼ି ଯିବ । ଭୋଜି ସଭାରେ ବସିଥିବା ଲୋକେ ନିନ୍ଦା କରିବେ । ଏଣୁ ତା ପୂର୍ବରୁ କବି ଶଳାଙ୍କୁ ଶୁଣାଇ କହିଲେ—

"ଆରେ ଚହଟା, ଝଟା ଲଟା ତଳେ ନ କର ହଟା,
ତୋହର ଭଉଣୀ ମୋହର ଟଣୀ, ଢଅଣରେ ଦେଲା ଆଣ୍ଟୁଏ ପାଣି ।

ଏକଥା ଶୁଣି ଅନ୍ୟମାନେ କହିଲେ, ନାଇଁ ଅବଧାନେ ! ମହୁର କଣ୍ଟୁ ଖରାପ ହୋଇନାହିଁ । ସବୁ ପଦାର୍ଥ ବେଶ୍ ସୁସ୍ୱାଦ ହୋଇଛି ।

ଯାହାହେଉ କବିଙ୍କ ଯୋଗୁଁ ଝଞ୍ଜନାର ମାନ ରହିଗଲା । ନଚେତ୍ ଝଞ୍ଜନା ଯେପରି ଅଭିମାନିନୀ ନା ଦିନସାରା କାନ୍ଦିଥାନ୍ତା ।

## ଏକାନ୍ତରେ କେଉଁମାନେ ଯାଉଛନ୍ତି—

ସନ୍ଧ୍ୟାରେ ଅଗଣିତ ନରନାରୀ ପ୍ରଭାତଚନ୍ଦ୍ର ଗୃହିଲଛନ୍ତି । ସେ ଦିନ କାର୍ତ୍ତିକ ମାସର ପଞ୍ଚକର ପ୍ରଥମ ଦିନ, ରାଜାଙ୍କର ଏକଥା ମନେ ନଥାଏ । ରାଜା କବି ଯଦୁମଣିଙ୍କୁ ଲକ୍ଷ୍ୟକରି ପଗୃରିଲେ, କବିବର କହିଲ "ଏକାନ୍ତରେ କେଉଁମାନେ ଯାଉଛନ୍ତି ।"

ଯଦୁମଣି ସଙ୍ଗେ ସଙ୍ଗେ ଉତ୍ତର ଦେଲେ, ମହାରାଜ ! ଆଜିପରା କାର୍ତ୍ତିକ ପଞ୍ଚକ । ଏହା କହି କହି ଗାଇବାକୁ ଆରମ୍ଭ କଲେ—

"ଏକାନ୍ତରେ ଦ୍ୱିକରେ ସ୍ତ୍ରୀକର ଧରି ଚତୁସ୍କର ଦର୍ଶନକୁ ପଞ୍ଚକରେ ସନ୍ଧ୍ୟାରେ ଯାଉଛନ୍ତି ।"

ରାଜା ଯଦୁମଣିଙ୍କ ଉତ୍ତରରେ ତୃପ୍ତ ହେଲେ । ତାପରେ ତାମଜାନ୍ ଗୃହିଲା ଓ ସମସ୍ତେ ଗମନ କଲେ ।

## ବସା ସଞ୍ଚା—

ଅଭାବ ଅସୁବିଧାରେ ପଡ଼ି ଥରେ ଯଦୁମଣି ରଣପୁର ମାମୁଁଘରକୁ ଯାଇଥିଲେ । ତା ପରଦିନ ରଣପୁର ରାଜାଙ୍କୁ ସାକ୍ଷାତ କଲେ । କିନ୍ତୁ ରାଜା ଯଦୁମଣିଙ୍କ ପାଇଁ ବସା ସଞ୍ଚାର କୌଣସି ବ୍ୟବସ୍ଥା କଲେନାହିଁ । ସେହିଦିନ କର୍ବି ଅସୁବିଧାରେ ଚଳିଲେ । ତା ପର ଦିନ ରାଜାଙ୍କ ସମ୍ମୁଖରେ ଗାଇଲେ

"ପାଖରେ ବସିଣ ବଚନ ଭାଷିଲି କିଣା ମୁଁ ଆପଣଙ୍କର,
ମୁଣ୍ଡକୁ ମାଇଲେ ତୁଣ୍ଡକୁ ନ ବୋଲି କିଣା ମୁଁ ଆପଣଙ୍କର ।"

କବିଙ୍କର କରୁଣଭରା କବିତାଟି ଶୁଣଣ୍ଣ ରାଜା ବୁଝିପାରି ସଙ୍ଗେ ସଙ୍ଗେ ତାଙ୍କ ପାଇଁ ବସା ଓ ସଞ୍ଜା ଯୋଗାଇ ଦେଇଥିଲେ । ସେଠାରେ କବି କିଛିଦିନ ରହି ରାଜାଙ୍କ ଠାରୁ ଆର୍ଥିକ ସାହାଯ୍ୟ ପାଇ ପୁଣି ନୂଆଁଗଡ଼ ଫେରି ଆସିଥିଲେ ।

## ବସ୍ତ୍ର ପ୍ରତିମା—

ରଣପୁରଁ ରାଜ ଦରବାର । ରାଜା, ମନ୍ତ୍ରୀ ଓ ସଭାସଦ୍‌ବୃନ୍ଦ ଯେ ଯାହାର ଆସନରେ ବସିଛନ୍ତି । ସେହି ସମୟରେ କବି ଯଦୁମଣି ମହାପାତ୍ର ରାଜାଙ୍କୁ ସାକ୍ଷାତ କଲେ । ରାଜା ଖୁସି ହୋଇ କବିଙ୍କୁ ଆସନରେ ବସିବାକୁ ନିର୍ଦ୍ଦେଶ କଲେ । କବି ହସି ହସି ରାଜାଙ୍କୁ ପାଟକନା ଗୁଡ଼ା ହୋଇଥିବା ଗୋଟିଏ ପୁଲବଣ୍ଡା ରାଜାଙ୍କୁ ବଢ଼ାଇ ଦେଇ ଆସନରେ ବସିଲେ । ରାଜା ଯଦୁମଣି ଦେଇଥିବା ପାଟକନା ବଣ୍ଡାରୁ ଦଶ ବାର ଖଣ୍ଡ କନା ଫିଟାଇଲେ । ପୁଣି ସେହିପରି ପରସ୍ତ ପରସ୍ତ ପାଟକନା ଗୁଡ଼ା ହୋଇଥିବା ଦେଖି ଭାବିଲେ ଯଦୁମଣି ମୋତେ ପ୍ରତାରିତ କରିବା ପାଇଁ ଏହା ମଧ୍ୟରେ କ'ଣ ରଖିଥାଇ ପାରେ । ଥାଉ···ଏହା ଭାବି ସେ କନାବଣ୍ଡା ଭୂମିରେ ରଖିଦେଲେ ।

ତାହା ଦେଖି ଯଦୁମଣି ଛିଡ଼ା ହୋଇ କପାଳରେ କରମାରି ରାଜାଙ୍କ ମନଭାବକୁ ଲକ୍ଷ୍ୟକରି ଉଚ୍ଚ କଣ୍ଠରେ ଗାଇଲେ—

ଅନ୍ଧ ଦେଶକୁ ଗଲି ଦର୍ପଣ ବିକି
କନ୍ଧ ହାତରେ ଦେଲି ଗୋଦାନ ଟେକି ।
ଜଡ଼ା ମଧୁରେ ଖଡ଼ା କଲି ରନ୍ଧନ
କାମୁଡ଼ା ଘୋଡ଼ା ମୁଖେ ଦେଲି ଚୁମ୍ବନ ।
ହେ ରାଜା କି କଲି କି କଲି
ବସ୍ତ୍ର ପ୍ରତିମାଙ୍କୁ ତଳେ ଥୋଇଲି ।

ଗୀତଟି ଗାଇଲା ପରେ କବି କନାବଣ୍ଡାଟି ଫିଟାଇ ସେଥିରୁ ପିତ୍ତଳ ବସ୍ତ୍ରୁ ପ୍ରତିମାଟିଏ ରାଜାଙ୍କୁ ଦେଖାଇଲେ । ପୁଣି କହିଲେ—

"ହେ ରାଜନ ! ଏ ବସ୍ତ୍ରୁ ପ୍ରତିମାକୁ ଜଳେ ଥୋଇଦେଲି ।"

ଯଦୁମଣିଙ୍କ ରଚନାର ଭାବ ବୁଝି ରାଜା କ୍ରୋଧ ହୋଇ ନୀରବ ରହିଲେ । ଯଦୁମଣିଙ୍କୁ କୌଣସି ଉତ୍ତର ଦେଲେ ନାହିଁ । ସଭା ଶେଷରେ ତାଙ୍କ ମୁଖକୁ ନଚାହିଁ ମହଲକୁ ଚାଲିଗଲେ ।

କବି ଦୀର୍ଘ ଦିନଯାଏ ରାଜାଙ୍କ ସାକ୍ଷାତ ପାଇଁ ଅପେକ୍ଷା କଲେ, କିନ୍ତୁ ରାଜାଙ୍କ ସାକ୍ଷାତ ପାଇଲେ ନାହିଁ । ଦୁଃଖ-କଷ୍ଟରେ ଚଳି କବି ମର୍ମାନ୍ତିକ ବେଦନାରେ ଅଥୟ ହୋଇ ତାଙ୍କର ନାତୁଣୀ ଜ୍ୱାଇଁ ବ୍ରଜବନ୍ଧୁଙ୍କ ହସ୍ତରେ କବିତାଟିଏ ଲେଖି ରାଜାଙ୍କ ନିକଟକୁ ପଠାଇଲେ । ରାଜା ସେହି କବିତାଟିକୁ ରାଜ ପଣ୍ଡିତଙ୍କୁ ଗାଇବାକୁ କହିଲେ ।

"ମଣିପଣି ଭାବରମଣୀ ଉଦ୍ଭବ ଧରଣୀ ଧର ପାରେଶ୍ୱର
ଦୁର୍ଗେଶ୍ୱର ବଜ୍ରଧର ବେଣୁଧର ନରେନ୍ଦ୍ର ମହାପାତ୍ରଙ୍କର
ରାଜେ ରାଜତ୍ତ୍ୱ, ବିରାଜେ ମହା ମହିମାରେ
ଥାନା ଫାଣ୍ଡି ଡଙ୍କା ବଡ଼ାଇ ପତାକା ଉଡ଼ଇ ନାହିଁ ସେ ସୀମାରେ । ୧ ।

ହରିଚନ୍ଦନ ଜଗଦ୍ଦେବ ନିଲକ୍ଷ ଟଙ୍କା ମୁଲକର ମାଲିକ
ସେ ହେଲେ ଗୃତକ ଧନ ଘନୋଦକ ବରଷୁ ଦୋଷଙ୍କ ଜନକ
ଅଣ୍ଡା ଭଜସେ, ମଣ୍ଡାଇଲେ ମୁଖେ ଏ ଗୀର,
ଖଣ୍ଡାଇତ ବଂଶେ ଭଣ୍ଡାର କଲେ ସେ ଧଣ୍ଡାବନ୍ଧ ରଣପୁରର । ୨ ।

ତାକୁ ତୁକ୍ତକର ଦେବାର ଇଚ୍ଛାକୁ ଶ୍ରୀଦେଉ କରିଛ ଅନେକ
ଦୁଃଖୀ ରଙ୍କି ଖାଂକ ଗୁଣୀ ଗୁଣବନ୍ତ ଜନେ ବରଷିଛ ଜନକ
ଯେଉଁ କାଳରେ, ଉତ୍କଳ ଦେଶେ ଛତ୍ରଭଙ୍ଗ
ସେ କାଳେ ତୁଡ଼ିକ ଫୁଲାଇ ତୁଣ୍ଡିକ ଟେକାଇ ଅଛ ଉତ୍ତମାଙ୍ଗ । ୩ ।

ଲକ୍ଷରଜ ରଜେ ଭୂମି ଭିନ ବାଣ୍ଟୀ ସେ ମୋର ପଡ଼ିଛି ବନ୍ଧାରେ
ଅଷ୍ଟପ୍ରାଣୀ ମୋର କଷ୍ଟ ପାଉଛନ୍ତି ପଡ଼ିଛି ମୁଁ ମହା ଧନ୍ଦାରେ
ମଣି ମଣିମା, ସରଳ ସରଳ ସଙ୍କଳ,
(ହାଙ୍ଗ) ହାଭୁଣୀ ବଲ୍ଲଭ ହାଲନୂଷରଣେ ନାଭୁଣୀ ବଲ୍ଲଭେ ପେଷିକ । ୪ ।

ଯଦୁମଣିଙ୍କ ପ୍ରଶଂସାପୂର୍ଣ୍ଣ ଓ ଶେଷରେ ନିଜର ଦୈନ୍ୟ ନୈରାଶ୍ୟଭରା କବିତାଟି ଶୁଣି ରଜା ସନ୍ତୋଷ ହୋଇ କବିଙ୍କୁ ସେହିଦିନ ରାଜସଭାକୁ ଡକାଇ ତାଙ୍କର ଅଭାବ ମୋଚନ ପାଇଁ ସାହାଯ୍ୟ ପ୍ରଦାନ କରିଥିଲେ ।

## ଧାରୀ କୁକୁର, ନାହାକ, ବୁଢ଼ା—

ନୟାଗଡ଼ ରାଜା ବିନାୟକ ସିଂହ ମାନଧାତାଙ୍କ ରାଜ ସଭାକୁ ପ୍ରତିଦିନ ଅର୍ଥ ସାହାଯ୍ୟ ଆଶାରେ ବହୁତ ଲୋକ ଆସୁଥାନ୍ତି । ଦିନେ ବ୍ରହ୍ମପୁରରୁ ଦୁଇଜଣ ବେଶ୍ୟା, ଖଲିକୋଟରୁ ଦୁଇଜଣ ନାହାକ, ଧୁମୁସରରୁ ଦୁଇଜଣ ବୃଦ୍ଧବ୍ୟକ୍ତି ସାହାଯ୍ୟ ପାଇବା ଆଶାରେ ରାଜାଙ୍କୁ ସାକ୍ଷାତ କରିବା ନିମନ୍ତେ ଦ୍ୱାରରକ୍ଷୀକୁ ଜଣାଇଲେ । ସେମାନେ ଅପେକ୍ଷା କରିଛନ୍ତି ଠିକ୍ ଏହି ସମୟରେ ଜଣେ କଣ ଲୋକ ଦୁଇଟି କୁକୁର ସଙ୍ଗରେ ନେଇ ପହଞ୍ଚିଲା, ରାଜାଙ୍କୁ ଦେଖା କରିବାକୁ । ଦ୍ୱାରୀକୁ ସମ୍ବାଦ ଦେଲା ଯେ ରାଜା ମୃଗୟା ନିମନ୍ତେ ଶିକାରୀ କୁକୁର ଆବଶ୍ୟକ କରୁଥିଲେ, ମୁଁ ଦୁଇଟି ଶିକାରୀ କୁକୁର ଆଣିଛି, ରାଜାଙ୍କୁ ଜଣାଇ ଦିଅ ।

ଦ୍ୱାରୀ ରାଜାଙ୍କ ସମ୍ମୁଖରେ ଯୋଡ଼ହସ୍ତ ହୋଇ ଏହି ଯୋଡ଼ି ଯୋଡ଼ି ହୋଇ ଆସିଥିବା ଆଗନ୍ତୁକମାନଙ୍କର ସମ୍ବାଦ ଦେଲା ।

ଏହି ଯୋଡ଼ି ଯୋଡ଼ି ସାକ୍ଷାତ କଥା ଶୁଣି ରାଜ ସଭାରେ ଉପସ୍ଥିତ ସଭାସଦ୍‌ମାନେ ହସି ହସି ଗଡ଼ିଗଲେ । ରାଜା ଚାହୁଁଥିଲେ ଜଣକ ପରେ ଜଣକୁ ସାକ୍ଷାତ ଦେବେ । ମାତ୍ର ରାଜ ପରିଷଦମାନଙ୍କର ଅନୁରୋଧ କ୍ରମେ ଯୋଡ଼ା ଯୋଡ଼ା ସାକ୍ଷାତ କରିବା ନିମନ୍ତେ ରାଜା ଆଦେଶ ଦେଲେ । ଠିକ୍ ଏତିକିବେଳେ ଯଦୁମଣି ମଧ୍ୟ ଆସି ସଭାରେ ଉପସ୍ଥିତ ହେଲେ ।

ପ୍ରଥମେ ବେଶ୍ୟା ଦୁହେଁ ପ୍ରବେଶ ହେଲେ । ସେମାନେ ନିଜ ନିଜର ପ୍ରାଧାନ୍ୟ ବଖାଣୁ ବଖାଣୁ କଳି କରି କରି ବଦାୟ ହୋଇଗଲେ । ରାଜାଙ୍କ ଠାରୁ କିଛି ଶୁଣିବା ପୂର୍ବରୁ ସେମାନେ କାନ୍ଦି କାନ୍ଦି ବିଦାୟ ହୋଇଗଲେ । ସେହିପରି ନାହାକ ଦୁହେଁ ପ୍ରବେଶ କଲେ । ସେମାନେ ପରସ୍ପର ମଧ୍ୟରେ ଯୁକ୍ତିତର୍କ କରି ଶେଷରେ ମାଡ଼ ମରାମରି ହେଲେ । ରାଜାଙ୍କୁ ବିଦାୟ ନ ମାଗି ଫେରିଗଲେ । ତାପରେ ଆଗନ୍ତୁକ ବୃଦ୍ଧ ଦୁହେଁ ପ୍ରବେଶ ହୋଇ ନିଜ ନିଜର ଦୁଃଖ ଜଣାଇ ଜଣେ ଅନ୍ୟର ଈର୍ଷା ପରାୟଣ ହୋଇ କଳହ କରି ବିଦାୟ ନେଇ ଚାଲିଗଲେ ।

ଶେଷରେ କନ୍ଧ ଲୋକଟି କୁକୁର ଦୁଇଟିକୁ ଧରି ସଭାମଧ୍ୟକୁ ପ୍ରବେଶ ହେଲା । କୁକୁର ଦୁଇଟିର ପରାକ୍ରମ ଦେଖାଇବା ନିମନ୍ତେ ବେକରୁ ବନ୍ଧାଥିବା ଶିକୁଳି ଖୋଲିଦେଲା । ଦେଖ ତାଙ୍କର ଲୀଳା । ପରସ୍ପରକୁ କାମୁଡ଼ା କାମୁଡି ହୋଇ ଶବ୍ଦରେ କମ୍ପାଇଲେ । କନ୍ଧ ଲୋକଟି କରେ ବା କ'ଣ କଳ ବଳ କୌଶଳ ପ୍ରୟୋଗ କରି କୁକୁର ଦୁଇଟିକୁ ଆୟତ କରି ସେ ସ୍ଥାନରୁ ବିଦାୟ ନେଲା ।

ଯଦୁମଣି ବସିରହି ଏସବୁ ଦୃଶ୍ୟ ଦେଖୁଥିଲେ । ରାଜା ଏକଲୟରେ ଯଦୁମଣିଙ୍କ ଆଡ଼କୁ ଚାହିଁଥାନ୍ତି ।

ଯଦୁମଣି ଗାଇବାକୁ ଲାଗିଲେ—

"ହାଘ କୁକୁର ନାହାକ ବୁଢ଼ା, ଲୁହନ୍ତି କେବେଁ ଯୋଡ଼ା ଯୋଡ଼ା,
ଯେବେ ହୁଅନ୍ତି ଯୋଡ଼ା ଯୋଡ଼ା, ଦେଖ ତାଙ୍କର ତଡ଼ା କାମୁଡ଼ା ।"

ରାଜା ଓ ସଭାସଦ୍‌ମାନେ ଯଦୁମଣିଙ୍କ ଠାରୁ ଏକଥା ଶୁଣି ହସି ହସି ଗଡ଼ିଗଲେ । ଯଦୁମଣି ରାଜାଙ୍କ ଠାରୁ ପୁରସ୍କାର ପାଇ ଗୃହକୁ ଫେରିଲେ ।

ଅଳପ ଟେକିଣ କାନୁ—

ଥରେ ଯଦୁମଣି, ସ୍ତ୍ରୀ ଖଞ୍ଜନା ଓ ଶାଳୀ ଝୁଂଟକମଣିକୁ ସାଙ୍ଗରେ ଧର ପୁରୀ ଜଗନ୍ନାଥ ଦର୍ଶନ ନିମନ୍ତେ ବାହାରିଲେ । ପୁରୀରେ ପହଞ୍ଚି ନରେନ୍ଦ୍ର ପୋଖରୀ କୋଣରେ ବସାଘର ନେଇ କିଛିଦିନ ରହିଲେ ।

ଦିନେ ଦିନେ ଦେବଦାସୀମାନେ ସେହି ବାଟ ଦେଇ ଯାଉଥାନ୍ତି । ସେମାନଙ୍କର ଠାଣି, ବୃଳି ଓ ରୂପସଜ୍ଜା ଦେଖିବା ପାଇଁ ଯଦୁମଣି, ଖଞ୍ଜନା ଓ ଝୁଂଟକମଣିଙ୍କୁ ଡ଼ାକିଲେ । ଏ ଦୁଇ ଭଉଣୀଙ୍କୁ ଦେଖି ଦେବଦାସୀମାନେ ମଧ୍ୟ ଅଟକି ଯାଇ ପରସ୍ପର ମଧ୍ୟରେ କଥାହେଲେ ।

ଏପରି ସମୟରେ ଜଣେ ଦେବଦାସୀ ଗୋବର ପୁଳାଏ କୁଢ଼ଦେଲ । ନିକଟରେ ପଡ଼ିଥିବା ବାଉଁଶ ଗୋଛରେ ଗୋଡ଼କୁ ଟେକି ଗୋବର ପୋଛିଲା । ଯଦୁମଣି ଏ ଦୃଶ୍ୟ ଦେଖି ସଙ୍ଗେ ସଙ୍ଗେ ଗାଇଲେ—

"ମାଉଁସ ହ'ପଳ ତନୁ
ବାଉଁଶ ଅଗରେ ଗୋଡ଼ ପୋଛିଦେଲା
ଅଳପ ଟେକିଣ କାନୁ ।"

ଏକଥା ଶୁଣି ଖଞ୍ଜନା ଓ ଝୁଂଟକମଣି ହସି ହସି ଗଡ଼ିଗଲେ । ସେହିପରି ଦେବଦାସୀମାନେ ମଧ୍ୟ ପରସ୍ପରକୁ ଧରାଧରି ହୋଇ ହସି ଉଠିଲେ । କିଛି ବାଟ ଯାଇ ପୁଣି ଦଳକଯାକ ଫେରିଆସି ଯଦୁମଣିଙ୍କୁ ଘେରିଗଲେ । କହିଲେ "ମହାଶୟ, ଆପଣଙ୍କ ଅନୁମାନ ସତ, ଆମେ ଲଜରେ ପରିଚୟ ଯାଉନଥିଲୁ । ଆପଣ ନିଶ୍ଚୟ ନୂଆଁଗଡ଼ର ଯଦୁମଣି ।"

ଯଦୁମଣି ହସିଦେଲେ । ଦେବଦାସୀମାନେ କବି, କବିପତ୍ନୀ ଓ ଝୁଂଟକମଣିଙ୍କୁ ସେଦିନ ସନ୍ଧ୍ୟାରେ ମନ୍ଦିରକୁ ଆମନ୍ତ୍ରଣ କରିଥିଲେ ସେମାନଙ୍କର ନୃତ୍ୟଗୀତ ଶୁଣିବା ପାଇଁ ।

## ଦେଖି ମଲ ହଳଦଆ—

ଯଦୁମଣିଙ୍କ ଇଟାମାଟି ଗ୍ରାମରେ ଜଣେ ତେଲି ମହାଜନ ଥିଲା । ସେ ଘୋର କୃପଣ । ପେଟକୁ ନ ଖାଇ କେବଳ ଧନସଞ୍ଚୟ କରିବା ତାର ପ୍ରଧାନ କାମଥିଲା । କେବଳ ମାଣ୍ଡିଆ ଜାଉ ଓ ଲୁଣ ଲଙ୍କାରେ ତାର ଦିନ ଚଳି ଯାଉଥିଲା । ଏପରିକ ଘରେ ତାର ସ୍ତ୍ରୀକୁ ମଧ୍ୟ ଅବିଶ୍ୱାସ କରୁଥିଲା, କାଳେ ତାକୁ ଲୁଚାଇ କରି ସ୍ତ୍ରୀ ଭଲମନ୍ଦ ଖାଇ ଦେଉଥିବ । ତେଣୁ ସ୍ତ୍ରୀ ଖାଇବାକୁ ଗଲେ ତାର ଖାଇବା ସରିବା ଯାଏ ସେ ଜଗି ରହୁଥିଲା ।

ସେ ତ ତେଲିପିଲା ମହାଜନ କାରବାର କରି ଲୋକଙ୍କ ଠାରୁ ପ୍ରଚୁର ପରିମାଣ ସୁଧ ଆଦାୟ କରେ । ଯଦୁମଣି ଅଭାବ ଯୋଗୁଁ ବଡ଼ ଅସୁବିଧାରେ ଚଳୁଥାନ୍ତି । କାରଣ ଦୁର୍ଭିକ୍ଷ ଯୋଗୁଁ ଫସଲ ନଷ୍ଟ ହୋଇ ଯାଇଥାଏ । ଯଦୁମଣି ତେଲି ମହାଜନକୁ ମନରେ ଘୃଣା କରୁଥିଲେ ହେଁ ଅଭାବେ ସ୍ୱଭାବ ନଷ୍ଟ । ତେଣୁ କିଛି ଟଙ୍କା ଉଧାର ଆଣିବା ପାଇଁ ତେଲି ମହାଜନର ଦ୍ୱାରସ୍ଥ ହେଲେ । ମହାଜନ ଉଧାର ବା କଣ ଦେବ ଓଲଟି ଯଦୁମଣିଙ୍କୁ ଗାଳିଦେଲା ।

ଯଦୁମଣି ରାଗିଗଲେ । ହେଲେ ସେ ବା କରିବେ କ'ଣ, ସାଧାରଣ ଲୋକେ ଗାଳିଦେଲା ଭଳି କ'ଣ ଗାଳି ଦେବେ କି, ସେଠାରୁ ନୀରବରେ ଫେରି ଆସିଲେ । ସଙ୍ଗେ ସଙ୍ଗେ ଘରକୁ ଆସି ଗୋଟିଏ ଗୀତ ମହାଜନଙ୍କ ନାମରେ ଲେଖି ସାହିର ବଗୁଲିଆ ଟୋକାମାନଙ୍କୁ ଶିଖାଇଦେଲେ ।

"ଘଣାରେ ଖାବଳ ଦଆ, ଜାଣ୍ଡ ସ୍ୱେତ ବଳଦଆ
ଘରଜାକୁ ବୋଲେ ଘରୁ ତୁ ଘରଯା ଦେଖି ମଲ ହଳଦଆ ।"

ପିଲାଏ ମହାଜନ ଯିବା ଆସିବା ବାଟରେ ଏ ଗୀତ ଗାଇଲେ । ମହାଜନ ଗ୍ରାମ ପିଲାଙ୍କ ଠାରୁ ଏ ଗୀତ ଶୁଣି ଲଜ୍ଜିତ ହେଲେ ଏବଂ ଜାଣିଲେ ଏ କାମ ନିଶ୍ଚୟ ଯଦୁମଣିର । ସେ ଦିନ ଯଦୁମଣିଙ୍କ ନିକଟକୁ

ଯାଇ ମହାଜନ କ୍ଷମା ମାଗିଲେ ଏବଂ ତାଙ୍କ ସହିତ ଉତ୍ତମ ସମ୍ପର୍କ ସ୍ଥାପନ କଲେ । ସେହିଦିନ ଠାରୁ ସମୟ ଅସମୟରେ ମହାଜନ ଯଦୁମଣିଙ୍କୁ ଧାର ଉଧାର ଦିଆନିଆ କରିଥିଲେ ।

## କେରଣ୍ଡି ରନ୍ଧିଅଛି ଦଶଇ ସ୍ୱଚ୍ଛ—

ଥରେ ଯଦୁମଣିଙ୍କ ପିଲାଦିନର ସାଙ୍ଗ ତାଙ୍କୁ ନିଜଘରକୁ ନିମନ୍ତ୍ରଣ କରିଥିଲେ । ଯଦୁମଣି ବନ୍ଧୁଙ୍କ ନିମନ୍ତ୍ରଣ ରକ୍ଷାକରି ଠିକ୍ ସମୟରେ ତାଙ୍କ ଘରେ ପହଞ୍ଚି ଗଲେ । ବନ୍ଧୁ ଯଦୁମଣିଙ୍କ ଆଗମନ ଦେଖି ବିଶେଷ ଆନନ୍ଦିତ ହୋଇଗଲେ । ଯଦୁମଣି ପରି ବନ୍ଧୁଙ୍କୁ ପାଇ ବହୁତ ସମୟ ପର୍ଯ୍ୟନ୍ତ କଥାବାର୍ତ୍ତା ହେଲେ । ଦୁଃଖସୁଖ କଥାହେବା ସମୟେ ବନ୍ଧୁପତ୍ନୀ ସେଠାରେ ଶୁଣୁଥାନ୍ତି । ଏପରିକି ସାଧାରଣ ବ୍ୟବହାର ଜଣାଇବା ପାଇଁ ଯଦୁମଣିଙ୍କ ପାଖକୁ ଆସିଲେ ନାହିଁ । ଯଦୁମଣି ବା କପରି ବନ୍ଧୁପତ୍ନୀଙ୍କୁ ଏକଥା ପ୍ରକାଶ କରିବେ ।

ଯଦୁମଣିଙ୍କ କଥା ସମସ୍ତଙ୍କୁ ଜଣା । କଥାରେ ସେ ବାପାଙ୍କୁ ମଧ୍ୟ ଛାଡିବା ଲୋକ ନୁହନ୍ତି । ଏଣୁ ବନ୍ଧୁପତ୍ନୀ ଅତି ସତର୍କରେ ଖେଷେଇବାସ କରୁଥାନ୍ତି । ମଃବାଧିକ ଭୟ ଯୋଗୁଁ ଯେଉଁ ହରଡ଼ ଡ଼ାଲି କରିଥିଲେ ତାହା ଭଲଭାବେ ସିଝି ନଥିଲା । ଏଣେ କେରଣ୍ଡି ମାଛ ଠୁକୁଠୁକାରେ ବେଶି ପାଣି ରହି ଯାଇଥିଲା ।

ବନ୍ଧୁପତ୍ନୀ ଯଦୁମଣିଙ୍କୁ ସାଧାରଣ ବ୍ୟବହାର ନ ଦେଖାଇବାରୁ ମନରେ ଟିକିଏ ରାଗ ଜନ୍ମିଲା । ଦୁହେଁ ଭୋଜନ କରିବା ପାଇଁ ବସିଲେ । ଯଦୁମଣି ସଙ୍ଗେ ସଙ୍ଗେ ବନ୍ଧୁଙ୍କ ଆଗରେ ବଡ଼ ପାଟିରେ ଗାଇବାକୁ ଆରମ୍ଭ କଲେ ।

"ଦନ୍ତେ ବାଜନ୍ତେ ଚୁଡ଼ୁମୁଡ଼ୁ ବାଜିଲା,
ଘୁଡ଼ୁ ଘୁଡ଼ୁ ବେଲରୁ ଓହ୍ଲାଇ ଥିଲା ।
ବଖଣ୍ଡି ଆଣିଥିଲା କେରଣ୍ଡି ମାଛ,
କେରଣ୍ଡୀ ରନ୍ଧାଅଛି ଦଶଇ ସ୍ୱଚ୍ଛ ।"

ବନ୍ଧୁପତ୍ନୀ କବିଙ୍କ ମୁଖରୁ ଏପରି ଗାଳି ଶୁଣି, ସେହିଦିନଠାରୁ ରେବତୀଙ୍କ ବାସରେ ବିଶେଷ ଯତ୍ନବାନ ହେବା ସଙ୍ଗେ ସଙ୍ଗେ ସାଧାରଣ ବ୍ୟବହାର ଶିକ୍ଷାଦେଲେ ।

## ଫୁଲପେଣ୍ଡା ପକାଇଦେଲି—

ବସନ୍ତ କାଳର ମଧୁ ଅପରାହ୍ଣ । ପ୍ରଶାନ୍ତ ରକ୍ତିମ ପୀଠରେ ଅସ୍ତଗାମୀ ଭାନୁ ବସି ତାଙ୍କର ସୁନେଲି କିରଣ ବିଛାଇ ଦେଉଥାନ୍ତି ନୟାଗଡ଼ ରାଜ ପ୍ରସାଦ ସମ୍ମୁଖସ୍ଥ ପୁଷ୍ପବାଟିକାର ବୃକ୍ଷଗୁଡ଼ିକ ଉପରେ । ନାନା ଜାତିର ପୁଷ୍ପମାନ ପ୍ରସ୍ଫୁଟିତ ହୋଇଥାନ୍ତି ଉଦ୍ୟାନରେ । ଭ୍ରମରମାନଙ୍କ ଗୁଞ୍ଜୁଗୁଞ୍ଜୁ ଶବ୍ଦସହ ଏ କୁସୁମରୁ ସେ କୁସୁମକୁ ଚୁମ୍ବନ ଦେଉଥାନ୍ତି । ମନ୍ଦ ମଳୟ ପୁଷ୍ପ ଗୁଡ଼ିକର ମିଳିତ ସୁଗନ୍ଧ ପରଶି ଯାଉଥାଏ ରାଣୀ ମହଲର ସାମନା କୋଠରୀ ମଧ୍ୟକୁ । ରାଣୀ ମୁକ୍ତ ବାତାୟନର ପଥଦେଇ ସମ୍ମୁଖସ୍ଥ ପ୍ରକୃତିର ଶୋଭା ଉପଭୋଗ କରିବାରେ ମଗ୍ନ । ପୁଣି ହାତରେ ଆଉ ଗୋଟିଏ ଫୁଲ ପେଣ୍ଡା ଧରି ବେଳେ ବେଳେ ତାର ସୁଗନ୍ଧ ଆଘ୍ରାଣ କରୁଥାନ୍ତି ।

ରାଣୀହଂସପୁର ସାମନାରେ ମଞ୍ଜୁଫୁଲବନ, ଆଉ ହଂସପୁର ଓ ଫୁଲବନର ଠିକ୍‌ମଝିରେ ରହିଥାଏ ଦୀର୍ଘ ଲମ୍ବ ପାଚେରୀ ସେହି ଫୁଲବନର ପାଚେରୀ କଡ଼କୁ ଥାଏ ଏକତ୍ରିତ ହୋଇ ଦୁଇଟି ବଟ ଓ ଅଶ୍ୱତ୍ଥ ବୃକ୍ଷ । ଗଛ ଦୁଇଟିର ପଲ୍ଲବଗୁଡ଼ିକ ଝଙ୍କାଳିଆ ହୋଇ ବେଶ୍ ସୁନ୍ଦର ଦେଖା ଯାଉଥାନ୍ତି । ସେହି ବରଓସ୍ତ ଦୁଇଟି ରାଣୀଙ୍କର ଶାଶୁ ଏକାଠି ଲଗାଇ ବିବାହ କରାଇଥିଲେ । ତାହା ବହୁତ ବର୍ଷରୁ ସେଠାରେ ରହିଛି । ସେ ଗଛ ଦୁଇଟି ଠିକ୍ ରାଣୀଙ୍କ ହଂସପୁରର ସାମନାରେ ।

ରାଣୀ ବାତାୟନ ପଥ ଦେଇ ଘୁରିବାକୁ ଦୃଷ୍ଟି ନିକ୍ଷେପ କରୁକରୁ ସେହି ବରଓସ୍ତ ଗଛକୁ ଲକ୍ଷ୍ୟକଲେ । ଗଛ ଦୁଇଟିର ଶାଖାମାନଙ୍କରେ ନାନା ପ୍ରକାର ପକ୍ଷୀମାନେ କୋଳାହଳ କ୍ରୀଡ଼ାରତ ଥାନ୍ତି । ପୁଣି ଗୋଟିଏ ଶାଖାରେ କ୍ରୀଡ଼ା କରୁଥିବା ଦୁଇଟି ବାନର ବାନରୀ ଦୁହେଁ ଡ଼ାଳକୁ ଡ଼ାଳ

ଲମ୍ଫ ଦେଉଥା'ନ୍ତି । କହୁଥାନ୍ତି ପୁଣି ଗେହ୍ଲାଇ ଚିତ୍କାର କରୁଥାନ୍ତି । ତାପରେ ସେମାନେ ରତିକାର୍ଯ୍ୟ ଆରମ୍ଭ କରିଦେଲେ । ତାହା ଦେଖି ରାଣୀଙ୍କ ମନ ଚଞ୍ଚଳ ହୋଇ ଉଠିଲା । ଅଙ୍ଗରେ ବେପଥୁ ସୃଜିଲା । ତନମନ ବେଳକୁବେଳ ଅଥୟ ହୋଇ ଉଠିଲା ମନ୍ମଥ ବାଣରେ । ସେ ପଲଙ୍କରୁ ଉଠି ବାତାୟନ ପାଖରେ ଦଣ୍ଡାୟମାନ ହୋଇ ସେହି ବାନର ବାନରୀ ପ୍ରୀତିକୁ ଅଥୟ ପୁଲକରେ ଚାହିଁ ରହିଲେ । ଜଣାତରେ କି ଅଜାଣତରେ କେଜାଣି ହସ୍ତସ୍ଥିତ ଫୁଲପେଣ୍ଡାଟିକୁ ବାରମ୍ବାର ପାପୁଲିରେ ନଚାଇବାରେ ଲାଗିଲେ ।

ସେତେବେଳକୁ ଫୁଲବନର ଏକ ବେଞ୍ଚ ଉପରେ ରାଜା ଓ କବି ଯଦୁମଣି ବସିଥିଲେ । କବି ବସନ୍ତ ଋତୁର ବର୍ଣ୍ଣନାକରି କବିତାମାନ ଗାନ କରୁଥାନ୍ତି । ରାଜା ମୁଗ୍ଧହୋଇ ତାହା ଶୁଣୁଥାନ୍ତି । ଯଦୁମଣି କବିତାମାନ ଗାନ କରୁକରୁ ସେହି ମାଙ୍କଡ଼ ଓ ମାଙ୍କଡ଼ୀଙ୍କ ରତିକ୍ରିୟା ପ୍ରତି ଦୃଷ୍ଟିପାତ କରିଥାନ୍ତି । ପୁଣି ରାଣୀ ଝରକା ପାଖରେ ସେହି ମାଙ୍କଡ଼ ମାଙ୍କଡ଼ୀଙ୍କ ପ୍ରୀତି ଦେଖି ଅଥୟ ଆବେଗରେ ଦଣ୍ଡାୟମାନ ହୋଇଛନ୍ତି । ସେ ଦୃଶ୍ୟ ମଧ୍ୟ କବି ଖୁବ୍ ସତର୍କତାର ସହିତ ଦେଖି ସାରିଥାନ୍ତି । ଏଣେ ବସନ୍ତର ବର୍ଣ୍ଣନା କରି ରାଜାଙ୍କ ହୃଦୟରେ ଆନନ୍ଦ ସୃଷ୍ଟି କରୁଥାନ୍ତି ।

ଏହି ସମୟରେ କାମ ବାଣରେ ପୀଡ଼ିତା ରାଣୀଙ୍କ ଦୃଷ୍ଟି ରାଜାଙ୍କପ୍ରତି ପଡ଼ିଲା । ସେ ହସି ହସି ରାଜାଙ୍କ ଉପରକୁ ଧରିଥିବା ଫୁଲପେଣ୍ଡାଟି ଫିଙ୍ଗିଦେଲେ ତାହା ରାଜାଙ୍କ ବକ୍ଷଦେଶରେ ପଡ଼ିଲା । ରାଜା ଫୁଲପେଣ୍ଡାଟି ଧରି ବାତାୟନ ପଥକୁ ଦୃଷ୍ଟିପାତ କଲେ । ସେ ଦେଖିଲେ ରାଣୀଙ୍କ ଚନ୍ଦ୍ରବଦନନିନ୍ଦିତ ସୁଷମ ମୁଖରେ ଅସୀମ ପୁଲକର ଢେଉ ଖେଳୁଛି । ଚକ୍ଷୁ ଦୁଇଟିରେ ସତେଯେପରି ଡ଼ାକିବାର ଇଙ୍ଗିତ ଫୁଟି ଉଠୁଛି । ଓଠରେ ମନ ଭୁଲାଣିଆ ହସ ରେଖା ପୂରି ରହିଛି । ସେତେବେଳେ ରାଣୀଙ୍କ ଦୃଷ୍ଟି ସହ ତାଙ୍କର ଦୃଷ୍ଟି ମିଶିଗଲା । ରାଣୀ ପୁଣି ମୃଦୁ ହସି ପଲଙ୍କରେ ବସିପଡ଼ିଲେ । ସେତେବେଳେ ରାଜା ଯଦୁମଣିଙ୍କୁ କହିଲେ—

“ମନେ କି ପାଞ୍ଚିଲା, ହସି ଫୁଲପେଣ୍ଡା ପକାଇ ଦେଲା ।”

ରାଜାଙ୍କର ପଦ୍ୟଶୁଣି ଯଦୁମଣି ଅଳ୍ପ ହସିଦେଲେ । ତାପରେ ରାଜାଙ୍କ ପଦ୍ୟକୁ ଉପଯୁକ୍ତ ଭାବେ ସଂଯୋଗ କରି ପଦ୍ୟଟିଏ ରଚନା କରି ଯଦୁମଣି ମଧୁର କଣ୍ଠରେ ଗାଇବାକୁ ଲାଗିଲେ—

"ବଟ ବୃକ୍ଷରେ ବାନରୀ ରତ ଦେଖି ବାନ୍ଧବୀର ବକଳ ଚିତ୍ତ
କାନ୍ତ ପ୍ରକାଶର ହେବା ବନ୍ଧନ ଚ୍ୟୁତ ପ୍ରଦାନେ ଯେଣୁ ଉଦ୍ୟତ
ମନେ ସେ ଇଚ୍ଛିଲା,
ହସି ଫୁଲପେଣ୍ଡା ପକାଇ ଦେଲା ।"

ଏହା ଗାଇସାରି ଯଦୁମଣି ଅଙ୍ଗୁଳି ନିର୍ଦ୍ଦେଶ ପୂର୍ବକ ବୃକ୍ଷରେ ରତି କ୍ରିୟାରେ ରତଥିବା ବାନର ବାନରୀଙ୍କୁ ଦେଖାଇ ଦେଲେ । ରାଜା ସମସ୍ତ ବିଷୟ ବୁଝି ଆନନ୍ଦିତ ହୋଇ ନିଜର କନିଷ୍ଠ ଅଙ୍ଗୁଳିର ସୁବର୍ଣ୍ଣ ମୁଦ୍ରି କାଢି ଯଦୁମଣିଙ୍କୁ ପ୍ରଦାନ କରି ତାଙ୍କୁ ବିଦାୟ ଦେଲେ । ସେତେବେଳକୁ ରାଜାଙ୍କ ଚିତ୍ତ ଓ ଅଙ୍ଗକୁ ମଦନ ବାଣ ଅଥୟ କରି ପକାଉଥିଲା । ସେ ହସି ହସି ରାଣୀହଂସପୁରକୁ ବିଜେକଲେ ।

## ମଣିମା ! ମୋହର କରମ ଗାରେ—

ଖଲିକୋଟ ନୃପ ଶ୍ରୀ ନାରାୟଣ ମର୍ଦ୍ଦରାଜ ଦେବ ନୂଆଁଗଡ଼ କବି ଯଦୁମଣିଙ୍କୁ ନୂଆଁଗଡ଼ରୁ ଆମନ୍ତ୍ରିତ କରି ନେଇଥାନ୍ତି । ରାଜା ଅତ୍ୟନ୍ତ ଧର୍ମପରାୟଣ, ପଣ୍ଡିତ, ସେ ଦୁଃଖୀର ଦୁଃଖ ଶୁଣନ୍ତି । ସେ ଦିନ ରାଜସଭାରେ ରାଜା, ମନ୍ତ୍ରୀ, ପଣ୍ଡିତଗଣ, ଆଗନ୍ତୁକ ଯଦୁମଣି ଓ ଅନ୍ୟାନ୍ୟ ସଭାସଦ୍‌ବୃନ୍ଦ ବସିଥାନ୍ତି । ଯଦୁମଣି ନାନାବିଧ ହାସ୍ୟ ରହସ୍ୟପୂର୍ଣ୍ଣ କାବ୍ୟ କବିତାମାନ ଗାନକରି ରାଜାଙ୍କୁ ତୃପ୍ତ କରି ଦେଇଥାନ୍ତି । ରାଜ ସଭା ଭଙ୍ଗହେବା ପୂର୍ବରୁ ରାଜା କବିଙ୍କୁ ପଚାରିଲେ "ଆଠଗଡ଼ ତ ତୁମର ଜନ୍ମସ୍ଥାନ । ସେଠାରେ ତୁମର ଭାଇଭାଇ ଅଛୁ, ତଥାପି ତୁମେ ଆଠଗଡ଼କୁ କାହିଁକି ଆସୁନାହଁ ? ଆଠଗଡ଼ ଆସିଲେ ଖଲିକୋଟକୁ ନିକଟ ହୁଅନ୍ତା, ତୁମେ ସହଜରେ ଖଲିକୋଟ ଆସି ପାରନ୍ତ । ବର୍ତ୍ତମାନ ତୁମେ ନୂଆଁଗଡ଼ରେ କିପରି ଚଳୁଛ ? କ'ଣ ଭଲରେ ଅଛତ ?"

କବି ଯଦୁମଣି ଦୁଃଖିତ କଣ୍ଠରେ ଗାଇଲେ—
"ମଣିମା ! ମୋହର କରମ ଗାରେ
ସ୍ନେହ ନ ଛୁଡ଼ିଲ କର ମଗାରେ ।"

ପଣ୍ଡିତ ରଜା କବିଙ୍କ କବିତାକୁ ଅର୍ଥ କରି—ଅର୍ଥାତ୍ ହେ ରାଜନ୍ ମୋର କର୍ମରେ ଦୁଃଖ ଲେଖାଅଛି । ମୋର ହାତ ମାଗିବାର ସ୍ନେହ ଛୁଡ଼ି ପାରୁନାହିଁ ।

ରାଜା ଦୟାପୂର୍ଣ୍ଣ ଚାହାଁଣିରେ କବିଙ୍କୁ କ୍ଷଣେ ଚାହିଁ ପାଞ୍ଚଶତ ରୌପ୍ୟ ମୁଦ୍ରା ତାଙ୍କୁ ପ୍ରଦାନ କଲେ । କବି ରାଜାଙ୍କୁ ବିଦାୟ ମାଗି ନିଜ ରାଜ୍ୟକୁ ଫେରିଲେ । ଫେରିବା ପୂର୍ବରୁ ରାଜା କହିଲେ, "କବି ଅଭାବ ଅସୁବିଧା ପଡ଼ିଲେ ମୋତେ ଜଣାଉଥିବ । ମୁଁ ତୁମର ଅସୁବିଧା ଦୂର କରିବାକୁ ଚେଷ୍ଟା କରିବି ।"

## ଆଠଗଡ଼ର ଏକାଧିକ ଭାବ—

ଆଠଗଡ଼ ବାଲୁଙ୍କେଶ୍ୱର ହରିଚନ୍ଦନ ଜଗଦେବ ଯଦୁମଣିଙ୍କ କାବ୍ୟ କବିତାକୁ ବିଶେଷ ସମ୍ମାନ ଦିଅନ୍ତି । ଥରେ ଯଦୁମଣି ରଜାଙ୍କ ଅନୁରୋଧ କ୍ରମେ ଆଠଗଡ଼ରେ ପହଞ୍ଚିଲେ । ରଜା ଯଦୁମଣିଙ୍କ ଆଗମନ ଜାଣି ବସା ଛଞ୍ଚାର ବ୍ୟବସ୍ଥା କରାଇ ଦେଲେ । ଯଦୁମଣି କିଛି ଦିନ ଆଠଗଡ଼ରେ ରହିଥିଲେ । ପ୍ରତିଦିନ ତାଙ୍କର ମଧୁର ଭାବମୟ କାବ୍ୟ କବିତା ରାଜ ସଭାରେ ଚର୍ଚ୍ଚା ହେଉଥାଏ । ଦିନେ ରଜା ବାଲୁଙ୍କେଶ୍ୱର ଯଦୁମଣିଙ୍କୁ ରାଜ ସଭାରେ କହିଲେ, "ମହାପାତ୍ରେ ! ଏକାଧିକ ଭାବପୂର୍ଣ୍ଣ ଗୋଟିଏ ସୁନ୍ଦର କବିତା ଏଠାରେ ଆପଣ ରହିବା ଅବସ୍ଥାକୁ ପ୍ରାଧାନ୍ୟ ଦେଇ ଆବୃତ୍ତି କରନ୍ତୁ ।"

ଯଦୁମଣି ରାଜାଙ୍କଠାରୁ ଆଦେଶ ପାଇ କିଛି ସମୟ ଚିନ୍ତାକରି ରଜାଙ୍କୁ ପରିଷ୍କାର କଲେ ଓ ଗାଇଲେ—

"ଯେଉଁଦିନୁ ଆମେ ଏଠାକୁ ଅଇଲୁ ସେହିଦିନୁ ହେଲା ଖଡ଼ା
ଲେମ୍ବୁ ନାରଙ୍ଗରେ ହାତ ନ ପଡ଼ିଲା, ଘାଇ ଖିଆ ହେଲା ଛଡ଼ା ।
ଆମ୍ବ କଦଳୀରେ କି ସୁଖ ମିଳିବ ଯେତ ଲୋଡ଼ୁଥାଏ ସାଥି
କହେ ଯଦୁମଣି କରମଙ୍ଗା ହେଲେ କିଛିହିଁ ରୁଚନ୍ତା ପଥି ।"

ସାହିତ୍ୟପ୍ରେମୀ ରସିକ ରାଜା ବାଲ୍ୟକେଶ୍ୱର ପ୍ରଥମ ଅର୍ଥ କଲେ—ଏଠାକୁ ଆସିବା ଦିନରୁ ମୋ' ବାସସ୍ଥାନ ନିକଟରେ ଲବ୍ଧାଙ୍ଗନା ଆଉ ବିଖଣ୍ଡି ଥାଇ ଅର୍ଥାତ୍ ଦୁର୍ବଳ କେତେଜଣ ଝଡ଼ାପଣ ଅଛନ୍ତି । ତାଙ୍କୁ ଦେଖି କିଛି ଲାଭ ନାହିଁ । ଯେଉଁ ନବ ବାଳାମାନେ ଅଛନ୍ତି, ସେହିମାନଙ୍କ ସ୍ତନର ଆକୃତି ଲେମ୍ବୁ ନାରଙ୍ଗ ସଦୃଶ୍ୟ କିନ୍ତୁ ସେମାନେ ଭାରି ଚଞ୍ଚଳା । ତାଙ୍କୁ ହାତ ଦେବା ଶକ୍ତି ନାହିଁ । ତେଣୁ ମଦନ ଜ୍ୱରରେ ଅନ୍ନ ଅରୁଚି ହେଉଛି । କ୍ଷମ୍ୱଆମ୍ବ ଓ କଦଳୀ ସଦୃଶ୍ୟ ଚଳକୁ ଖସିଥିବା ସ୍ତନ ଅର୍ଥାତ୍ ବେଶ୍ୟା ସଙ୍ଗରେ କି ଶାନ୍ତି ମିଳିବ । ସେଗୁଡିକ କେବଳ ସାଥି ହେବା କଥା । ଯଦୁମଣି କହୁଛନ୍ତି ରାଜାଙ୍କର ଶ୍ରୀକର ମଙ୍ଗଳାରେ ଯେଉଁ ସୁଶ୍ରୀ ବାଳା ଅଛନ୍ତି ସେଥିରୁ କିଏ ଯଦି ମୋର ଜ୍ୱରରେ ପଥି ହୁଅନ୍ତା ପରା ।

ରାଜା ଦ୍ୱିତୀୟ ଅର୍ଥ ଭାବ ପାଇଁ ଚିନ୍ତାକଲେ । ଆସିଲା ଦିନରୁ ଖଡ଼ା ତର୍କାରୀ ମିଳୁଛି । ଆଠଗଡ଼ରେ ମିଳିବା ଲେମ୍ବୁ, ନାରଙ୍ଗ କିଛି ମିଳୁନାହିଁ । ତେଣୁ ଭାତ ଖାଇବାକୁ ଅରୁଚି ହେଉଛି । ଆମ୍ବ କଦଳୀ ତ କେବଳ ମହୁର ରାନ୍ଧିବା ପାଇଁ, ଲୋଡ଼ା ହେବା ପଣିବା ମିଳୁନାହିଁ । ଯଦୁମଣି କହୁଛନ୍ତି କରମଙ୍ଗା ହେଲେ ପଥି ରୁଚନ୍ତା ।

ରାଜା ଭାବୁ ଭାବୁ ଖୁବ୍ ହସି ତାଳମାରି ଯଦୁମଣିଙ୍କୁ ଧନ୍ୟ ଧନ୍ୟ ମହାପାତ୍ରେ ବୋଲି କହିଲେ । ତାଙ୍କୁ ପାଟ, ପଥା ଓ ସ୍ୱର୍ଣ୍ଣ ମୁଦ୍ରିକା ମନ୍ତ୍ରୀଙ୍କୁ କହି ସଙ୍ଗେ ସଙ୍ଗେ ପୁରସ୍କାର ଦେଲେ ।

## ବଶି ପ୍ରହରାଜେ—

ଯଦୁମଣିଙ୍କ ଜନ୍ମମାଟି ଆଠଗଡ଼ । ତେଣୁ ଆଠଗଡ଼ର ମୋହ ଯଦୁମଣିଙ୍କ ହୃଦୟରେ ଉଙ୍କି ମାରୁଥାଏ । ତାଙ୍କର ଆଠଗଡ଼ରେ ଥିବା ଜମି ଓ ଘର ବିକ୍ରି କରିଦେଲେ ସୁଦ୍ଧା ଜ୍ଞାତି ବନ୍ଧୁ କୁଟୁମ୍ବଙ୍କ ସହିତ ସେ ସୁସମ୍ପର୍କ ରଖିଥାନ୍ତି । ଭୋଜି ଉତ୍ସବ କାର୍ଯ୍ୟରେ ଆହ୍ୱାନ ହେଲେ ସେ ନିଶ୍ଚିତ ଭାବେ ଆଠଗଡ଼ରେ ଜନ୍ମମାଟିକୁ ଆସି ମହା ଆନନ୍ଦରେ କଟାନ୍ତି । ସମୟେ ସମୟେ ମଥୁରାରେ ଥିବା ତାଙ୍କର ଜ୍ଞାତିମାନଙ୍କ ଘରକୁ ବୁଲିବାକୁ ଆସନ୍ତି ।

ଥରେ, ତାଙ୍କର ପିଯୂଷୀପୁଅ ଭାଇଙ୍କ ପୁଅର ବିବାହରେ ଯୋଗ ଦେବାକୁ ସେ ଆଠଗଡ଼ ଆସିଥାନ୍ତି । ବିବାହ ଭୋଜି ଖାଇସାରି ଦେଖିଲେ ଭୋଜିଘରେ ବେଶି ଗହଳ ଚହଳ ଲାଗି ରହିଛି । ତେଣୁ ସେ ନିଦ୍ରା କରିବା ନିମନ୍ତେ ବଶି ପ୍ରହରାଜଙ୍କ ଗୃହରେ ପହଞ୍ଚିଲେ । ସେତେବେଳକୁ ରାତି ପ୍ରାୟ ଦ୍ୱିପ୍ରହର ହୋଇଥାଏ । ଅମାବାସ୍ୟାର ଗହଳ ଅନ୍ଧାର ଚତୁର୍ଦ୍ଦିଗରେ ଘୋଟି ରହିଥାଏ । ମୁହଁକୁ ମୁହଁ ଦିଶୁ ନଥାଏ । ସେହି ସମୟ ଅନ୍ଧାରରେ ବଶି ପ୍ରହରାଜେ ଆସି ପହଞ୍ଚିଲେ । ସେ ଅନ୍ଧାରରେ ଯଦୁମଣିଙ୍କୁ ଚିହ୍ନି ନପାରି ପଚାରିଲେ, "ଆପଣ କିଏ ଯେ ।" ଯଦୁମଣି ହସି ହସି କହିପକାଇଲେ, "କିଏ ପ୍ରହରାଜେ ! ଏତେ ରାତି ଯାଏ କ'ଣ ଆଖଡ଼ା ଲାଗିଥିଲା କି ? ମୁଁ ଯଦୁମଣି ମହାପାତ୍ର ।"

ପ୍ରହରାଜେ କହି ଉଠିଲେ, ଆରେ ସାଙ୍ଗ କହେଁ, କେତେବେଳେ ଆସିଲ ? ଆସ ଆସ କହି ଯଦୁମଣିଙ୍କ ହସ୍ତଧରି ପ୍ରହରାଜେ ଦରଜା ମୁକ୍ତକରି ଘରଭିତରକୁ ନେଲେ । ତାପରେ କହିଲେ, "କବିସୂର୍ଯ୍ୟ, କବି ସମ୍ରାଟ ଓ ତୁମର ସଙ୍ଗୀତ ଆଜି ପିଲାମାନେ ରାଜାଙ୍କ ବରାଦ ଅନୁସାରେ ଗାଇବାରୁ ସମସ୍ତେ ଟିକିଏ ବସି ପଡିଥିଲୁ । ପିଲାଏ ଗାଉ ଗାଉ ରାତି ହୋଇଗଲା । ରାଜା ତ ଏକ୍ଷଣି ନଅରକୁ ବିଜେକଲେ । ମୁଁ ଏଣେ ଆସିଲି, ଶିଷ୍ୟ ପିଲାଏ ଆସୁଛନ୍ତି । ତୁମର ଭୋଜନ ସରିନାହିଁ ତ ? ଆସ ଆମର ଏଠି ଭୋଜନ କରିବା । ପରେ ବସି ଦୁଃଖ ସୁଖ ହେବା ।

ଯଦୁମଣି କହିଲେ, "ନା,ହିଁ ପିସୁଣୀପୁଅର ପୁଅ ପୁତୁରା ହାତର ବିବାହ ଭୋଜରେ ମୋର ଖାଇବା ସରିଛି । ତୁମେ ଯାଅ ଭୋଜନ କର ।" ପ୍ରହରାଜେ ଅନଙ୍ଗୁଳିରୁ ମଠାଆଣି ପାଲଟୁଥାନ୍ତି । ସେତେବେଳେ ଯଦୁମଣି ଦେଖିଲେ ସଙ୍ଗୀତ ଆଖଡ଼ାରୁ ବାହୁଡ଼ ଧରି ବେଠିଆ ବାହାରିଲେ । ତା' ପଛରେ ଶିଷ୍ୟ ପିଲମାନେ ବାହାରିଲେ । ସମସ୍ତେ ରାଜମାର୍ଗରେ ଚାଲିଲେ । କବି ଭାବିଲେ ରାଜାଙ୍କ ସଙ୍ଗୀତ ଆଖଡ଼ାରୁ ବଶିଷ୍ଟ ଗୁରୁଦେବ ଅନ୍ଧାରରେ ଆସିଲେ, କିନ୍ତୁ ଶିଷ୍ୟମାନେ ବେଠିଆର ବାହୁଡ଼ ଆଲୋକରେ ଆସିଲେ । କି ବିଚିତ୍ର କଥା ଏ । ଭାବୁ ଭାବୁ ସେ ହସିଦେଇ ବଶି ପ୍ରହରାଜଙ୍କୁ ଚାହିଁ ଗାଇଲେ—

"ଧନ୍ୟ ଆଠଗଡ଼ ଲୀଳାରେ
ବଶି ପ୍ରହରାଜେ ଅନ୍ଧାରେ ଆସନ୍ତି
ଚାକରଙ୍କ ଆଗେ ହୁଳାରେ ।"

ଏହାଶୁଣି ପ୍ରହରାଜେ ଅଳ୍ପ ହସିଦେଇ ଭୋଜନକୁ ଚାଲିଗଲେ । ଭୋଜନାନ୍ତେ ଫେରିଆସି ଯଦୁମଣି ଓ ପ୍ରହରାଜେ ପିଣ୍ଡାରେ ବସି ତାମ୍ବୁଳ ଭକ୍ଷଣ କରି କଥାବାର୍ତ୍ତା ହେଲେ ।

## କ୍ଷୀରୋଦ୍ର ମଠା ଓ ଶାଢ଼ୀ—

ନୟାଗଡ଼ ରାଜା ଦିନେ ରାଜ ସଭାରେ ଯଦୁମଣିଙ୍କୁ କହିଲେ, "ଯଦୁମଣି ବଜାରକୁ ଉତ୍ତମ କ୍ଷୀରୋଦ୍ର ମଠା ଓ ଶାଢ଼ୀ ବିକା ଆସିଛି ବୋଲି ମୁଁ ଶୁଣିଲି, ଆପଣ ଯାଇ ହଳେ ଭଲମଠା ଓ ରାଣୀଙ୍କ ପାଇଁ ଗୋଟିଏ ଶାଢ଼ୀ ନେଇ ଆସ । ପାତ୍ରଙ୍କ ଠାରୁ କିଛି ଟଙ୍କା ନିଅ । ଯେତେ ଟଙ୍କା ନିଅଣ୍ଟ ହୁଏ ପଛର ଦିନ ମଧ୍ୟରେ ଦେବାକୁ କହି ଆସିବ । ବଳକା ହେଲେ ଫେରାଇ ଆଣିବ । ଯଦୁମଣି ରାଜାଙ୍କ ଆଦେଶ ପ୍ରକାରେ ବଜାରକୁ ଯାଇ ବ୍ୟବସାୟୀ ଠାରୁ ସୁନ୍ଦର ମଠା ଏକହଳ ଓ ଶାଢ଼ୀ ଗୋଟିଏ କିଣିଲେ । ପ୍ରକୃତରେ ଯାହା ଦାମ ତାର ଅଧା ଟଙ୍କା ପାତ୍ରଙ୍କ ଠାରୁ ଯଦୁମଣି ନେଇଥିଲେ । ସେହି ଟଙ୍କା ବେପାରୀକୁ ଦେଇ ଆଉ ଅଧା ଟଙ୍କା ପନ୍ଦର ଦିନ ମଧ୍ୟରେ ଦେବାକୁ

କହି ଫେରିଲେ । ରାଜା ଯଦୁମଣିଙ୍କ ଠାରୁ ମଠା ଓ ଶାଢ଼ୀ ନେଇ କହିଲେ, "ସୁନ୍ଦର ମନଲାଖି ହୋଇଛି । ବେଶ୍ ବାଛିଛ ମହାଶୟେ ।" ଯଦୁମଣି କହିଲେ ପ୍ରଭୁ ! ପନ୍ଦର ଦିନ ମଧ୍ୟରେ ଅଧା ଟଙ୍କା ଦେବାକୁ ହେବ ।, ଏହା ଶୁଣି ରାଜା କହିଲେ, "ତୁମ ଇଟାମାଟିରେ ଆମର ଯେଉଁ ଆମ୍ବତୋଟା ଅଛି ତାହାକୁ ଜଗାଳି ଜଗାଇ ରଖ, ସେହି ଆମ୍ବ ତୁମେ ପାହିଦ୍ୱାରା ବିକ୍ରି କରି ଜଗାଳିର ମୂଲ, ମଠା ଓ ଶାଢ଼ୀର ଅବଶିଷ୍ଟ ମୂଲ୍ୟ ଦେବ । ଉଦ୍ଧ ଟଙ୍କା ବଳକା ହୁଏ ତାହା ରାଜକୋଷରେ ରଖିବ ।

ଆମ୍ବତୋଟାର ଦାୟିତ୍ୱ ଯଦୁମଣି ବହନ କଲେ । ସେ ଜଗୁଆଳକୁ ଜଗାଇଥାନ୍ତି । ତଥାପି ବେଳେବେଳେ ପାଚିଲା ଆମ୍ବ ନିଜର ବ୍ୟବହାରକୁ ଘରକୁ ନିଅନ୍ତି ଓ ସାଙ୍ଗସାଥିମାନଙ୍କୁ କେତେବେଳେ କେମିତି ଗୋଟାଏ ଦୁଇଟି ଦେଉଥାନ୍ତି । ପନ୍ଦର ଦିନ ପରେ ପାହିଦ ଯଦୁମଣିଙ୍କର ଏହି ଆମ୍ବଖିଆ ଓ ବଣ୍ଟା ଦେଖି ରାଗିଯାଇ ରାଜାଙ୍କୁ ଏ ଖବର ଜଣାଇଲେ । ରାଜାମଧ୍ୟ ଯଦୁମଣିଙ୍କୁ ଡ଼ାକି ଏପରି ବିନା ଆଦେଶରେ ଆମର ଖର୍ଚ୍ଚ ହେବାର ଘଟଣା ପଚାରିଲେ । ଯଦୁମଣି ସଙ୍ଗେ ସଙ୍ଗେ ରାଜାଙ୍କ ଆଗରେ ଗାଇବାକୁ ଲାଗିଲେ

"ମୋ ଠାରେ ଦୟା କା ଠାରେ ନାହିଁ
ଠୋ, ଠୋ ଉପବାସ କରି ନୁହଇ
ମଠା ବିକିବାରୁ ତୋଟା ଅଧିକାର
କହି ନୁହେ ଦୁଃଖେ ନିଶି ବାସର
ଫଟା କପାଳରେ,
ସୋ ଠା ଯା ଲେଖିଲା ବିହି ମୋଠାରେ ।"

ରାଜା କବିତା ଶୁଣି ପାହିଦଙ୍କ ଠାରୁ ମଠା ଓ ଶାଢ଼ୀର ବାକିଥିବା ସମସ୍ତ ଟଙ୍କା ବ୍ୟବସାୟୀଙ୍କୁ ଦେଇଦେଲେ । ଜଗାଳିଆ ମୂଲ ମଧ୍ୟ ଦେଲେ । ସେହିଦିନ ଠାରୁ ଇଟାମାଟିର ଆମ୍ବତୋଟା ଯଦୁମଣିଙ୍କୁ ପୁରସ୍କାର ରୂପେ ଦିଆଗଲା ।

## ଆସିକାରେ ଯଦୁମଣି—

ଆସିକା ଠାରେ ଗୋଟିଏ କବି ସମ୍ମିଳନୀ ହୋଇଥିଲା । ରାଜ୍ୟର ବିଭିନ୍ନ ସ୍ଥାନରୁ ବିଭିନ୍ନ କବି ଆସି ଯୋଗ ଦେଇଥିଲେ । ସେତେବେଳେ କାଶୀ ମିଶ୍ରେ ସେହି ଅଞ୍ଚଳର ଏକ ବିଶିଷ୍ଟ କବିଥିଲେ । କାଶୀ ମିଶ୍ରେ ସଭାରେ ପହଞ୍ଚିଲା ବେଳକୁ ଟିକିଏ ଡେରି ହୋଇଗଲା । ଯଦୁମଣି ମିଶ୍ରଙ୍କୁ ନ ଦେଖି ଭାରି ବ୍ୟସ୍ତ ହୋଇଥିଲେ । ହଠାତ୍ ମିଶ୍ରେ ଆସି ପହଞ୍ଚିଗଲେ । କାଶୀ ମିଶ୍ରେ ସଭାରେ ପହଞ୍ଚୁ ପହଞ୍ଚୁ କହିଲେ—"ହସି କାଶୀ ମିଶ୍ରେ ଆସି ସଭାମଧ୍ୟେ ବସିଲେ ।"

ଯଦୁମଣି କହିଲେ ଏ ହେଲାନାହିଁ । ଅନ୍ୟମାନେ ଯଦୁମଣିଙ୍କୁ ଅନୁରୋଧ କଲେ କହିବାକୁ । ଯଦୁମଣି କହିଲେ —

"ଆସିକାବାସୀ ଶିବଙ୍କୁ ଶଶୀମସୀ ଘଷିଲେ
ହସି କାଶୀ ମିଶ୍ରେ ଆସି ସଭା ମଧ୍ୟେ ବସିଲେ ।"

ଏଠାରେ ଶଶୀମସୀର ଅର୍ଥ କର୍ପୂର । ସଭସାରା ହସର ଜୁଆର ଖେଳିଗଲା ।

## ବସନ୍ତରୀ ବସେ—

ଯଦୁମଣିଙ୍କର ଜଣେ ବାରିକ ସାଙ୍ଗ ଥାଏ । ଯଦୁମଣି ଯେଉଁଠାକୁ ଯାଆନ୍ତି ବାରିକ ସାଙ୍ଗରେ ଯାଏ । କିନ୍ତୁ ବସିଲାବେଳେ ଯଦୁମଣିଙ୍କ ଠାରୁ କିଛି ଦୂରରେ ବସେ । ସେ ସବୁବେଳେ ହଳଦିଆ ଲୁଗା ପିନ୍ଧିବା ବାରିକର ଏକ ପ୍ରକାର ଅଭ୍ୟାସ । ଗୋଟିଏ ସଭାରେ ଜଣେ ପ୍ରଶ୍ନକଲେ ଇଏ କିଏସେ ?

ଯଦୁମଣି ଉତ୍ତର ଦେଲେ —

"ବସନ୍ତ ମାସେ ବସନ୍ତ ପାଶେ, ବସନ୍ତ ବାସେ ବସନ୍ତରୀ ବସେ ।"

ବସନ୍ତ ଅର୍ଥାତ୍ ଫାଲ୍‌ଗୁନ ମାସରେ ହଳଦିଆ ଲୁଗା ସହିତ 'ବସନ୍ତରୀ' ଅର୍ଥାତ୍ ବସନ୍ତରୀ ବାରିକ ମୋ ପାଖରେ ବସେ ।

**ବାଡ଼ ଲାଗିଛି—**

ଥରେ କବି ଇଚ୍ଛାମାଟିରୁ ମାମୁଁଘର ରଣପୁରକୁ ଯାଉଥିଲେ । ସୁନାଖଳାରେ ପହଞ୍ଚି ଦେଖିଲେ ଯେ ହଇଜା ଲାଗିଛି, ଆଉ ଆଗକୁ ଯାଇ ପାରିବେ ନାହିଁ । ଏଣେ ସୁନାଖଳାଠାରେ ମଧ୍ୟ ଲୋକେ ତାଙ୍କୁ ଯିବାପାଇଁ ମନା କରିଦେଲେ ।

ଯଦୁମଣି ବାଧହୋଇ ଘରକୁ ଫେରିଲେ । ତାଙ୍କୁ ଫେରିବା ଦେଖି ଲୋକେ ପଚାରିଲେ, ମହାପାତ୍ରେ କାହିଁକି ଫେରି ଆସିଲ ?

ଯଦୁମଣି ଉତ୍ତର ଦେଲେ —

"ମାଣକର ଜ୍ୟେଷ୍ଠଭ୍ରାତା ବିଲୋମ କର
ବିଜେ କରିଛନ୍ତି ସେ ରଣପୁର ।"

ଅର୍ଥାତ୍ ମାଣକର ଜ୍ୟେଷ୍ଠଭ୍ରାତ ହେଲା 'ଡ଼ବା' । ଡ଼ବାକୁ ବିଲୋମ କଲେ ହେବ 'ବାଡ଼' ରଣପୁରରେ ହଇଜା ବା ବାଡ଼ ଲାଗିଛି ତେଣୁ ଫେରି ଆସିଲି ।

**କଳାଇକି ଯିନା ବଳାଇ ଧଇଲା—**

ତିଗିରିଆ ରାଜା ଚମ୍ପତି ସିଂହଙ୍କର ପାଟମହାଦେଈଙ୍କର ମୃତ୍ୟୁହେଲା । ରାଜା ବୃଦ୍ଧ ବୟସରେ ଦ୍ୱିତୀୟ ବିବାହ କଲେ । ସେତେବେଳେ ରାଜକନ୍ୟା ରତ୍ନମାଳୀ ବିବାହ ହୋଇ ସାରିଥିଲେ । ରାଜା ଯେଉଁ ଦ୍ୱିତୀୟ ପତ୍ନୀ ଗ୍ରହଣ କଲେ ତାଙ୍କର ନାମ 'କଳାବତୀ' ।

ନୂତନ ରାଣୀ କଳାବତୀ ବୃଦ୍ଧରାଜାଙ୍କୁ ହଇରାଣ କରୁଥାନ୍ତି । ରାଜା ରାଣୀଙ୍କ ମନ ସନ୍ତୋଷ କରିବାପାଇଁ ଯୁବକପରି ଅଭିନୟ କରୁଥାନ୍ତି । ମାତ୍ର କାର୍ଯ୍ୟରେ ସଫଳ ହେଉ ନଥାନ୍ତି । ଏ ମଧ୍ୟରେ ଯଦୁମଣିଙ୍କ ସହିତ ରାଜାଙ୍କର ଦେଖା ହେଲା । ରାଜା ଯଦୁମଣିଙ୍କୁ ଗୁପ୍ତରେ ସମସ୍ତ କଥା କହିଲେ ।

ଯଦୁମଣି ଲକ୍ଷ୍ୟକଲେ କଳାବତୀ ରାଜଯୋଗ୍ୟା ନୁହନ୍ତି, ମାତ୍ର ଜଣେ ସାମନ୍ତ କନ୍ୟା, ପୁଣି ଉତ୍ତମ ଚରିତ୍ରଶୀଳା ନୁହନ୍ତି । ଏଣୁ ଯଦୁମଣି କଳାବତୀଙ୍କୁ ଶୁଣାଇ ପଦେ ଗୀତ ଗାଇଲେ—

"କଳାଇକି ସିନା ବଳାଇ ଧରିଲି ଗୃହୁଁ ଛୁଟି ଏଣିକି ତେଣିକି,
ଯୁବାକାଳେ ଯାହା ଦେଖା ତ ନଥିଲି ମହଣ ହେ ଇଚ୍ଛି ଏଣିକି ।"

ଯଦୁମଣିଙ୍କ ମୁଖରୁ ଏପରି ସମାଲୋଚନା ମୂଳକ ଗୀତଶୁଣି କଳାବତୀଙ୍କ ଚରିତ୍ର ସଂଶୋଧନ ହୋଇ ପାରିଥିଲା । ସେ ସେହିଦିନ ଠାରୁ ରାଜାଙ୍କ ସହିତ ମନ ମିଶାଇ ଚଳିବାକୁ ଲାଗିଲେ ।

## ଶ୍ରେଷ୍ଠ ଶିରୋମଣି ଯଦୁମଣି—

ନୟାଗଡ଼ ରାଜା ବିନାୟକ ସିଂହ ମାନଧାତାଙ୍କ ମୃତ୍ୟୁପରେ ଯଦୁମଣି ଅସହାୟ ହୋଇ ବିଭିନ୍ନ ରାଜା ମହାରାଜାଙ୍କ ଦ୍ୱାରସ୍ଥ ହୋଇଥିଲେ ପରିବାର ଭରଣ ପୋଷଣ ପାଇଁ । ଯାଉ ଯାଉ ଅନୁଗୁଳ ରାଜ୍ୟରେ ସେ ପହଞ୍ଚିଲେ । ସେତେବେଳେ ଅନୁଗୁଳରେ ସୋମନାଥ ଜଗଦେବ ଶାସନ କରୁଥାନ୍ତି । ସେ ଭାରି ଅତ୍ୟାଚାରୀ ଥିଲେ । ତଥାପି ଜ୍ଞାନୀ ପଣ୍ଡିତମାନଙ୍କୁ ରାଜସଭାରେ ଆଦର ଅଭ୍ୟର୍ଥନା ଜଣାନ୍ତି । କିନ୍ତୁ ପଣ୍ଡିତମାନଙ୍କୁ ଉପହାର ଦେଇ ଘାଟି ରାସ୍ତାରେ ଖଣ୍ଡ ବନ୍ଧୁକମାନଙ୍କ ଦ୍ୱାରା ଅପହରଣ କରି ନେଇ ଯାଆନ୍ତି । ମଣିଷମାନଙ୍କୁ ମାରିବା ତାଙ୍କ ପକ୍ଷେ କଷ୍ଟ ସାଧ୍ୟ ନଥିଲା । ପ୍ରଜାମାନଙ୍କୁ ଶୋଷଣ କରିବା ଓ ଅତ୍ୟାଚାର କରିବା ରାଜା ସୋମନାଥଙ୍କର ପ୍ରଧାନ କର୍ମ ।

ଯଦୁମଣି ଅନୁଗୁଳ ରାଜସଭାରେ ପହଞ୍ଚିଲେ । ଦୀର୍ଘଦିନ ଧରି ସାହିତ୍ୟ ଚର୍ଚ୍ଚା ଓ ଆଲୋଚନା ହେଲା । ରାଜା ଖୁସି ହୋଇ ବହୁ ଧନରତ୍ନ ଉପହାର ଦେଲେ । ତା ପରଦିନ ଯଦୁମଣି ନିଜ ଗୃହକୁ ଫେରିବା ସ୍ଥିର ହେଲା ।

ଯଦୁମଣିଙ୍କୁ ପୁରୁଣା ରାଜଧାନୀସ୍ଥ ଜଗନ୍ନାଥ ମନ୍ଦିରରେ ରହିବାପାଇଁ ବସା ଦିଆଯାଇଥାଏ । ରାତିପାହି ସକାଳ ହେଲା ମାତ୍ର ଯଦୁମଣି ଶେଯରୁ ଉଠିଲେ ନାହିଁ । ପଣ୍ଡାମାନେ ଠାକୁରଙ୍କ ମୁହଁ ବଡ଼ାଇବା ପାଇଁ ଆସି ପହଞ୍ଚିଲେ । ଦ୍ୱାର ବାଡ଼େଇ ଡାକିଲେ ମାତ୍ର ଯଦୁମଣି ଉଠିଲେ ନାହିଁ । ପଣ୍ଡାମାନେ ଏକଥା ରାଜାଙ୍କୁ ଜଣାଇଲେ । ରାଜା ସେତେବେଳକୁ ଜାଣିଲେଣି ଯେ ଯଦୁମଣି ଅନୁକୂଳ ଗୁଡ଼ନାହାନ୍ତି । କାରଣ ଚରମାନେ ଯଦୁମଣିଙ୍କ ପଥ ଚୁହିଁ ଚୁହିଁ ହରାଶ ହୋଇ ଫେରି ଆସି ରାଜାଙ୍କୁ ଖବର ଦେଇଛନ୍ତି ।

ରାଜା କ୍ରୋଧରେ ଥର ଥର ଯାଇ ମନ୍ଦିର ନିକଟରେ ପହଞ୍ଚିଲେ । ରାଜା ଦ୍ୱାର ପାଖରେ ପହଞ୍ଚି ଗୋଡ଼ ବାଡ଼େଇ ଗର୍ଜ୍ଜନ କଲେ । ଯଦୁମଣି ଆଖି ମଳି ମଳି କବାଟ ଫିଟାଇ ରାଜାଙ୍କୁ ସମ୍ମାନ ଜଣାଇ କହିଲେ, "ଆହା, କି କର୍ମ କଲି, ମୋର ଏ କି ଦୁର୍ଭାଗ୍ୟ ଯେ ମୁଁ ତୁମକୁ ଏ ପର୍ଯ୍ୟନ୍ତ ବାଟେ କରାଇଲି । କାଲି ବଡ଼ କ୍ଲାନ୍ତ ହୋଇ ପଡ଼ିଥିଲି ମଣିମା ! ନିଦ୍ରାରେ ଅସାଷ୍ଟ ହୋଇ ପଡ଼ିଥିଲି । ହେଲେ ଏକ ଆଚମ୍ବିତ କଥା, ମୁଁ ସିନା ଅଜ୍ଞାନ ହୋଇପଡ଼ିଲି, ହେଲେ ଠାକୁର କ'ଣ ଅଜ୍ଞାନ ହୋଇ ଶୋଇ ପଡ଼ିଥିଲେ ? ଠାକୁରଙ୍କ ଚାକର ମୁଁ । ମନ୍ଦିରରେ ରହିବା ମୋର ଅଭ୍ୟାସ । ସବୁଠି ଯେପରି ଦିଅଁ ମୋତେ ସକାଳୁ ଉଠାଇ ଦିଅନ୍ତି, ମୋତେ ସେମିତି ଏଠାରେ ଠାକୁର ଉଠାଇ ଦେବେ, ଏହି ବିଶ୍ୱାସ ମୋର ଥିଲା ।"

ରାଜା କିଛି ବୁଝିପାରିଲେ ନାହିଁ । ପଚାରିଲେ, କିଏ ତୁମେ କ'ଣସବୁ କହୁଛ । ଠାକୁର କେବେ କେଉଁଠି କଥା କୁହନ୍ତି ?

ହଁ, ଆଜ୍ଞା ! ମୁଁ ପ୍ରମାଣ ଦେଇଦେବି । ଆମ ରାଜ୍ୟରେ ଠାକୁରଙ୍କ ନାଁ ଧରି ଡାକିଲେ ସେ ଉତ୍ତର ଦେବେ 'ଓ' ବୋଲି କହିବେ ।

ରାଜା ଓ ଅନ୍ୟାନ୍ୟ କର୍ମଚାରୀମାନେ ଏ କଥାର ପ୍ରମାଣ ଜାଣିବା ପାଇଁ ଆଗ୍ରହୀ ହେଲେ । ଯଦୁମଣି ମଧ୍ୟ ବୁଝାଇଦେଲେ, ଆପଣମାନେ ପରୀକ୍ଷାଦେଇ ସାରିଲାପରେ ପ୍ରକୃତ ପ୍ରଣାଳୀରେ ମୂର୍ତ୍ତିଗଢ଼ି ଏଠାରେ ପ୍ରତିଷ୍ଠା କରିଦେବି । ତାହା ଫଳରେ ଆପଣମାନେ ମଧ୍ୟ ସମୟ ଅସମୟରେ ଦେବତାଙ୍କ ସହିତ କଥାବାର୍ତ୍ତା ହୋଇ ପାରିବେ ।

ରାଜ୍ୟର ମନ୍ତ୍ରୀ ଓ ଅନ୍ୟ ଜଣେ ବିଶିଷ୍ଟ ଲୋକ ହାତୀରେ ବସି ଯଦୁମଣିଙ୍କ ସହିତ ନୟାଗଡ଼ ବାହାରିଲେ । ଯଦୁମଣି ରାଜାଙ୍କ ଠାରୁ ପାଇଥିବା ସମସ୍ତ ଜିନିଷ ନିରାପଦରେ ସାଥିରେ ଧରି ହାତୀ ପିଠିରେ ଚଢ଼ିଲେ । ଅତି ସହଜରେ ଯଦୁମଣି ରାଜଖଣ୍ଡମାନଙ୍କ କବଳରୁ ରକ୍ଷାପାଇ ନୟାଗଡ଼ରେ ପହଞ୍ଚିଲେ ।

ମନ୍ତ୍ରୀ ଓ ରାଜକର୍ମଚାରୀଙ୍କୁ ନୟାଗଡ଼ ରାଜ୍ୟ ବୁଲାଇ ଦେଖାଇ ଦେଲେ । ନିଶୂନ ରାତିରେ ପରୀକ୍ଷା କରି ଦେଖାଇ ଦେବାପାଇଁ ସେମାନଙ୍କୁ ଧରି ମନ୍ଦିର ନିକଟକୁ ଗଲେ । ମନ୍ଦିର ନିକଟରେ ଠାକୁରଙ୍କ ସେବକମାନଙ୍କ ଘର । ଯଦୁମଣି ଦୁଆରେ ଠିଆହୋଇ ମନ୍ଦିରକୁ ଉଦ୍ଦେଶ୍ୟ କରି ଡ଼ାକ ପକାଇଲେ—"ଆହେ ଦେବତା, ଶୁଣୁଛ ନା ନାହିଁ ।"

ସେବକ ସାହି ମଧ୍ୟରୁ ଦେବତା ସଙ୍କାଧାରୀ ଜଣେ ସେବକ ଉତ୍ତର ଦେଲେ ହୁଁ...ହୁଁ ।

ଯଦୁମଣି ପୁଣି ପଚାରିଲେ—ଆହେ, ହୁଁ ହୁଁ କ'ଣ ? ଜବାବ ଦେଉନା

ପୁଣି ଶୁଣାଗଲା ହାଁ । ହାଁ । କ'ଣ କହୁଛ ।

ଏ ପ୍ରକାର ଲୀଳା ଦେଖି ଅନୁଗୁଳ ମନ୍ତ୍ରୀ ଓ କର୍ମଚାରୀ ଜଣକ ଭୟଭୀତ ହୋଇ ରାତାରାତି ନୟାଗଡ଼ରୁ ଚାଲିଲେ । ଯଦୁମଣି ଅତି ସହଜ ଉପାୟରେ ଖଣ୍ଡ ରାଜାଙ୍କୁ ପରାସ୍ତ କରି ପାରିଥିଲେ । ଏବେ ମଧ୍ୟ ନୟାଗଡ଼ର ଲୋକେ ଯଦୁମଣିଙ୍କ ନାମ ଆଗରେ ଗୋଟିଏ ବିଶେଷଣ ଯୋଡ଼ନ୍ତି —

"ସିଏ ଖଣ୍ଡ ଶିରୋମଣି ଯଦୁମଣି ଟି... ।"

## ତୁ ମୋର ମନକୁ ଶଳାଟାପରି—

କବିସୂର୍ଯ୍ୟ ଓ ଯଦୁମଣିଙ୍କ ମଧ୍ୟରେ ଭଲ ସଦ୍ଭାବ ଥାଏ । ନୂଆଁଗଡ଼ ରାଜା କବିସୂର୍ଯ୍ୟଙ୍କୁ କେତେ ବଖରା ଡିହ ଇଟାମାଟିରେ ଦେଇଥିଲେ ।

ସେ ତାହା ଯଦୁମଣିଙ୍କ ଜମା ଛାଡ଼ି ଯାଇଥିଲେ । ସେତେବେଳେ ସାଲିଆନା କରଟା ପଠାଇ ଦିଆଯାଏ । ବର୍ଷେ ଦିବର୍ଷ କର ପଠା ନହେବାରୁ କବିସୂର୍ଯ୍ୟ, ଯଦୁମଣିଙ୍କ ପାଖକୁ ହାସ୍ୟରେ କବିତା ଲେଖି ପଠାଇଲେ, “ବଢ଼ାଇ ଦେ ମୋତେ କର, ବଢ଼ାଇ ଦେ ମୋତେ କର ।”

ଏହା ପଢ଼ି ଯଦୁମଣିଙ୍କୁ ବଡ଼ ବାଧିଲା । ସେ ବଢ଼େଇ କୁଳରେ ଜନ୍ମିଲେ ବୋଲି କ’ଣ ତାଙ୍କର ଏତେ ଅପମାନ । ସେ ତୁରନ୍ତ ଅତି କଟୁଭାଷାରେ ଜବାବ ଦେଲେ, “ତୁ ମୋର ମନକୁ ଶଳା ଝାପରା, ତୁ ମୋର ମନକୁ ଝଳାଟା ପରା ।”

## ଭଡ଼କେ ଶିଙ୍ଘାଣି—

ଦିନେ ଗଉଡ଼ୁଣୀ ଯଦୁମଣିଙ୍କ ଦୁଆରେ ଦହି ଛେନା ବିକ୍ରୟ କରୁଥିଲା ବେଳେ ଭଡ଼କେ ଶିଙ୍ଘାଣି ନିଜ ପିନ୍ଧା ଲୁଗାକାନିରେ ପୋଛିଦେଲା । ଏପରି ଦେଖି ଯଦୁମଣି କହିଲେ, “ଆହେ ବେହେରାଣୀ ଦେଖ ତୁମେ ଦହି ଦୁଧପରି ଅମୃତର କାରବାର କରୁଛ । ବାସନରେ ପାଣି ଲାଗିଥିଲେ ତାହା ଲୁଗା କାନିରେ ପୋଛି ସେଥିରେ ଜିନିଷ ଦଉଛ । ପୁଣି ହାତରେ ଦହିହାଣ୍ଡି ଘାଣ୍ଟି ଗୋଳାଉଛ, ଏଇଟା କ’ଣ ଉଚିତ କାର୍ଯ୍ୟ କଲ ।”

ସେ ଗଉଡ଼ୁଣୀର ଭାରି ଗର୍ବ । ସେ ହାଟୁଆଣି ରାଜାଙ୍କ ଅନ୍ତଃପୁରର ଘର ଝିଅଙ୍କୁ ଦହି, ଦୁଧ, ଘିଅ, ଛେନା, ଲହୁଣି ବିକୁଥାଏ । ବଢ଼େଇ ଟୋକାକୁ ସେ କାହିଁକି ଖାତିରି କରିବ ? କହିଲା, “ମଲରେ ମୋ ଅଞ୍ଚଳ କାନିରେ ମୁଁ ପୋଛିଲି, କାହାକୁ ମାଗିଗଲି କି ? ଏଥିରେ କାହାର କ’ଣ ଗଲା, ଏହା କହି ପୁଣି ପୋଛିଲା ।”

ଯଦୁମଣି ତାକୁ କୌଣସି ଜବାବ ନ ଦେଇ ନିଜ ନାକରୁ ମେଞ୍ଚେ ଶିଙ୍ଘାଣି ବାହାର କରି ତା ଶାଢ଼ୀରେ ପୋଛିଲେ । ତାପରେ ସେ ଗଉଡ଼ୁଣୀ ଫଁକ୍ ଫଁକ୍ ହୋଇ ରାଜାଙ୍କୁ କହିଲା । ରାଜା ଯଦୁମଣିଙ୍କୁ ଡ଼କାଇ ଏହାର କାରଣ ବୁଝିଲେ । ରାଜା ଗଉଡ଼ୁଣୀର ଏପରି ବ୍ୟବହାର ଯୋଗୁଁ ତାକୁ ଦଣ୍ଡ ଦେଲେ ।

## ମୋର ମୁଁ ହୁଅନ୍ତି ଦଅର ଥରେ –

ଶ୍ରୀକ୍ଷେତ୍ର ପୁରୀ ରଥଯାତ୍ରା ଲଗିଛି, ତିନି ଠାକୁର ତିନି ରଥରେ ବିଜେ ହୋଇଚନ୍ତି । ଯଦୁମଣି ଖୁବ ଆନନ୍ଦରେ ରଥରୁ ରଥକୁ ବୁଲି ଆନନ୍ଦ ଉପଭୋଗ କରୁଥାନ୍ତି । ଏତିକିବେଳେ ଦେଖିଲେ ଜଣେ ସୁନ୍ଦରୀ ଯୁବତୀ ତାର ବୃଦ୍ଧ ଦଅର ସହିତ ବୁଲି ଯାତ୍ରା ଦେଖୁଛି । ଏ ଦୃଶ୍ୟ ଦେଖି ଯଦୁମଣି ଦୀର୍ଘ ସମୟ ଧରି ଯୁବତୀର ପିଛା ଧରି ବୁଲିଲେ । ଯୁବତୀ ଯେତେବେଳେ ଜଗନ୍ନାଥଙ୍କ ରଥ ପାଖରେ ପହଞ୍ଚିଲା ଯଦୁମଣି ସେଠାରେ ତାର ଦଅର ହେବାପାଇଁ ଇଚ୍ଛା ପ୍ରକାଶ କରି ଗାଇବାକୁ ଲଗିଲେ—

"ମୋର ମୁଁ ହୁଅନ୍ତି ଦଅର ଥରେ, କଥା କହୁଥାନ୍ତି ଦଅର ଥରେ,
ବିଜେ କରିଛନ୍ତି ଦିଅଁ ରଥରେ, ସଙ୍କଳ୍ପ କରି ଦିଅ ରଥରେ ।"

ଯୁବତୀ ଅବଶ୍ୟ ପଲ୍ଲୀଗ୍ରାମରୁ ଆସିଥିଲା ପରି ଜଣାଗଲେ ହେଁ ଚତୁରୀ ଓ ବୁଦ୍ଧିମତୀ ଥିଲେ । ସେ ଯଦୁମଣିଙ୍କ ହାତକୁ ଉଡ଼ଆଣି ରଥ ଚକକୁ ଛୁଆଁଇ ଦେଇ କହିଲେ, "ତୁମେ ଆଜିଠାରୁ ମୋର ଦଅର ହେଲ ।" ଯଦୁମଣି ଉକ୍ତ ଯୁବତୀ ସହିତ ବାଡ଼ମାଳି ଆସି ସେଠାରେ ପ୍ରାୟ ଦୁଇମାସ କଟାଇଥିଲେ ଏବଂ ସେହି ଯୁବତୀ ମନୋରମା ସହିତ ପବିତ୍ର ବନ୍ଧୁ ସମ୍ପର୍କ ସବୁଦିନ ପାଇଁ ରଖିଥିଲେ ।

## ଠିଆରେ ମୁତୁ—

ଯଦୁମଣି ବାଢମ ଗିରି ଖଣ୍ଡାୟୁତ ମନୋରମାକୁ ଭଉଜ ଲେଖାକରି ରଥ ଛୁଇଁ ନିଯୁମ କରିଥିଲେ । ମନୋରମା ଧନବନ୍ତ ଘରର ବୋହୂଥିଲେ । ତାଙ୍କର ପୁଅଝିଅ ଦୁଇଟି ଛଡ଼ା ଶାଶୁ, ଶଶୁର ଓ ବର ସମସ୍ତେ ମରିଗଲେ । ତେଣୁ ଯୁବତୀ ମାଇପିଟା ପିଲାଙ୍କୁ ଏବଂ ସମ୍ପତ୍ତିବାଡ଼ି ଛାଡ଼ି ପରଘରକୁ ନଯାଇ ଗୋଟାକୁ ବିଶ୍ୱସ୍ତ ହୋଇ ରହିବାର ଯୋଗାଡ଼ କରିଥିଲେ । ଏଣେ ତାର ପୁଅର ବଡ଼ୁଘର ଏବଂ ଝିଅର ବିବାହ ହେବାର ଥିଲା । ମନୋରମା ଏସବୁ ଗୁପ୍ତରଖି ଯଦୁମଣିଙ୍କ ପାଖକୁ ସେ ଲୋକ ପଠାଇ ଡ଼କାଇଲେ । ଯଦୁମଣି

ମଧ୍ୟ ଏହାକୁ କିଛି ନ ବୁଝି ଯାଇ ବାଘମାଶରେ ପଶିଲେ । ସକାଳୁ ଉଠି ଦେଖିଲେ ମନୋରମା ଘଉଡ଼ିର ଡରଡରର ସୀମାନାହିଁ । ସେ ଗୃଉଳ ଧୋଉ ଧୋଉ ଠିଆରେ ମୁତିଦେଲା । ଯଦୁମଣି ଏ ଦୃଶ୍ୟ ଦେଖି ପରିହାସରେ ଘଉଡ଼ିକୁ କହିଲେ—

"ଠିଆରେ ମୂତୁ ଗୃଉଳ ଧୋଉ, ଏତେ ଡରଡର କାହିଁକି ହେଉ ?"

ମନୋରମା ଘର ଚତୁରୀ ଓ ରସିକା, ସେ କହିଲା—

"ନାଁ ଝିଅର ବାହା, ପୁଅର ବନ୍ଧୁ
ଝିଅ ଯିବ. ବୋହୁ ଆସିବ, ମୋତେ ଲଗିଛି ଡର,
ବେପାରି ଯିବକ, ବନ୍ଦେଇ ହେବ ମୁଁ ତହିଁପେଇଁ ଡରଡର ।"

ଯଦୁମଣି ଘଉଡ଼ି ଠାରୁ ଏପରି ଶୁଣି ସବୁକଥା ବୁଝିପାରି ନୀରବ ରହିଲେ ।

**ଖମ୍ବଆଳୁ କଥା—**

ସେହି ସମୟରେ ଗାଁ ସରବରାକାର ମାନଙ୍କର ଅକଥନୀୟ ଅତ୍ୟାଚାର କହିଲେ ନସରେ । ରାଜାମାନଙ୍କର ସେମାନେ ଜଣେ ଜଣେ ଚଳନ୍ତ ପ୍ରତିମା କହିଲେ ଚଳେ । ସେମାନଙ୍କର କାମହେଲା ଲୋକଙ୍କୁ ବେଠି ଖଟାଇବା, ଦଣ୍ଡଦେଇ କର ଆଦାୟ କରିବା ଏବଂ ଘିଅ, ଦହିଠୁ ଆରମ୍ଭକରି ଫଳ ପରିବା ଯାଏ ବିନା ମୂଲ୍ୟରେ ରାଜାଙ୍କ ନାମରେ ନେଇ ରାଜାଘରେ ଆଦାୟ ପଦାର୍ଥରୁ କିଛି ଅଂଶ ଭେଟି ଦେବା ସେମାନଙ୍କର କାମ । ରାଜାଘର ପର୍ବ ପର୍ବାଣୀ ହେଲେ, ଏମାନଙ୍କ ଆନନ୍ଦର ସୀମା ରହେନାହିଁ । ରାଜା କୁହନ୍ତୁ ବା ନ କୁହନ୍ତୁ ଏମାନେ ପ୍ରଜାଙ୍କ ଘରୁ ସକଳ ଜିନିଷ ଲୁଟି କରନ୍ତି ରାଜାଙ୍କ ନାମରେ ।

ଥରେ ରାଜାଙ୍କର କୌଣସି ଗୋଟିଏ ପର୍ବ ପାଳନ ନେଇ ସକଳ ପ୍ରକାର ଯୋଗାଡ଼ ହେଉଥିଲା । ଇଟାମାଟି ସରବରାକାରଙ୍କର ଯଦୁମଣିଙ୍କ ଉପରେ ପୂର୍ବରୁ ରାଗଥାଏ । ସେ ସୁଯୋଗ ଖୋଜୁଥିଲେ । ଦିନେ ଯଦୁମଣି

ଘରେ ନଥିବା ସମୟରେ ତାଙ୍କ ସ୍ତ୍ରୀଙ୍କୁ ନାଲିଆଖି ଦେଖାଇ, ରାଜାଘର ନିମନ୍ତେ ଯଦୁମଣିଙ୍କ ବାଡ଼ିରୁ ଖମ୍ବଆଳୁ ଖୋଳାଇ ସବୁ ନେଇଗଲେ ।

ଯଦୁମଣି ଘରକୁ ଫେରିବାରୁ ଖଞ୍ଜଣା ସମସ୍ତ ଘଟଣା ଜଣାଇଲେ । ଯଦୁମଣି ସ୍ତ୍ରୀଙ୍କୁ କହିଲେ ଯାହା ହେବାରଥିଲା ହେଲାଣି ତେଲ ଘଡ଼ିଟା ଆଣିଲ । ଯଦୁମଣି ଦେହସାରା ତେଲ ସରସର ହୋଇ ରାଜବାଟୀ ଆଡ଼କୁ ଚାଲିଲେ ।

ରାଜବାଟୀରେ ପହଞ୍ଚି ଏକ ଜରୁରୀ କଥାରେ ରାଜାଙ୍କ ସହିତ ସାକ୍ଷାତ କରିବା ପାଇଁ ଖବର ଦେଲେ । ତା ପରେ 'ମହିମା ମହିମା' ବୋଲି ଏମିତି ଚିଲାଇଲେ ଯେ, ରାଜା କ୍ଷଣେସୁଦ୍ଧା ଡେରି ନକରି ଯଦୁମଣିଙ୍କୁ ସାକ୍ଷାତ ଦେଲେ ।

ଯଦୁମଣିଙ୍କର ଏପରି ବେଶ ଦେଖି ରାଜା ପଚାରିଲେ, "କଣ ଯଦୁମଣି ଖବର କ'ଣ ? ଏମିତି ବ୍ୟସ୍ତ କାହିଁକି ହେଉଛ ?"

ଯଦୁମଣି ହାତଯୋଡ଼ି କହିଲେ—ଆଜ୍ଞା ! ମୁଁ ଘରେ ନଥିଲି ଘରକୁ ଆସି ଯାହା ଶୁଣିଲି, ଆପଣଙ୍କ ପାଖକୁ ନ ଆସି ଆଉ ଉପାୟ କ'ଣ ଅଛି । କଥା କଣ କି, ଆମଘର ବାରିରୁ ଖୋଳିକରି ସରବରାକାର ମାଗଣାରେ ଖମ୍ବଆଳୁ ଆଣିଛନ୍ତି । ସେଥିରେ ମୋର କୌଣସି ଦୁଃଖ ନାହିଁ । ଯାହାହେଉ ମୋର ମେହେନତରେ ଅାଦାୟ ଫଳ ତୁମଙ୍କ କାମରେ ଲାଗିବ । ହେଲେ ପ୍ରକୃତ କଥା ଯେତେବେଳେ ମନେ ପଡ଼ିଗଲା ମନରେ ପାପ ଛୁଇଁଲା ।

ମହିମା ! ଆମ ବାରିପଟେ ପ୍ରତିଦିନ ଯେ ଟିଏ ଲେଖାଏଁ ଗାତଖୋଳି ପରିବାରର ସମସ୍ତେ ସେହି ଗାତରେ ଝାଡ଼ାଫେରୁ । ସମୟ ଆସିଲେ ସେହି ଗାତମାନଙ୍କରେ ଖମ୍ବଆଳୁ ମଞ୍ଜି ଗୋଟିଏ ପୋତି ଦେଉ । ସେହି ଆଳୁଆସି ଆପଣଙ୍କର ଭଣ୍ଡାର ଘରେ ପଶିଛି । ସେ ପୁଣି ତୁମୁଙ୍କର ଦେବତା, ବ୍ରାହ୍ମଣ ଅତିଥି ଅଭ୍ୟାଗତମାନଙ୍କରେ ଲାଗିବ । ଆମେ ଗରିବ ପେଟ ବିକଳରେ କେଉଁଠି କ'ଣ କରିଦେଉଛୁ ବୋଲି ତୁମ୍ଭେ ଆମ ପାପରେ ବୁଡ଼ି ଯିବିହେବେ ।

ଏହି କଥା ଜଣାଇବା ପାଇଁ ଅଗାଧୁଆ ଧାଇଁ ଆସିଛି । ରାଜା କହିଲେ ଯଦୁମଣି ତୁମେ ଆଜ ମୋତେ ବହୁ ଅନିଷ୍ଟରୁ ରକ୍ଷାକଲ । ଅନୁରୋଧ କରୁଛି ସେଇ ସବୁ ଆଳୁ ଚନ୍ଧି ନେଇଯାଅ ।

ଯଦୁମଣି ଢ ତେଲ ଲଗାଇ ଆଗରୁ ପ୍ରସ୍ତୁତ ଥିଲେ । ଭଣ୍ଡାର ଘରେ ପଶି ଭଲ ଭଲ ଖମ୍ବଆଳୁ ଦୁଇଗାଡ଼ି ବାଛିଲେ । ଦେହ ବା କାହିଁକି କୁଣ୍ଡାଇ ହେବ ଦେହରେ ତେଲ ଲଗିଛି ।

ରାଜାଘର ଶଗଡ଼ରେ ଦୁଇଗାଡ଼ି ଖମ୍ବଆଳୁ ଯେତେବେଳେ ଗାଁରେ ଆସି ପହଞ୍ଚିଲା ସରବରାହକାରର ମୁହଁ ଶୁଖିଗଲା । ପରେ ପରେ ରାଜା ସେହି ସରବରାହକାରକୁ କାର୍ଯ୍ୟରୁ ଅନ୍ତର କରିଦେଲେ ।

## କଟକ ଠକ—

ଯଦୁମଣି ଥରେ ରାଜା ବନାୟକ ସିଂହ ମାନଧାତାଙ୍କ ସହିତ କଟକ ଯାଇଥିଲେ । କଟକରେ ରହିବା ସମ୍ବନ୍ଧରେ ବିଭିନ୍ନ ପ୍ରକାର ମିଠା କଥା ସ୍ତ୍ରୀଙ୍କ ଆଗରେ କହିଲେ ଏବଂ ରାଜାଙ୍କ ପାଖକୁ ଏକ ଗୀତ ଲେଖି ପଠାଇଲେ—

"ସବଦା ଜୀବକା ମୋ ଠକ ଠକ, ସଙ୍ଗାଳ ମୋର ବାରସି ପଟକ
ନଗଲା ପାଶୋଣ କଟକ ଠକ, ପାଞ୍ଚ ଅକ୍ଷର ଏ ପାଞ୍ଚ ଅକ୍ଷର
ଲୋମ ବିଲୋମରେ ଲୋଡ଼ା ସେ ମୋର" କଟକ ଠକ ।

ଏହା ଶୁଣି ରାଜା କଟକରୁ ମିଠାଆଣି ଯଦୁମଣିଙ୍କୁ ଦେଇଥିଲେ ।

## ବଡ଼ମ୍ବା ରାଜ ଦରବାରରେ ଯଦୁମଣି—

ଏକଦା ବଡ଼ମ୍ବାର ରାଜା ରାମଚନ୍ଦ୍ର ମଙ୍ଗରାଜ ଦୂତ ପଠାଇ ଯଦୁମଣିଙ୍କୁ ବଡ଼ମ୍ବା ଯିବାପାଇଁ ପତ୍ର ପଠାଇଲେ । ଯଦୁମଣି ଦୂତଠାରୁ ରାଜାଙ୍କ ପତ୍ର ପଢ଼ି ସେହି ଦୂତ ହସ୍ତରେ ଚିଣ୍ଟିଏ ଲେଖା ପଠାଇଲେ । ସେଥିରେ ଲେଖାଥିଲା—

"ରାମଚନ୍ଦ୍ର-ଶଳା ବାରେ ତୁମ୍ଭ ଆମ୍ଭ ମେଳା ।"

ଯଦୁମଣି ଚିଠିଲେଖା ପ୍ରକାର ମଙ୍ଗଳବାର ଦିନ ଯାଇ ବଡ଼ମ୍ବାରେ ପହଞ୍ଚିଥିଲେ । ବଡ଼ମ୍ବା ରାଜା ଯଦୁମଣିଙ୍କୁ ଦେଖିବା ମାତ୍ରେ ଅଭିନୟ କରି କହିଲେ, 'ତୁମେ ଆମ୍ଭଙ୍କୁତ ଗାଳିଦେଇ ଲେଖା ପଠାଇଛ, ପୁଣି ଆଜି କାହିଁକି ଏଠାକୁ ଆସିଅଛ ?'

ଯଦୁମଣି ହାତଯୋଡ଼ି କହିଲେ, "ସ୍ୱାମୀ ! ଏଡ଼େ ବଡ଼ପ ମୁଁ କାହୁଁ ପାଇବି ଯେ ମଣିମାଙ୍କୁ ଗାଳିଦେବି ।"

ସଙ୍ଗେ ସଙ୍ଗେ ରାଜା ଯଦୁମଣିଙ୍କ ଦ୍ୱାରା ଲିଖିତ ଚିଠିଟି ଆଣି ପଠାଇଲେ । ଏହା ଦେଖି ଯଦୁମଣି ଚିଠିର ଅର୍ଥ କରି କହିଲେ, "ଆଜ୍ଞା ! ମଙ୍ଗଳବାର ବା ଭୌମ ଗ୍ରହ ଓ ସୀତା ଦୁହେଁ ଭୂମିରୁ ଜାତ ହୋଇଥିବାରୁ ଉଭୟେ ଭାଇ ଭଉଣୀ । ମଙ୍ଗଳବାରକୁ ଭୌମ ବାସର କହନ୍ତି । ଏଣୁ ରାମଚନ୍ଦ୍ରଙ୍କ ଶଳାବାରରେ ଆପଣଙ୍କୁ ଦେଖା କରିବି ବୋଲି ଚିଠରେ ଲେଖି ଆଜ ଠିକ୍ ସମୟରେ ପହଞ୍ଚିଲି ।"

ଏପରି ଅର୍ଥ ଶୁଣି ରାଜା ଯଦୁମଣିଙ୍କୁ ବିଶେଷ ସମ୍ମାନ ଦେଖାଇ ତୃପ୍ତିରେ ପାଟଣା ନାମକ ଏକ ଗ୍ରାମରେ ରହିବା ପାଇଁ ବସା ଦେଇଥିଲେ । ଘିଅ ବ୍ୟତୀତ ଅନ୍ୟାନ୍ୟ ସମସ୍ତ ରୋଷେଇ ସାମଗ୍ରୀ ଯୋଗାଇ ଦେବା ନିମନ୍ତେ ରାଜା ସ୍ଥାନୀୟ ଦୋକାନୀକୁ ଆଦେଶ ଦେଲେ ଏବଂ ରାଜବାଟୀରୁ ଗୋଟିଏ ଗିନାରେ ଯଦୁମଣିଙ୍କ ନିମନ୍ତେ ଘିଅ ପଠାଇଲେ । ମାତ୍ର ଏ ଘିଅ ଏତେ ଦୁର୍ଗନ୍ଧ ଯେ ତର୍କାରିରେ ପକାଇ ଖାଇ ହେବ ନାହିଁ । ଯଦୁମଣି କୌଣସି ଉପାୟ ନ ପାଇ ଶେଷରେ ରାଜାଙ୍କ ଘରୁ ଆସିଥିବା ଘିଅ ଗିନାରେ କିଛି ଧୂଆଁପତ୍ର ଗୁଣ୍ଡ ମିଶାଇ ତାହାକୁ ନାସ ପ୍ରସ୍ତୁତ କରି ଗୋଟିଏ ଡାମାରେ ରଖିଦେଲେ ଏବଂ ଗିନାଟିକୁ ଦୋକାନରେ ବନ୍ଧାଦେଇ ଘିଅ ଆଣି ରନ୍ଧନ କାର୍ଯ୍ୟ ସମାପନ କରି ଭୋଜନ କରିଥିଲେ । ଯଦୁମଣି ରାଜ ସଭାକୁ ଯିବା ବେଳେ ସେହି ଦୁର୍ଗନ୍ଧ ନାସ ଡାବାଟିକୁ ଧରିଥିଲେ । ଯଦୁମଣି ରାଜ ସଭାରେ ପହଞ୍ଚି ରାଜାଙ୍କ ଆଗରେ ଭଲ ଘିଅରେ ତିଆରି ନାସଟିପେ ନାକରେ ମାରିଲେ । ତାହା ଦେଖି ରାଜା ଲୋଭ ବଳାଇ ଯଦୁମଣିଙ୍କୁ ନାସ ଟିପାଏ ମାଗିଲେ ।

ଯଦୁମଣି ସଙ୍ଗେ ସଙ୍ଗେ ଦୁର୍ଗନ୍ଧ ଗିଅରେ ତିଆରି ନାସ ଡାବାଟିକୁ ବଢ଼ାଇ ଦେଲେ । ରାଜା ସ୍ୱତନ୍ତ୍ର ନାସ ଦାନୀରୁ ଟିପେ ନାସ ନେଇ ଶୁଙ୍ଘିଲେ, ମାତ୍ର ତା ମଧ୍ୟରୁ ଏପରି ଦୁର୍ଗନ୍ଧ ବାହାରିଲା ଯେ ରାଜା ବ୍ୟାକୁଳ ହୋଇ ବାନ୍ତି କରି ପକାଇଲେ । ରାଜା ଯଦୁମଣିଙ୍କ ଉପରେ ଖୁବ୍ ବିରକ୍ତ ହୋଇ ଉଠିଲେ । ଯଦୁମଣି ହାତ ଯୋଡ଼ି ଜଣାଇଲେ—

"ଚନ୍ଦ୍ର ତୁମ୍ଭେ ଯିନା ଖନ୍ଦା ଦେଇଥିଲ ତୁଣ୍ଡଯୁ ପାଟଣା ଆଜ
ଗିନା ବନ୍ଧାଦେଇ ଖନ୍ଦା ଚଳାଇଲ ଗେନ୍ଧା ଶୁଙ୍ଘ ମଙ୍ଗରାଜ ।"

ଏହା ଶୁଣି ରାଜା ଯଦୁମଣିଙ୍କୁ ବହୁ ସମ୍ମାନ ସହ ପୁରସ୍କାର ଦେଇ ବିଦାୟ ଦେଇଥିଲେ ।

## ଢେଙ୍କାନାଳ ମହେନ୍ଦ୍ର ବାହାଦୁର ଓ ଯଦୁମଣି—

ଯଦୁମଣି ବଡ଼ମ୍ବାରୁ ଢେଙ୍କାନାଳ ରାଜ ଦରବାରରେ ଯାଇ ପହଞ୍ଚିଲେ । ସେତେବେଳକୁ ରାଜା ଦରବାରରେ କବି ଓ ପଣ୍ଡିତମାନଙ୍କ ସମ୍ମେଳନ କରାଇଥାନ୍ତି । ରାଜା ପରମ ସନ୍ତୋଷରେ ପଣ୍ଡିତମାନଙ୍କର ଅଭ୍ୟର୍ଥନା କରୁଥାନ୍ତି । ଯଦୁମଣି ଦରବାର ଭିତରକୁ ଯିବାପାଇଁ ଚେଷ୍ଟା କରିବାରୁ ଦ୍ୱାରରକ୍ଷୀ ତାଙ୍କୁ ଭିତରକୁ ଯିବାକୁ ଛାଡ଼ି ନଥିଲେ । ଯଦୁମଣି ଦ୍ୱାରୀକୁ ବହୁ ଅନୁନୟ ବିନୟ କଲେ, ଫଳରେ ଦ୍ୱାରୀ ରାଜାଙ୍କ ପାଖକୁ ଆସି ଆଗନ୍ତୁକ ପାଇଁ ଅନୁମତି ମାଗିଲେ, ରାଜା ତ ବ୍ୟସ୍ତଥିଲେ, ସେ ଦ୍ୱାରୀକୁ କହିଲେ, "ପଚାରି ଆସ ତୁ କିଏ ?"

ଦ୍ୱାରୀ ରାଜାଙ୍କ କହିବା ପ୍ରକାରେ ପଚାରିବାରୁ ଯଦୁମଣି ନିମ୍ନ କବିତାଟି ଲେଖି ଦ୍ୱାରୀହସ୍ତରେ ରାଜାଙ୍କ ନିକଟକୁ ପଠାଇଦେଲେ । କବିତାଟି ଥିଲା-

ମ, ନାଶି କାଳ ମହୀର ଅହିତ, ଶୁଭଗ-ଅଗ୍ର ସଙ୍ଗେ ପା ମିତ,
ସମାପ୍ତି ଋଷ କନ୍ୟାର ବରତ, ଚତୁର-ଭ-ଜ-ନରେ ବଳବନ୍ତ,
ତାଙ୍କ ଅନୁଗ୍ରହ ଯିନା ଯେ
ଶ୍ରୀ ଦେଉ ପରା ଶ୍ରୀମୁଖେ ବାନ୍ଧିଅଛ ନବଗ୍ରହଁ ଏକ ଗ୍ରହ ଯେ ।

ରାଜା ଏହି ପଦଟିର ଅର୍ଥ ବୁଝି ନପାରି କବିଙ୍କୁ ସଦମ୍ମାନେ ରାଜା ଦ୍ୱାର ଦେଶରୁ ପାଗ୍ଛୋଟି ଆଣିଲେ । ଯେତେବେଳେ ଜାଣିଲେ ସ୍ୱୟଂ ଯଦୁମଣି ଉପସ୍ଥିତ ପଣ୍ଡିତମାନେ ଉଦ୍‌ବୃତ୍ତ ହୋଇ ପଡ଼ିଲେ ।

ଯଦୁମଣି ପ୍ରଥମେ କବିତାଟିକୁ ଅର୍ଥକରି ସଭାରେ ବୁଝାଇ ଦେଲେ । ଅର୍ଥାତ୍ 'କାଳମନ୍ଦୀର'ରୁ 'ମ' ନାଶି ବା ଲୋପକରି ରହିବା 'କାଳନ୍ଦୀର ଅଧିପତି' ବଳରାମଙ୍କୁ ବୁଝାଏ । ଶୁଭଗ୍ର ବା ଶୁଭଶ୍ରେଷ୍ଠ ପୂର୍ଣ୍ଣକୁମ୍ଭର ଅଗ୍ରରେ ଥିବା ନଡ଼ିଆକୁ ଲଙ୍ଗଳୀ କହନ୍ତି ଓ ବଳରାମ ମଧ ସେହି ନାମରେ ପରିଚିତ । ସମାପ୍ତି ର୍ଷ କନ୍ୟା ବା ଶେଷ ନକ୍ଷତ୍ର ରେବତୀର ବର ବଳରାମ ଅଟନ୍ତି । ଚତୁରଭ ବା ଚତୁର୍ଥ ନକ୍ଷତ୍ର ରୋହିଣୀଙ୍କ ଠାରୁ 'ଜ' ଅର୍ଥାତ୍ ଜାତ ଯେଉଁ ବଳରାମ ସେ ଢେଙ୍କାନାଳ ରାଜାଙ୍କ ଇଷ୍ଟଦେବ ଓ ତାଙ୍କ ଅନୁଗ୍ରହରୁ ନବଗ୍ରହ ମଧ୍ୟରୁ 'କେତୁ' ଗ୍ରହଟିକୁ ମୁଖରେ ବାନ୍ଧିଛନ୍ତି । ଅର୍ଥାତ୍ କେତୁଗ୍ରହ ଚଣ୍ଡାଳ ହୋଇଥିବାରୁ ଚଣ୍ଡାଳ ପରି ଭାଷା ବ୍ୟବହାର କରୁଛନ୍ତି ।

ଏହା ଶୁଣି ରାଜା ଲଜ୍ଜିତ ହୋଇଥିଲେ ଓ ଯଦୁମଣିଙ୍କୁ ସମସ୍ତଙ୍କ ଅପେକ୍ଷା ଅଧିକ ସମ୍ମାନିତ କରିଥିଲେ ।

## ରାମ ଓ କୃଷ୍ଣ—

ନୟାଗଡ଼ ରାଜା କୃଷ୍ଣ ଭକ୍ତ ଓ ରାଣୀ ରଘୁନାଥଙ୍କ ଭକ୍ତଥିଲେ । ରାଜାରାଣୀ ଥରେ ଯଦୁମଣିଙ୍କୁ କହିଲେ, "ନବ ଗୋଟିଏ ପଦ କବିତା କୁହନ୍ତୁ ଯେପରି ସେଥିରେ କୃଷ୍ଣଙ୍କ ପକ୍ଷରେ ଅର୍ଥ କଲେ ବୁଝାଉଥିବ ଏବଂ ରାମଙ୍କ ପକ୍ଷରେ ଅର୍ଥ କଲେ ବୁଝାଉଥିବ ।" ଯଦୁମଣି ସଙ୍ଗେ ସଙ୍ଗେ କହିଲେ—

"କୁଜାନାଶୀ ଭୁଲେ ପୀରତି କରି
ପାଣିରେ ପର୍ବତ ରଖିଲେ ହରି ।"

ରାମଙ୍କ ଅର୍ଥରେ—'କୁ' ଅର୍ଥ ପୃଥିବୀ ତହିଁରୁ ଜାତ ସୀତାଙ୍କ ସହିତ ପ୍ରୀତି କରି ତାଙ୍କର ଉଦ୍ଧାର ପାଇଁ ହରି ଅର୍ଥ ମାଙ୍କଡ଼ମାନଙ୍କ ଦ୍ୱାରା ଜଳରେ ପର୍ବତ ସ୍ଥାପନ କରିଥିଲେ ।

କୃଷ୍ଣଙ୍କ ଅର୍ଥରେ – କୁଜା ବା କୁବୁଜା ନାମ୍ନୀ ସହିତ ସ୍ନେହରଖି ପୁଣି ପାଣି ଯେ ହସ୍ତରେ ଗୋବର୍ଦ୍ଧନ ପର୍ବତକୁ ଧାରଣ କରିଥିଲେ ।

ଏପରି ଶୁଣି ରାଜାରାଣୀ ପରମ ସନ୍ତୋଷ ଲାଭ କରିଥିଲେ ଏବଂ କବିଙ୍କୁ ଅର୍ଥ ଓ ବସ୍ତ୍ର ପୁରସ୍କାର ପ୍ରଦାନ କରିଥିଲେ ।

## ଚେଣ୍ଟୁକର ରକ୍ତ ବାନ୍ଧୁ ବାହାର—

ଥରେ ଜଣେ ଗୋଟିଏ ବେଶ୍ୟା ବ୍ରହ୍ମପୁର ସହରରୁ ନୟାଗଡ଼ ରାଜ ଦରବାରକୁ ଆସିଥାଏ ନୃତ୍ୟଗୀତ ପରିବେଷଣ କରି ଉପହାର ପାଇବା ନିମନ୍ତେ ।

ନୃତ୍ୟଗୀତ ପରେ ବେଶ୍ୟା ବିଦାୟ ନେଲା କିନ୍ତୁ ରାଜାଙ୍କର ମନ ବେଶ୍ୟାପ୍ରତି ସେତିକ ଆକୃଷ୍ଟ ନୁହେଁ ତା ହାତରେ ଚିତ୍ରିତ ହୋଇଥିବା ହରିଗଜରାଜ ରଙ୍ଗର ଚିତା ତାଙ୍କୁ ବିଶେଷ ଆକର୍ଷଣ କଲା । ସେତେବେଳକୁ ଗଞ୍ଜାମର ବିଶିଷ୍ଟ କବି ହରେକୃଷ୍ଣ ପଟ୍ଟନାୟକ ଓ ଯଦୁମଣି ମଧ୍ୟ ସେଠାରେ ସଭାରେ ଉପସ୍ଥିତ ରହିଥାନ୍ତି ।

ରାଜା ହରେକୃଷ୍ଣ ପଟ୍ଟନାୟକଙ୍କୁ ଲକ୍ଷ୍ୟକରି କବିତା ରଚନା ନିମନ୍ତେ ନିର୍ଦ୍ଦେଶ ଦେଲେ । ରାଜାଙ୍କର ଉଦ୍ଦେଶ୍ୟ କ'ଣ ତାହା ମଧ୍ୟ ପ୍ରକାଶ କରି ବେଶ୍ୟାର ହାତ ପଚାରିବା ପ୍ରକାଶ କଲେ । ହରେକୃଷ୍ଣ ପଟ୍ଟନାୟକ ଗାଇବାକୁ ଆରମ୍ଭ କଲେ—

କି ରଙ୍ଗରେ ହରିଗଜରାଜ ରଙ୍ଗରେ ଅଙ୍ଗନା ବାମ କରତଳ
ଚୋପି ଚୋପ କରି ପଚାରିଲ ଅଛୁ ଯେ ଦିଶୁଅଛି କେତେ ମଞ୍ଜୁଳ
ସଙ୍ଗୀତ କି ଅବା ଫୁଲଶର ସ୍ମର
ବାନ୍ଧିଲ ବେଳରେ ହସ୍ତେ ଆଡ଼ଦେଲ ଚେଣ୍ଟୁ ଏ ରୁଧିର କାହାର ।

ଯଦୁମଣିଙ୍କ ମନକୁ ଏ କବିତା ଆସିଲା ନାହିଁ । ରାଜା ପଚାରିବାରୁ ଯଦୁମଣି କହିଲେ, ପ୍ରଭୁ ! ରାଜ ପରିଷତ୍‍ରେ ହୋଇ ପାରୁନ । ତେଣୁ ଯଦୁମଣି ଗାଇଲେ—

"ମନଭେଦୀ ପିନା କୁସୁମ ଶର
କାହିଁ ଉର କାହିଁ ଆଡ଼ଲ କର
ଏମନ୍ତ ଧୀଷଣା ହୃଦୟେ ରଖି
ହର ଗଉରୀ ଏକ ଠାରେ ଦେଖି
ବିନ୍ଧୁଛି କ ମାର
ତେଣୁ ଝରି ରକ୍ତ ବିନ୍ଦୁ ବାହାର ।

ଯଦୁମଣିଙ୍କ ରଚନା ଶୈଳୀରେ ରାଜା ଓ ସମସ୍ତ ସଭାସଦ୍ ଧନ୍ୟଧନ୍ୟ କହିଲେ ।

## ଏ ତେଲ ପିଲା ମାଡ଼ ଭୟେ ଛେରି ଏତେ ଲିପିଲା—

ଯଦୁମଣି ଚଟ୍ଟଶାଳୀରେ ପାଠ ପଢ଼ିବା ସମୟରେ ସେ ଟିକଏ ବୁଦ୍ଧିମାନ ଥିଲେ । ଶିକ୍ଷକ ସମୟେ ସମୟେ ବିଦ୍ୟାଳୟର ପିଲାମାନଙ୍କୁ ଶୃଙ୍ଖଳା ରଖିବା ଦାୟିତ୍ୱ ଯଦୁମଣିଙ୍କୁ ଦେଇ ଜରୁରୀ କାମରେ କେଉଁଠିକୁ ଯାଇଥିଲେ । ଏ ମଧ୍ୟରେ ଜଣେ ତେଲିପିଲା ଚଟ୍ଟଶାଳୀରେ ଦୁଷ୍ଟାମୀ କରିବାରୁ ଯଦୁମଣି ଶିକ୍ଷକ ଆସିଲେ କହି ମାଡ଼ ଖୁଆଇବା କଥା କହିଲେ । ମାଡ଼ ଭୟରେ ତେଲିପିଲାର ଝାଡ଼ା ହୋଇଗଲା । ଯଦୁମଣି ସେହି ପିଲାଦ୍ୱାରା ଗୋବର ଆଣି ଝାଡ଼ା ବସିଥିବା ସ୍ଥାନକୁ ଲିପାଇଦେଲେ ।

ଶିକ୍ଷକ ଆସି ଦେଖନ୍ତେ ଚଟାଳଟି ଗୋବରରେ ଲିପା ହୋଇଛି । ସେ ଯଦୁମଣିଙ୍କୁ କାରଣ ପଚାରିବାରୁ ଯଦୁମଣି ସଙ୍ଗେ ସଙ୍ଗେ କହିବାକୁ ଲାଗିଲେ

"ଆଜ୍ଞା ଏ ତେଲ ପିଲା ମାଡ଼ ଭୟେ ଛେରି ଏତେ ଲିପିଲା ।"

ଶିକ୍ଷକ ଯଦୁମଣିଙ୍କ ଏପରି ଚତୁରତା ଦେଖି ପ୍ରଶଂସା କରିଥିଲେ ।

## ପୁଅ ନା ଦେଲୁ ପୁରୁଷୋତ୍ତମ
## ଏବେ ଯେ ପିଠିରେ ବାଜେ ନିଧୂମ —

ଗୋଟିଏ ଗ୍ରାମରେ ଜଣେ ବିଧବା ସ୍ତ୍ରୀ ଥିଲା । ତାର ଗୋଟିଏ ମାତ୍ର ପୁଅ । ସେ ପୁଅକୁ ଭାରି ସ୍ନେହଦେଇ ନାମ ଦେଇଥିଲା ପୁରୁଷୋତ୍ତମ । କିନ୍ତୁ ପୁରୁଷୋତ୍ତମ ଭାରି ଦୁଷ୍ଟ । ସେ ଚାଲିଯିବା ଶଗଡ଼ରେ ହାତଦେଇ କଳି ଅର୍ଜନ କରୁଥାଏ । ଲୋକେ ଆସି ସବୁବେଳେ ପୁରୁଷୋତ୍ତମଙ୍କ ବିଷୟରେ ମାଆ ଆଗରେ କହନ୍ତି । ମାଆ ପୁଅକୁ ଗାଳିଦିଏ ।

କିଛି ଦିନ ପରେ ପୁଅ ଦୁଷ୍ଟଲୋକଙ୍କ ସହିତ ମିଶି ଅତ୍ୟଧିକ ଦୁଷ୍ଟାମି କଲା । ମାଆଁ କହିଲେ ମାଆକୁ ମାଡ଼ ଦେଲା । ମାଆ କୌଣସି ଉପାୟ ନ ପାଇ ମାଡ଼ଖାଇ ରହିଲେ ।

ପଦୂମଣି ଏସବୁ କଥା ଦେଖୁଥାନ୍ତି । ସେ ଦିନେ ତାର ମାଆକୁ କହିବାକୁ ଲାଗିଲେ, "ପୁଅ ନା ଦେଲୁ ପୁରୁଷୋତ୍ତମ ଏବେ ତୋ ପିଠିରେ ବାଜେ ନିଧୂମ ।"



# କବି ଯଦୁମଣିଙ୍କ ସଙ୍ଗୀତାବଳୀର କେତୋଟି କବିତା

## ସଖୀ ପ୍ରତି ରାଧାଙ୍କ ଉକ୍ତି

ମୋହ ଗତି ଏକା ଶ୍ରୀପତି ଦୃଷ୍ଟିରେ । ୦ ।

ନାହିଁରେ ଜୀବନ ଧନ    କାହିଁରେ ପ୍ରୟୋଜନ
ଏହୁ ଗୁରୁଜନ ଜାତି ପତିରେ । ୧ ।
ମାନସ ନୟନ ପ୍ରାଣ    କରିଛି ମୁଁ ସମର୍ପଣ
ଦର୍ପଣ ପରି ତାହାକୁ ପ୍ରୀତିରେ । ୨ ।
ସହି ମୋ ମାନାପମାନ    ସେହି ସୋଦର ସମାନ
ମହୀପରି ବହିଅଛି ଚିତ୍ତରେ । ୩ ।
ତୁ ଯେ ବୋଲୁଅଛୁ ମୂଢ଼    ମୁଁ ଯେ କରିଅଛି ଦୃଢ଼
ସେ ଶ୍ୟାମ ସ୍ନେହକୁ ଏ ଜଗତରେ । ୪ ।
ମାନ୍ଧାତା ବଦନ୍ତି ରସେ    ବସିଥିବ ତାଙ୍କ ପାଶେ
ଏହି ବାଞ୍ଛା ମୋର ଘନ ରତିରେ । ୫ ।

## ବିପରୀତ ରତି ପାଇଁ ଚେଷ୍ଟୁ

(ରାଗ-କେଦାର-ତାଳ ଆଦି)

ମୁଗ୍‌ଧେ ଉନ୍‌ମାଦ ରଙ୍ଗରେ    ସାଜ ସାଜ ସୁବେଶ ତନୁକୁ ଆଜ
ବିରାଜ ମୋ ପୁରେ ଧନ ତୁ (ଘୋଷା)

କେ ଜାଣେ ଗୋ ଏହା ବୋଲିବାରେ ତୁ ଟେହ୍ଲାଇ
ତେଜିକ କେଳେ ନିତମ୍ବ ଦେବୁ ଦୋହଲାଇ ।
(ପଡ଼) କଟିରେ କିଙ୍କିଣୀ, ବାଜିବ କଣି କଣି
ନାସେ ନାସାମଣି, ଦୋହଲିବାରେ ଅଣି
ମାଦ ସୁଖକୁ କଣି ଆଣିବ ଇଷିତେ । ୧ ।

ସ୍ୱକର୍ମ ଉତ୍ରୁ ସନ୍ଧିକ ନ ଗୃହିଁବୁ ଡ଼ାଳେ
ଗୃହିଁ ମଦନେ ମାତ୍ତିବୁ ଆନ ଦେଲ୍ଲବେଳେ
(ପଡ଼) ଚଞ୍ଚଳ କୁଣ୍ଡଳ ଦୋହଲି ହାରପରେ
ଗୃହୁ ଚିକୁର ଫିଟି ଖେଳିବ ଚରମରେ
କୁସୁମ ବୃନ୍ଦ ବୃଷ୍ଟି ହୋଇବ ଶଯ୍ୟାପରେ,
ମଳି ମଳି ହୋଇ ରହିବୁ ଦୃଷ୍ଟିତେ । ୨ ।

ଗୃହିଁଲେ ଜଂଘାଜଘନ ଶୋଭାକୁ ସେ କାଳେ
ମୋ ଉରେ ଉରଜ ଦେଇ ଭିଡ଼ିବୁ ଚପଟଳେ
(ପଡ଼) ମାରିବୁ କରଜକୁ, ଚନ୍ଦ୍ର ସାଢନେ ଜଳି,
ଚନ୍ଦ୍ର ଚହଟି ଯିବ ସର୍ବାଙ୍ଗରେ ଖେଳି,
ଜାତ ମହାପ୍ରଳୟ ରସ ତରଙ୍ଗେ ମିଳି
ବରି ନପାରି ଭୁଞ୍ଜି ଥରିବୁ ଅବଶ୍ୟ । ୩ ।

ଉଲୁସାଇବାରେ ଜନୁ ଗଣ୍ଡେ ଦେଇ ମୁଖ
ଚୁମ୍ବିବା ବେଳେ ପୂରିବ କହ କେଉଁ ସୁଖ,
(ପଡ଼) ନାହିଁ ନାହିଁ ଘୋଷି ଭାଷିବୁ ହସି ହସି
ଭାଲେ ନେହକୁ ଖୋସି, କରଦ ଘାତେ କଷି
ଗଣ୍ଡେ ଗଣ୍ଡକୁ ଘଷି ଚୁମ୍ବନ ଦାନେ ରସି
ଅଧର ପାନ ବେଳେ ଗୃହିବୁ ରସନ । ୪ ।

ବିନ୍ଦୁ ବିନ୍ଦୁ ଶ୍ରମଝାଳ ପଡ଼ିବ ମୁଖରେ,
ଫୁଲି ଉଠୁଥିବ ନାସା ସମୀର ପ୍ରଖରେ,
(ପଡ଼) ··· ··· ··· ରଙ୍ଗ ନୟନ କୋଣେ,
ଗୃହିଲା ପରି ହୋଇ ନ ଗୃହିଁବୁ କ୍ଷଣେ
ପାରଦ ପରି ରସ ଝଳକ ହେବ ଏଣେ
ବାରି ନବାରି ଭୁଞ୍ଜି ହାରିବୁ ଚେତନା । ୫ ।

ଉପାଇ ଷସିବୁ ଯେବେ ସୁଖ ପାରବାରେ
ସୁନାସୀର ହୋଇବ ମୁଁ ରସିକ ସଂସାରେ ।
(ପଡ଼) ଘୋର ମାର ଶର ମାରଣ କରେ ଉର
ବାରଣ ହେଉ ତୁକ କାରଣେ ସମାବର
ଶରଣଗତକୁ ତୁ ଉଦ୍ଧାରଣ କର
ବନାୟୁକ ସିଂହ ଭୂପତି ବଦନ୍ତି । ୬ ।

## ଅନୁରାଗ—ରାଗ ସୁରଠ

( ତାଳ-ଏକତାଳି )

ଧଞ୍ଜ ଖଞ୍ଜ ଉଚ ପୀବର ଉରଜା ଗଣ୍ଡ ଗୃହିଁରେ । ° ।
ଭଲ ତା ନୟନ-କ ଣ ରୂପ ଯୋଗ ବନା ପ୍ରାଣ, ଦେଲେ ତହିଁରେ । ୧ ।
କାଞ୍ଚିଁରେ ବଦନ ଶଶୀ ଫେରାଇ ଅଳପ ହସି, ନେଲ ମୋହିରେ । ୨ ।
ଯେତେ ଅନୁରାଗ ଭାବ କେତେ ସାଉକାରେ ଲୋଭ ଥିଲ ତହିଁରେ । ୩ ।
ନୃପ ମାନଧାତା ଗିର ସେ କାଳେ ଯା କଲ ମାର ନୋହେ କହିରେ । ୪ ।

## ସେ କି ରସିକାରେ ଗଣା

( ରାଗ-ଆଶାବରୀ, ତାଳ-ଝୁଲ )

ସେ କି ରସିକରେ ଗଣାରେ ଯେ କି ନ ଗୃଖିଛି ପ୍ରୀତି ପଣାରେ । ° ।
ତା'ର ଥିଲେ ଇନ୍ଦ୍ର ସଂପତ୍ତି ସ ର ବଗ୍ଧର ସେ ବିପତ୍ତି
ଯାର ନାହିଁ ସୁ ରସବନ୍ତି, ଜଇମତି ତା'ର ବଡ଼ ଊଣାରେ । ୧ ।
ଯୋଗୀ ଯୋଗ ଭଙ୍ଗ ନବାନା, ଭୋଗି ଭୋଗ ପାଇଁ ସେ ସିନା
ଘରଙ୍କି ହଏ କାମ ବେଦନା ଏହି ରୀତି ଯା'କୁ ନୋହେ ଜଣାରେ । ୨ ।
ପ୍ରକାଶ ସୁବାସ ମଧୁର, ପରସନ୍ନ ମୁଖ କହ୍ଲାର
ଦରଶନ ନୋହିଛି ଯା'ର ପଦ୍ମ ସମ ନେତ୍ର ଥିଲେ କୃଣାରେ । ୩ ।
ନବ ଦୁର୍ଗାଧିପ ରଚିତ ଭାଗ୍ୟ ଥିଲେ ଅପରମିତ
ଯୋଗ୍ୟ ହେବ ସ୍ନେହକୁ ହତ ଭଗବନ୍ତର ଥିଲେ କରୁଣାରେ । ୪ ।

## ରହିଯାଅରେ ବନ୍ଧୁ

( ରାଗ-ଆଶାବରୀ, ତାଳ-ଝୁଲ୍ )

ଚାହିଁ ଯାଅରେ ବନ୍ଧୁ ରହିଯାଅରେ ହସି କଥାପଦେ କହି ଯାଅରେ
ଅରୁଣା ଧଳିରୁ ତରୁଣୀଙ୍କି ବାଳା, ମୋ ଠାରେ କରୁଣା ବହିଯାଅରେ । ୦ ।
ଛଳ ପରିହାସ ପହିଯାଅରେ, କଳପନା ମୋର ସହିଯାଅରେ,
ରଦନ ମଞ୍ଜୁଳ ବଦନ ଛପାଇ, ମଦନ ଶରେ ନ ଦହିଯାଅରେ । ୧ ।
ମୋ ଅଙ୍କ ତଳପେ ଶୋଇଯାଅରେ, ମନମୋହିନୀ ଥରେ ମୋହିଯାଅରେ,
ଚିତ୍ତକେତନକୁ ଉଡ଼ାଇ ଅଭାବେ, ପ୍ରୀତି-ନାବ ମଙ୍ଗ ବାହିଯାଅରେ । ୨ ।
ଭାବେ ନଶିଥିଲି ମୁହିଯାଅରେ, ସଂସାରେ ଯଶ ରୁହାଇଯାଅରେ,
ଚିର କ୍ଷୁଧାର୍ତ୍ତିଙ୍କୁ ସାରଙ୍ଗ ଅଧରୁ ସୁଧାରଧାର ବୁହାଇଯାଅରେ । ୩ ।
ନିର୍ଦ୍ଦୟାବନ୍ତ ତୁ ନୋହିଯାଅରେ, ଦୟାମ୍ଭୁଧି ଏବେ ହୋଇଯାଅରେ,
ନବଦୁର୍ଗ ରଣେ ପକାଉଛି ସଣ ନିଧୁବନ ରସ ଦେଇଯାଅରେ । ୪ ।

## ବସନ୍ତ ଗୀତ

( ରାଗ-ଯମକ ରଜ, ତାଳ-ଯତିତାଳ )

ସୁଧୀର ସ୍ୱର-ବସନ୍ତ ଗୀତରେ
କି ରଚିଛୁ ମୋହ ପରେ କୁସୁମ ଶିର । ୦ ।

ତ୍ରୁର—ମାରଣ ଶର ମାର    ମାର୍ଗଣ ଗୁଣ ତାର
ବାନ୍ଧଇ ଅସୁମାର    ମରଣ ଯହିଁ ଆର
ବରଣ ଗଢ଼ ତା'ର    ହାରକ ହେଉ ତାର । ୧ ।
ସ୍ୱାର—ଶାରଦ ତାରକାର    ଧାର ଲପନା ବାର
ବେନ ବସୁଧୀ କାର    ହେବ ମୁଁ ତୁ ବଗୁର
କରୁଛନ୍ତି କୁହାର    ମୋ ମଣିମୟ ହାର । ୨ ।
ଗାର—ନ କ୍ଳାନ୍ତି ବସୁଧାର    ନୟନୁଁ ଧାର ଧାର
ନ ବୁହା ମାରଧାର    ସୁବାଣୀ ତୋ ଉଚ୍ଚାର
ମୁଁ ପର ପଣସୁର    ନ କର ନାରଖାର । ୩ ।

ଚାର—ଅଦୋଷେ ଲୁଣ୍ଠାଉ     ମନକୁ ତୋ ଟହ୍ଲର
ତୋ ମନକୁ ଘଚ୍ଛର     କେବଣ ଉପଚ୍ଛର
ସେବାକୁ ନ ଦେବାର     କାରଣେ ଦୁଷିବାର । ୪ ।
ଠାର—କି ଅବା ଅସ୍ୱୀକାର     କଲ ତୋ ଆଜ୍ଞାଭର
ସରୋଷେ କରୁ ଆର-     କ୍ତ ଲୋଚନ ବାର
ଜାଓଷ୍ଟୁ ହସ୍ତଆର     ନ କମ୍ପା ବାରମ୍ବାର । ୫ ।
ଝାର—ଖଣ୍ଡ ପଉନ ସାର     ସଦୁମ୍ବା କର ଯାର
ଇଷ୍ଟାତ ତରୁ ଆର     ସନ୍ତକ ସେ ରାଜାର
ଦୋଷ ଥିଲେ ହଜାର     କ୍ଷମରେ ଗଳା ହାର । ୬ ।

## ଆ ଜୀବନ ଧନୀ

ଆ ଜୀବନ ଧନୀ, ତୋ ପ୍ରେମେ ମୁହିଁ ଆଜୀବନ ଧନୀ । ୦ ।
ରାଜୀବନେତ୍ରା ଆଜ କମ୍ପାମାନ ତାଜବ ହେଉଛି ଦେଖି ଏ ମାନ
ରାଜ ହେଉନାହୁଁ ମୋ ଗୃହଁଗିରେ ସାଜିଲକ ଏହା ରସନଧିରେ । ୧ ।
ବାଣୀ ଭାଙ୍କ ପାଜ କାଜ ମଦନ ଗାଜ ବନ୍ଧ ମଧ୍ୟେ ହଏ କଦମ
ଝାଞ୍ଜି ବାଜିଲା ପଲ୍ଲବ ପ୍ରକାର ଭ୍ରଜ ପଡୁଛି ଅନା ରାମାବର । ୨ ।
ମାଜ ଦେବ ମୁଖ ଅଙ୍ଗେ ବସାଇ ସାଜ ହେବ କେଶ ଚଉ ରସାଇ
ଲଞ୍ଜି କନ୍ଧୁଳ ଗାତେ ଅକ୍ଷଯୁଗ ରଞ୍ଜି ଦେବ ବଳାଇ ଅନୁରାଗ । ୩ ।
ଖଞ୍ଜିବ ଯଥା ସ୍ଥାନେ ଆଭରଣ ଗଞ୍ଜିବ ଦର୍ପକ ଗାରିମା ପଣ
ମଞ୍ଜିଷ୍ଠା ରାଗେ ଲମ୍ବିବ ଯାବକ ବର୍ଜିଦେ ଗୁମାନ ଯାଉ ମୋଦକ । ୪ ।
ଅର୍ଜିବି ପାକ ଶାସନ ସମ୍ପଦ ମର୍ଜିରେ ବଢ଼ୁର ଦେ ସେହ୍ନି ପଦ
ଭଜ ମହିମା ମେରୁ ଶ୍ରୀପଦ୍ମର ଅର୍ଜି ଲେଖେ ନୃପ ଭ୍ରମରବର । ୫ ।

## ବନଜାକ୍ଷି ଶୋଭା ଗୃହଁ

( ରାଗ-ଚୋଢ଼ ପରଜ, ତାଳ-ଆଠତାଳି )

ବଡ଼ ସୁଯୋଗ ଯେ ଆଜ ନଶିଥିଲା ପାନ୍ତ୍ରି
ବଜ୍ରଧର ଅଇଶ୍ୱର୍ଯ୍ୟକୁ ଲଭିଲ ବନଜାକ୍ଷି ଶୋଭା ଗୃହଁ । ୦ ।

ତ୍ରିଭୁବନ ମୋହି　　ଭୁବନ ପୂରାଇ
　　ବେଣୁ ଘଟଥିଲି ଥୋଇ
ତରଣିଜା ତୀରେ　　ଏଣୁ ସମୟରେ
　　ପ୍ରବେଶ ମୁଁ ହେଲି ଯାଇ । ୧ ।
ବେଣୁ କରେ କୁମ୍ଭ　　ତୋଳିବା ଆରମ୍ଭ
　　କରୁଁ କରି କୁମ୍ଭସ୍ତନା
ବୃଷ ଧ୍ୱଜ ଶିର　　ମଣ୍ଡନେ ତପୂଭ
　　ବଦାୟୁ ମୁଁ କି ଚନ୍ଦ୍ରମା । ୨ ।
ସେ କାଳେ କି ଦୃଶ୍ୟ　　ହେଲି ଏକ ପାର୍ଶ୍ୱ
　　ବକ୍ଷଜ କକ୍ଷରେ ମାଳି
ରତ୍ନ ସାନୁ ସନ୍ଧି-　　କଣ୍ଠେ ନବଘନ
　　ଉଦୟୁଁ ପରାୟେ ଝଳି । ୩ ।
କଳସକୁ ରଖି　　ଶିରେ ସରୋଜାକ୍ଷି
　　ଈକ୍ଷଣାତେଷ୍ୟ ଗୃହୁଁ ମୋତେ
ମଣିଲି ପ୍ରବାଳ　　ସଂପୁଟକୁ ସ୍ମରା
　　ଝଟକି ଆସିଲି ପ୍ରତେ । ୪ ।
ଶ୍ୟାମ ରମ୍ୟ ବାଣୀ　　ସୁଧା ସମ ମଣି
　　ଆନନ୍ଦିତ ସଖା ବୃନ୍ଦ
ମୋହନ ବିଗ୍ରହ　　ପଦଯୁଗ୍ମ ବନ୍ଦେ
　　ଭ୍ରମରବର ନରେନ୍ଦ୍ର । ୫ ।

## ରସ ରଙ୍ଗିନୀରେ·····ପ୍ରାଣସଙ୍ଗିନୀରେ

( ରାଗ-ମଙ୍ଗଳ ଗୁର୍ଜ୍ଜରୀ, ତାଳ-ଆଡ଼ଖେମଟା )

ଆସେ କି ରଙ୍ଗେ ଢ଼ଳ ରସ ରଙ୍ଗିମାରେ
　　ହୁଅନ୍ତା କି ଏ ମୋ ପ୍ରାଣସଙ୍ଗିମାରେ । ୦ ।
ସେ ନବ ରଙ୍ଗିମାବର କୁନ୍ଦନ ଅଙ୍ଗିମା
　　ଯୋଗେଣ ଯୋଗ ଭଙ୍ଗିମା ଗୃହୁଭ୍ରୁ ଭଙ୍ଗିମା । ୧ ।

ବାଳାର ଚାତୁର୍ଯ୍ୟଭଙ୍ଗି କନ୍ଦର୍ପ କଉତୁକ
ସିଦ୍ଧ ବ୍ରହ୍ମଚାରୀଙ୍କ ଧୈର୍ଯ୍ୟ ଦେବତ କଉତୁକ ।୨।
ଅନୁକ୍ଷଣେ ତା ତୀକ୍ଷ୍ଣ ଈକ୍ଷଣ ଚଞ୍ଚଳ
ବନ୍ଧୁବଣା ଏଣୀ ଗୃହାଣିରୁ ତ ଚଞ୍ଚଳ ।୩।
ଲାବଣ୍ୟ ରସ ନିଧିର ଭାବ ଚମତ୍କାର
ବିଲୋକନେ ଅଙ୍ଗେ ଜନ୍ମେ ମଦନ ବିକାର ।୪।
ପ୍ରିୟ ସଖୀ କରେ କର ଭାର ଦେଇ ରଙ୍ଗେ
କଥା ହୁଅଇ ସ୍ମିତହାସେ କି ପ୍ରସଙ୍ଗେ ।୫।
ଭଲ ସୁଯୋଗରେ ଭେଟ ପଡ଼ିଛି ଛଇଳୀ
କରନ୍ତୁ କି ତାକୁ ମୋର ଗଳା ସୁନାମାଳି ।୬।
କହେ ଭୃଙ୍ଗବର କୁଞ୍ଜ ବିହାରୀ କେଶବ
ରସିକ ରାଜ୍ୟେ ମୋ ଭୁଲେ ହୁଅନ୍ତା କେ ସବ ? ।୭।

## ଧନ ତ ଅନୁକମ୍ପା ନୋହିଲରେ

( ରାଗ–ଘଣ୍ଟିଆର, ତାଳ–ଏକତାଳୀ )

ରୁଷୁ ରୁଷୁ ତ ରାତି ପାହିଲରେ
ଧନ ତୋ ଅନୁକମ୍ପା ନୋହିଲରେ ।
କରୁଣା ବନ୍ଧୁ ବୋଲି ଶରଣାଗତ ହେଲି
ଅରୁଣ ଦେଖୁ ଦେଖୁ ଉଇଁଲରେ ।୦।
ତରୁଣୀଙ୍କ ଛଇଲା ଅରୁଣାଧର ବାଳା
ଫୁରୁଣା ତୋର କାହିଁ ରହିଲରେ
କରୁଣା ଲୟା ମତ ଦନ୍ତୀ-ଗତି-ସୁଦନ୍ତୀ
ମୋ ନାଁ ଲଗାଇ କେ' କି କହିଲରେ ।୧।
ଚରଣାଶ୍ରିତ ଜନେ ଏ ରୀତି ଆରଜନେ
ସଂସାରକୁ କି ଶୋଭା ପାଇଲରେ
ତୋରଣ ସମ ମଥା ଭ୍ରମୁଛି ଯାହା କଥା-
ଷଟ୍‌ପଦ ତୋ ଅଶୁଣା ହୋଇଲରେ ।୨।

ସ୍ମରଣ କଲ୍ପ ଗୁଣ- ଗଣ ସପ୍ତଗ ଘଣ
ଏ ଦାସ ମର୍ମେ କ୍ଳେଶ କହ୍ନିଲରେ
ଝରଣା ବିମ୍ବାଧରୁ ସୁଧା କି ପିଇବାରୁ
କ୍ଷୁଧା ମରଣ ଦଶା ବହ୍ନିଲରେ । ୩ ।
କରୁଣା ଭାବ ଦେଖି ଆଶା ଚାତକ ପକ୍ଷୀ
ଭବିଷ୍ୟତରେ ନିକି ଜାଇଲରେ
ଅରୁଣା ଦରଶାଇ ଅନା ବାଟେ ସଲଖି
ଭ୍ରମର ବର ନୃପ କହିଲରେ । ୪ ।

## ବର୍ଷା କାଳରେ ନାୟିକାର ଉକ୍ତି

( ରାଗ-କେଦାର କାମୋଦୀ, ତାଳ-ଆଡ଼ତାଳୀ )

ତୁ ମୋର ସବୁ ଭରସାରେ ବନ୍ଧୁ
ଏଣୁ ଅବଧାନ ଥିଲେ ମୋହଟାରେ କି କରିବ ଏ ବରଷାରେ ।

ବିରହୀ ମାରିବ ବୋଲି କାମଦେବ ହୋଇଅଛି ଆଜ ସଜ
ଅନା ଅନା ମୀନ- ନୟନା ଆସିଛି ଚଢ଼ି ଘନ ମତ୍ତ ଗଜ । ୧ ।
ଫୁଲ ଶର ଧନୁ ଭଲ ସାଜ ଅଛି ଦେଖ ଏ ଇନ୍ଦ୍ର କୋଦଣ୍ଡ
ଘଡ଼ ଘଡ଼ ରଡ଼ ଝଙ୍କାର ଶବଦେ ବନ୍ଧୁ ଅଛି ଧାର କାଣ୍ଡ । ୨ ।
ଭେକ ଡାହୁକ ନୀଳକଣ୍ଠ ଶବଦେ କାମ ନିଶାଣ ବାଜିଲା
ଚଉ ପାଶରେ ବିଜୁଳି ଝଟ ଝଟ ଜୟ ପତାକା ସାଜିଲା । ୩ ।
କାମିନୀମାନେ ଯେ କାମରେ ହରଷ ବିରହୀ ବିରସ ହେଲେ
ବନ୍ଧୁ ପାଶେ ଥିଲେ କାମକୁ କି ଡର ଭ୍ରମରବର ଭଣିଲେ । ୪ ।

## ନାୟିକାର ଉକ୍ତି

( ରାଗ-ପଞ୍ଚମ, ତାଳ-ଆଦିତାଳ )

ଆନେ ମନ ନାହିଁ ଟେନ ମାନେ ବାସନା । ୦ ।
ସାର ସାରସ ଲୋଚନା ମାର ମାରେ ବାରେ ଅନା
ପାରୁ ନାହିଁ ତୋର ବିନା ମଞ୍ଜୁ ବଚନା । ୧ ।

ଜଡ ନବନୀତ ଦେଖି  କ ତପରୁ ଚୋତେ ପାଇ
ବଚ ବୃତ ହ୍ବତ ନୁହେଁ କୁନ୍ଦ ଦଶନା । ୨ ।

ମତ୍ତଗଜ ଗତି ମିତ  ବଚଗ୍ବଚ ରଚେ ମାଚ
ବଭଜ ଭଜନା ସନେ ବାଜୁ ରସନା । ୩ ।

କର ରୁହେ ଶୀତକର  କର ଗୃଳନ ନକର
କରେ କର ଦେଇ କର୍ଣ୍ଣେ ଚଳା ରସନା । ୪ ।

କହେ ସେ ଭ୍ରମରବର  ହସେ ମଣ୍ଡିଲା ଅଧର
ବାସେ ହତାଦର କରି ହେଲା ପ୍ରସନ୍ନା । ୫ ।

## ଆଗନ୍ତୁକା ପ୍ରତି

ରେ ସରସାନନା ରସାର ସାର ରସାଳସା ଯୋଷା ଦମ୍ଭ ନ ସାର । ୦
ଭୁରତ-ମୂରତ ସୁରତ ଦାନୀ, ଶତବାମା ଶତକୁମ୍ଭ ସୁଗାନୀ । ୧ ।
ଆଳୀ ଆଳମାଳକାରେ ବାଳୀଶ ଗୃଳବା ଚରଣ କରେ ବାଳଣ । ୨ ।
କ କଣରେ ମତ୍ତ କଣ୍ଠଦ୍ରଗତ, ଶ୍ରୀକର ଧରି କଙ୍କର ହୁଅନ୍ତ । ୩ ।
ଅନଙ୍ଗ ରଙ୍ଗରେ ରଙ୍ଗ ଅଧଦ୍ବ ସଙ୍ଗ ଭଙ୍ଗ ବେଳେ ହୁଅନ୍ତା ପର। । ୪ ।
ଭଣି ଯଦୁମଣି ରମଣୀମଣି ଅଣିମାଦ ସୁଖ ବଅନ୍ତା ଗଣି । ୫ ।

## କୃଷ୍ଣଙ୍କ ପ୍ରତି ସଖୀ ଲଳିତା

ରସ ନାଗର ! ବସ ଯାଇ ରାଧା ଆଗର । ପଦ ।

ବାସର ନଶିରେ ତାର  ପାଶରୁ ନୋହୁ ବାହାର
ଜାଗିଅଛୁ ଆମ୍ଭେ ଜାଗର ହେ । ୧ ।

ଆଶାରେ ଜୀବନ ରଖି  ଆଶାରେ ନବେଶି ଆଖି
ଅଛୁ ସଖୀ ଶୁଣ କୃପା ସାଗର ହେ । ୨ ।

ବହେ ତା ନେତ୍ରୁ ଲୋତକ  ଦହେ ତାକୁ ହରାନ୍ତକ
ନୋହେ ନଦ୍ରା ହୋଇଛି ଉଜାଗର ହେ । ୩ ।

ସିରନ୍ଧା ନଳ ତ୍ରିବଳ          ହୋଇ ଗଲାଣି ଦୁର୍ବଳ
ଅଧିକ ଜଳଇ ଦେଲେ ଅଗର ହେ । ୪ ।
ନବ ଦୁର୍ଗ ପନ୍ତ ଭଣି          କୁଞ୍ଜବନେ ବେନୁ ପାଣି
ବିଳମ୍ବ ନକର ଚଳ ବେଗର ହେ । ୫ ।

## ଅଭିସାରିକା

କୁଟିଳ କୁନ୍ତଳ ମାଳ କବରୀ          ସାଜ ଶ୍ରୀଅଙ୍ଗେ ବେନସ୍ଥି କସ୍ତୁରୀ
ଅମିତ ରତ୍ନ ମଣ୍ଡନେ ବିଭୂଷି          ହୋଇଛନ୍ତି ହରଷ ନବ କିଶୋରୀ
ପିନ୍ଧିଛନ୍ତି ନୀଳ ଶାଢ଼ୀ କି କରି          ସଙ୍କେତ କରି କର୍ଣ୍ଣଗତ କରି । ୧
ବରଷେ ନୀରଦ ନିରନ୍ତେ ନୀର          ପଙ୍କିଳ ପଥେ କରଇ ସଞ୍ଚାର
ଖସନ୍ତେ ଚରଣ ଗମାପଣିର          ବହେ ଜଳଧାର ହୁଏ କାତର
କହଇ ଗ୍ରିବ ମାନ ବିଗ୍ରିର । ୨ ।
ଘୋଟିଛି ଘନ ଘୋର ଅନ୍ଧକାର   ନେତ୍ରକୁ କିଛି ନୋହୁଛି ଗୋଚର
ଫଣି ମଣିରେ ଉଦ୍ଧାଡ଼ ଶ୍ରୀକର          କରଇ ତାଙ୍କ ଆଲୋକ ନିବାର
ମଦନେ ଉନସ୍ତନା ଏ ଛାର । ୩ ।
ଅଙ୍ଗେ ମାନସକୁ ରଜୁଟ ଦେଇ          ଅନଙ୍ଗ ମନ୍ତ୍ରୀ ବଳରେ ଚଳଇ
ଉତ୍କଣ୍ଠା କଣ୍ଠ ଉପରେ ଅନେକ          ଅଛି ହେ ପ୍ରେମ କପଟ ଲଗାଇ
ସୁରତ ରଣେ ଭୟ ନ ପାଇ । ୪ ।
କାଳନ୍ଦୀ କୂଳେ କଦମ୍ବ ମୂଳରେ     କୃଷ୍ଣ ବସିଛନ୍ତି ସ୍ନେହ ଭୋଳରେ
ଚନ୍ଦ୍ର ରାଧା ରୂପ ହୃଦ ସ୍ଥଳରେ    ମିଳିଲେ ସେ ଯାଇ ସେହି କାଳରେ
ଭଣିଲେ ମାନଧାତା ଲୀଳରେ । ୫ ।

## ଲଳିତା ପ୍ରତି ଶ୍ରୀରାଧା

( ତାଳ-ଝିପତା )

ହରି ଭୁଲେ ମୋ ପ୍ରୀତି          କରି ଧାଅ ଗୋ ଦୂତୀ । ପଦ ।
ନବ ତମାଳ ତନୁ          ନନ୍ଦେ କୋଟି ଅତନୁ .

ସଖୀ ଦେଖିଲ ବନୁ      ନ ଗଲେ ସେ ମନୁ
ଆସିବା ବେଳେ କାହ୍ନୁ      ଧରି ମୋହନ ବେଣୁ
ସଙ୍ଗରେ ଘେନ ଗୋପ-      ସୁତ ସହିତେ ଧେନୁ
ଶ୍ରୀ ବୃନ୍ଦାବନେ ଶ୍ରୀପତି । ୧ ।

ମୁଁ ଯେ କହୁଛି ଯେତେ      କର ଧରି ସୁଚତେ
କ କଜ ମୁଁ ପରତେ      ଯିବ ଯିବ ଭୁଶତେ
ଶ୍ୟାମ ବନ୍ଧୁ ପୂରତେ      କାମନା ମୋର ଏତେ
କହ ଉପାୟୁ ମୋତେ      କାମ କର କରତେ
ଗୁପ୍ତ ହେଉଛି କରତ । ୨ ।

ଦେଖିଲେ ଲୋକ ଅକାର୍ତ୍ତି      କଲେ ପଛ ଅପ୍ରୀତି
ଏଥିକ କାହିଁ ଖ୍ୟାତି      ଏକା କୃଷ୍ଣ ସଙ୍ଗତି
ଚିନ୍ତା କରେ ମୋ ମତି      ସନ୍ତତେ ହବା ରତି
ହେଉ ପଛେ ଅମାତ      ସହି ମନ ଭାରତି
ଭାଷିଲେ ଭାଷୁ ଜରତି । ୩ ।

ନ ପାଇଲେ ତା ରତି      ନ ପାରଇ ବରତି
ନୀଳମଣି ମୂରତି      ନ ଦେଖିଲେ ଯଦୁପତି
ନ ଜାଣଇ ଶ୍ରୀମତି      ଜାଣିଥାଅ ଗୋ ଦୂତି
ବିନାୟକ କେଶରି      ମାନଧାତା ବଦତି
ଦେଇ ରଖାଅ କାରତି । ୪ ।



# ରାଘବ ବିଳାସର କେତୋଟି ଦୃଷ୍ଟାନ୍ତ

ଯଦୁମଣିଙ୍କ ରଚନା ମଧ୍ୟରେ 'ରାଘବ ବିଳାସ' ଓ 'ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର' କାବ୍ୟ ଦୁଇଟି ଉଚ୍ଚକୋଟୀର ହୋଇ ପାରିଛି । ଯଦୁମଣି ନିଜର କାବ୍ୟ ରଚନାରେ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ପଦାଙ୍କ ଅନୁସରଣ କରିଥିଲେହେଁ ନିଜର ମୌଳିକତା ପ୍ରତିପାଦନ କରି ଉତ୍କଳ ସାହିତ୍ୟ ଭଣ୍ଡାରକୁ ବିମଣ୍ଡିତ କରି ପାରିଛନ୍ତି । ତାଙ୍କର ବର୍ଣ୍ଣନା ଚାତୁରୀ ପ୍ରତ୍ୟେକ ସ୍ଥଳରେ ହୃଦୟସ୍ପର୍ଶୀ ହୋଇ ପାରିଛି ।

ପୁତ୍ର ବିୟୋଗ ଫଳରେ ଯଦୁମଣି ଦୁଃଖରେ ଭାଙ୍ଗି ପଡ଼ିଥିଲେ । ଶ୍ରୀକ୍ଷେତ୍ରରେ ଜଗନ୍ନାଥଙ୍କୁ ନିଜର ଅନ୍ତରର ଖେଦୋକ୍ତି ଜଣାଇବା ପରେ ଇଟାମାଟି ଫେରିଥିଲେ । ପରେ ଶ୍ରୀ ରଘୁନାଥଙ୍କ ଦର୍ଶନ କରିବା ଉଦ୍ଦେଶ୍ୟରେ ଓଡ଼ଗାଁ ଯାଇଥିଲେ । ସେଠାରେ କିଛିଦିନ ଅବସ୍ଥାନ କରି ରାମଗୀତା ପାରାୟଣ କରୁଥାନ୍ତି । ସେ ପୂର୍ବରେ ପ୍ରବଚନ ମାଧ୍ୟମରେ ଶୁଣିଥିଲେ, "ରାମଗୀତା ଯେ ପାପ ନାଶ ନକରଇ, ସେ ପାପ ସଂସାରରେ ଖୋଜି ପାଉନାହିଁ ।" ତେଣୁ ଯଦୁମଣି ଶ୍ରୀରାମ ଚନ୍ଦ୍ରଙ୍କ ଚରଣରେ ନିଜକୁ ନିୟୋଜିତ କରି ଦେଇଥିଲେ ।

ଥରେ ରାଜା ବିନାୟକ ସିଂହ ମାନଧାତା ରାଣୀ କୁମୁଦିନୀଙ୍କ ସହ ଓଡ଼ଗାଁ ଶ୍ରୀ ରଘୁନାଥ ଠାକୁରଙ୍କ ଦର୍ଶନକୁ ଯାଇଥାନ୍ତି । ସେଠାରେ ଯଦୁମଣିଙ୍କୁ ଦେଖି ରାଜା ଓ ରାଣୀ ପରମ ସନ୍ତୋଷ ଲାଭ କରିଥିଲେ । ଶ୍ରୀରାମ, ଲକ୍ଷ୍ମଣ ଓ ସୀତାଙ୍କର ସୌମ୍ୟ ପ୍ରତିମା ଦର୍ଶନ କରିବା ପରେ ରାଣୀଙ୍କ ହୃଦୟରେ ଅପୂର୍ବ ଭକ୍ତିଭାବ ଜାତ ହୋଇଥିଲା । ରାଜା ଓ ରାଣୀ କବି ଯଦୁମଣିଙ୍କୁ ଅନୁରୋଧ କରିଥିଲେ ଶ୍ରୀରାମଚନ୍ଦ୍ରଙ୍କ ଉପରେ ଖଣ୍ଡିଏ କାବ୍ୟ ରଚନା କରିବା ପାଇଁ । ଯଦୁମଣି ଜାଣିଥିଲେ ଯେ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ଦ୍ୱାରା ଓଡ଼ଗାଁରେ ମନ୍ଦିର ଓ ମୂର୍ତ୍ତି ପ୍ରତିଷ୍ଠିତ ହୋଇଥିଲା ।

ଉପେନ୍ଦ୍ର ଭଞ୍ଜ ଚମତ୍କାରକ ମନ୍ତ୍ର ବଳରେ 'ବୈଦେହୀଶ ବିଳାସ' ନାମକ ମହାକାବ୍ୟ ରଚନା କରି ପାରିଥିଲେ । କବି ଯଦୁମଣି ସେଠାରେ ସଂକଳ୍ପ କରିଥିଲେ ଯେ ଶ୍ରୀ ରଘୁନାଥଙ୍କ ନାମାନୁସାରେ "ରାଘବ ବିଳାସ" କାବ୍ୟ ରଚନା କରିବାକୁ । ଏଣୁ ସେ କାବ୍ୟରେ ସ୍ୱୀକାର କରିଛନ୍ତି—

"ରାଘବେ ରାଘବ ତୋଷ ନାମ "ରାଘବ ବିଳାସ"
ଭାଗ ଲଭିବୁ ପ୍ରକାଶ କରି ଅଗ୍ରଣୀ
ତରଣି ବଂଶୁ ଉଦ୍ଭବ ଏ ରସ ଶ୍ରେଣୀ ।"

କବି ଯଦୁମଣି "ରାଘବ ବିଳାସ" କାବ୍ୟ ରଚନା କରି ରାଜା ବିନାୟକ ସିଂହ ମାନଧାତାଙ୍କ ନାମ ଖ୍ୟାତ କରିବା ପାଇଁ ନିଷ୍ପତ୍ତି କରିଥିଲେ । ଏଣେ ରାଣୀ କୁମୁଦିନୀଙ୍କ ଅନୁରୋଧ ଯଦୁମଣିଙ୍କୁ ଅତ୍ୟଧିକ ପ୍ରୋତ୍ସାହନ ଯୋଗାଇ ଦେଇଥିଲା । ଯଦୁମଣି 'ରାଘବ ବିଳାସ' କାବ୍ୟକୁ ପ୍ରିୟ ରାଜା ବିନାୟକଙ୍କ ନାମରେ ଭଣିତା କରି ରାଜାଙ୍କୁ ସେ ଉପହାର ସ୍ୱରୂପ ପ୍ରଦାନ କରିଥିଲେ ।

ବ୍ରାହ୍ମଣମାନଙ୍କ ଅସନ୍ତୋଷ ଫଳରେ କବି ଯଦୁମଣି ନିଜର ପୁଅକୁ ହରାଇଥିବା ମନେକରି କାବ୍ୟ ଆରମ୍ଭରେ ବ୍ରାହ୍ମଣମାନଙ୍କ ପ୍ରାଧାନ୍ୟକୁ ସ୍ୱୀକାର କରି ରଚନା କରିଛନ୍ତି—

"ପ୍ରଥମୁଁ ବନ୍ଦଇ ଭୂଦେବ ଅଂଘ୍ରି ଅଧୀଶ ବକ୍ଷେ
ସପତ ସାଗର ଶୋଷକ ବଂଶ ଧ୍ୱଂସି ଅଲକ୍ଷେ ।" । ୧ ।

କବି ଯଦୁମଣି 'ରାଘବ ବିଳାସ' କାବ୍ୟର ମଙ୍ଗଳା ଚରଣରେ ପ୍ରଥମେ ଭୂଦେବ ଅର୍ଥାତ୍ ବ୍ରାହ୍ମଣ ଅଂଘ୍ରି ଯେ ପାଦ ଅଧୀଶ ଅର୍ଥାତ୍ ବିଷ୍ଣୁଙ୍କ ବକ୍ଷରେ ପାଦଚିହ୍ନ ଶୋଭା ପାଉଅଛି । ଯେଉଁ ବ୍ରାହ୍ମଣମାନେ ସପତ ସାଗର ଶୋଷକ ଅର୍ଥାତ୍ ଅଗସ୍ତି ମୁନିଙ୍କ ବଂଶଧର ଅଲକ୍ଷ୍ୟେ ଯେ କ୍ଷଣକରେ ଯଦୁବଂଶକୁ ଧ୍ୱଂସ କରିଥିଲେ ତାହାଙ୍କୁ ବନ୍ଦନା କରିଛନ୍ତି ।

ବନ୍ଦେ ରସାସୁତା ପତିର ଧରାଧର ଯେମନି
ନର୍ଜବ ପରବନାଶନେ ସନ୍ତକଜନ ପାଳନ । ୨ ।

ପୁନଶ୍ଚ ରସାସୁତା ଯେ ସୀତା ତାଙ୍କ ପତି ଶ୍ରୀରାମଚନ୍ଦ୍ରଙ୍କର ଧନୁର୍ଧର ଅର୍ଥାତ୍ ଅନନ୍ତ ଶସ୍ତ୍ର ରୂପ ଯିଏ କି ଅସୁର ବିନାଶ କରି ନିର୍ଜର ଯେ ଦେବତାଙ୍କ ପର ଅର୍ଥାତ୍ ଶତ୍ରୁ ବିନାଶନ କରି ସାଧୁମାନଙ୍କୁ ରକ୍ଷା ପାଇଁ ତତ୍ପର ତାହାଙ୍କୁ ବନ୍ଦନା କରିଛନ୍ତି ।

ଗରିଷ୍ଠ ଦଶା ଏ ରାଷ୍ଟ୍ରର କଷ୍ଟ ଫେଡ଼ ଦୁସ୍ତର
ଚନ୍ଦ୍ର ପେଷି ଶକ୍ର ବାହନ-ଭ୍ରାତ ଅରି ସଂହାର । ୩ ।

ଅର୍ଥାତ୍ ବର୍ତ୍ତମାନ ରାଜ୍ୟରେ ଦେଖା ଦେଇଥିବା ଗରିଷ୍ଠ ଦଶା ଯେ କଠିନ ସମସ୍ତର କଷ୍ଟ ଦୂର କର, ଯେପରି ଚନ୍ଦ୍ର ପଠାଇ ଶକ୍ର ବାହନ ଐରାବତ ହସ୍ତୀର ଅରି ଯେ ଶତ୍ରୁକୁ ସଂହାର କଲେ, ସେପରି ରାଜ୍ୟକୁ ରକ୍ଷା କରନ୍ତୁ ।

ଅର୍କବଂଶୁ ହୋଇ ଉଦ୍‌ଭବ ତର୍କେ ଶକ୍ର କୁମର
ବାଳାର୍କ-ନନ୍ଦନ ଆର୍ତ୍ତିକୁ ନାଶ କଲ ସତ୍ୱର । ୪ ।

ଅର୍କବଂଶୁ ଅର୍ଥାତ୍ ସୂର୍ଯ୍ୟବଂଶରେ ଜନ୍ମ ଲଭକରି ତର୍କେ ଯେ ଛଳରେ ଶକ୍ର କୁମର ଯେ ବାଳୀକୁ ମାରି ବାଳାର୍କ ନନ୍ଦନ ଯେ ସୁଗ୍ରୀବର ଆର୍ତ୍ତି ଯେ ଭୟ ହରଣ କରି ପାରିଛନ୍ତି ।

ହରୀନ୍ଦ୍ର ନାଶିଣ ହରିକ ହରି ହରି ଆସନେ
ହରି ବିଭୂଷଣ ମଇନ୍ଦ ଘେନ ବସି ସଘନେ । ୫ ।

ହରୀନ୍ଦ୍ର ଯେ ବାଳୀକୁ ବିନାଶକରି ହରିକ ଅର୍ଥାତ୍ ସୁଗ୍ରୀବଙ୍କୁ ହରି ଯେ ବିଷ୍ଣୁ ରୂପ ରାମ ହରି ଆସନେ ଅର୍ଥାତ୍ ସିଂହ ଆସନେ ବା ସିଂହାସନରେ ବସାଇଲ ଏବଂ ହନୁ ଯେ ମାଙ୍କଡ ଓ ସୁଗ୍ରୀବ ମଇନ୍ଦଙ୍କୁ ଧରି ସବୁବେଳେ ଯୁଦ୍ଧ ପାଇଁ ଆଲୋଚନା କରି କପରି ହ-ଭୂଷଣ ଅର୍ଥାତ୍ ଚନ୍ଦ୍ରମା ମୁଖୀ ସୀତାଙ୍କୁ ରାକ୍ଷସ କବଳରୁ ଉଦ୍ଧାର କରାଯିବ ।

ଅଷ୍ଟ ନେଇଁ ପାଣି ଆୟୁଧ ଦୁହିତାର ବଚ୍ଛେଦେ
ହରି ହରି ନଗୁଁ ଅଣାଇ ମେଲ ଅର୍ଣ୍ଣବ ମଧ୍ୟେ । ୬ ।

ଅଷ୍ଟନେତ୍ର ଯେ ବ୍ରହ୍ମାଙ୍କ ପାଣି ଯେ କରର ଆୟୁଧ ଯେ ବେଦ ତାହାଙ୍କ ଦ୍ରୁହିତା ବେଦବତୀ ରୂପୀ ସୀତାଙ୍କ ବିଚ୍ଛେଦରେ ହୀନ ଯେ ବାନରମାନଙ୍କ ସହାୟତାରେ ହରି ଯେ ହରଣକରି ନଗୁଁ ଯେ ପର୍ବତ ଶିଖରୁ ପଥର ଅଣାଇ ଅର୍ଣ୍ଣବ ଯେ ସମୁଦ୍ର ମଧ୍ୟରେ ପକାଇ ବନ୍ଧ କରାଇଲେ ।

ରୋମମୂର୍ଜ–ଆସ୍ୟ ବିଳାସ ରଚନାରେ ପ୍ରବେଶି
ତପିଜା ଲଭିଲ ମଞ୍ଜୁଷା ଭୋଗୀନ୍ଦ୍ରକୁ ବିନାଶି । ୭ ।

ଅର୍ଥାତ୍ ରୋମାମ୍ବୁଜ ଯେ ପଦ୍ମ ସମ ମୁଖୀ ସୀତାଙ୍କ ସହିତ ଯେ ବିଳାସ କରେ ଅର୍ଥାତ୍ ଶ୍ରୀରାମ ରୋମା ପତି ସୁଗ୍ରୀବଙ୍କ ସୈନ୍ୟ ବାହିମାଙ୍କୁ ଧରି ମଞ୍ଜୁଷା ଭୋଗୀନ୍ଦ୍ର ଅର୍ଥାତ୍ ପଥରପରି ନିଷ୍ଠୁର ବଳାମ୍ଭୀ ରାବଣଙ୍କୁ ବିନାଶ କରି ତପୀଜା ଅର୍ଥାତ୍ ତପୀ ଜନକଙ୍କ କନ୍ୟା ସୀତାଙ୍କୁ ଲଭିକଲେ ।

କନ୍ଦର୍ପ ଦର୍ପାରି ତନୁଜ–କନ୍ଧେ ବିଜୟୁ କରି
ମୟ ଦୈତ୍ୟସୁତା ପତିକି ବ୍ରହ୍ମଶରେ ସଂହାରି । ୮ ।

କନ୍ଦର୍ପ ଦର୍ପାରି ହେଉଛନ୍ତି ଶିବ ତାଙ୍କ ତନୁଜ ହନୁମାନଙ୍କ କନ୍ଧରେ ବସି ମୟଦୈତ୍ୟସୁତା ଯେ ମନ୍ଦୋଦରୀଙ୍କ ପତି ରାବଣଙ୍କୁ ବ୍ରହ୍ମଶରରେ ସଂହାର କରିଥିଲେ ।

ପୟଃ ପୂର୍ଣ୍ଣସ୍ଥିତ ଭୂଖଣ୍ଡ ଅନୁଜରେ ପ୍ରଦତ୍ତ
ବିମାନେ ବିମାର୍ଗେ ଚଳିଲେ ସରଯୁ ପରିଯନ୍ତ । ୯ ।

ପୟଃ ପୂର୍ଣ୍ଣ ସ୍ଥିତ ଭୂଖଣ୍ଡ ଯେ ଲଙ୍କା ଯାହାର ଚଉପାର୍ଶ୍ୱରେ ପୟ ଅର୍ଥାତ୍ ଜଳପୂର୍ଣ୍ଣ ଭୂଖଣ୍ଡ ରାବଣର ଅନୁଜ ବିଭୀଷଣଙ୍କୁ ପ୍ରଦାନକରି ଆକାଶ ମାର୍ଗରେ ବିମାନରେ ଆରୋହଣ ପୂର୍ବକ ସରଯୁ ନଦୀ ତୀରବର୍ତ୍ତୀ ଅଯୋଧ୍ୟା ପର୍ଯ୍ୟନ୍ତ ଯାଇଥିଲେ ।

ଚକ୍ରୀ–ସୁତ–ମିତ୍ର ଭ୍ରାତାଙ୍କୁ ଲଙ୍କେ କଲ ରାଜନ
ହରି ହରିପତି ପତିହେ ପୟୋଧରେ ଆପଣ । ୧୦ ।

ଚନ୍ଦ୍ରୀସୁତ ମିତ୍ର ଅର୍ଥାତ୍ କୁମ୍ଭକର୍ଣ୍ଣର ଭ୍ରାତା ବିଭୀଷଣଙ୍କୁ ଲଙ୍କାରେ ରାଜା କରାଇଲେ । ଦଶସ୍କନ୍ଧ ଜଳ ତାହାର ପତି ସମୁଦ୍ରର ପତି ବରୁଣଙ୍କୁ ଭୟ ଦେଖାଇ ତାହା ଉପରେ ସେତୁବନ୍ଧ ନିର୍ମାଣ କରାଇ ଲଙ୍କାକୁ ଗମନ କଲେ ।

ଷଟ୍‌ପଦ ବାହନ ବାହନ ସୁତା ପତି ଆନନ୍ଦୀ
ସ୍ୟନ୍ଦନେ ବିହରି ସ୍ପନ୍ଦନେ ଯେନ ଋଷି ନନ୍ଦନ୍ଦୀ । ୧୧ ।

ଷଟ୍‌ପଦ ଯେ ଭ୍ରମର ତାର ବାହନ ପଦ୍ମ, ତା'ର ବାହନ ଜଳ ତାର ସୁତା କୁମୁଦିନୀ ତା'ର ପତି ଚନ୍ଦ୍ର । ଅର୍ଥାତ୍ ଚନ୍ଦ୍ରପରି ଆନନ ଯେଉଁ ସୀତା ତାଙ୍କ ସଙ୍ଗରେ ରଥରେ ବସି ଅଯୋଧ୍ୟା ଆସିଥିଲ ।

ରମ୍ୟ ନଗ୍ରେ ବାମ ପାର୍ଶ୍ୱରେ ବାମା ଶ୍ରେଷ୍ଠ ଧେନଣ
ଅଭିଷିକ୍ତ ହୋଇ ରାଜ୍ୟରେ ପ୍ରଜାଚୟ ପାଳଣ । ୧୨ ।

ରମ୍ୟ ଯେ ରମଣୀୟ ନଗ୍ର ଅଯୋଧ୍ୟାରେ ଆପଣ ନାରୀଶ୍ରେଷ୍ଠ ସୀତାଙ୍କୁ ବାମ ପାର୍ଶ୍ୱରେ ଧାରଣ କରି ଅଭିଷିକ୍ତ ହୋଇ ପ୍ରଜା ସମୂହଙ୍କୁ ପାଳନ କରିଥିଲ ।

କଳ୍ପି କଳ୍ପି କେତେ ଜଳ୍ପିଲ ଶିଳ୍ପିକାର କୁମର,
କଳ୍ପେ କଳ୍ପତରୁ ଭଜିଲା ଦୁଃଖ ନଗଲା ମୋର । ୧୩ ।

ହେ ପ୍ରଭୁ ଶ୍ରୀରାମ ଆପଣଙ୍କର କୀର୍ତ୍ତିସମୂହକୁ ଏଥି ଶିଳ୍ପୀ କୁମର ଅର୍ଥାତ୍ ବଡ଼େଇପିଲା କଳ୍ପି ଯେ କଳ୍ପନାକରି କଳ୍ପି ଯେ ବର୍ଣ୍ଣନ କରିଲି । କଳ୍ପେ ଅର୍ଥାତ୍ ବହୁ ସମୟ ଧରି ଆପଣଙ୍କ ପରି ଇଚ୍ଛା ମାତ୍ରେ ଅଭୀଷ୍ଟ ଫଳପ୍ରଦ କଳ୍ପତରୁଙ୍କୁ ଭଜିଲି ମାତ୍ର ମୋ ଦୁଃଖ ଖଣ୍ଡନ ହେଲନାହିଁ ।

ସୀତାରାମ ଅଂଘ୍ରି ଅବ୍‌ଜକୁ ହୃଦୟରେ ଧ୍ୟାଇଣ,
ରାଘବ ବିଳାସ ପ୍ରବନ୍ଧ ରଚନାକୁ କରିଣ । ୧୪ ।
ନବୀନ ଦୁର୍ଗେଶ ପ୍ରତାପୀ ବିବିଧ ଗୁଣବର,
ଛନାୟକ ସିଂହ ଶ୍ରୀମାନଧାତା ଗ୍ରନ୍ଥେ ପ୍ରବୃତ୍ତ । ୧୫ ।

ଆହେ ସୀତା ଧବ ମୋ ଖେଦ ବାରେ କର ମୋଚନ,
ହୟଗ୍ରୀବ ହୃଦେ ଚନ୍ଦ୍ରଣ ବନାୟକ ରଚନ । ୧୬ ।

ସୀତାରାମଙ୍କର ଅଂଘ୍ରି ଯେ ପାଦପଦ୍ମକୁ ହୃଦୟରେ ଧ୍ୟାୟି ଏହି 'ଗ୍ରନ୍ଥର ବିଳାସ' ନାମକ କାବ୍ୟକୁ ରଚନା କରି ନୂଆଁଗଡ଼ ରାଜ୍ୟର ନୃପତି ଚନ୍ଦ୍ର ସାରବର ଶ୍ରୀ ବନାୟକ ସିଂହ ମାନଧାତାଙ୍କ ନାମକୁ ଏହି ଗ୍ରନ୍ଥମାନଙ୍କରେ ପ୍ରଚାର କରିଅଛୁ । ହେ ସୀତାକାନ୍ତ ରାମ ମୋର ଖେଦ ଯେ ଦୁଃଖ ଥରେ ମାତ୍ର ଦୂର କର । ହୟଗ୍ରୀବ ମହାପ୍ରଭୁଙ୍କ ହୃଦୟରେ ଚନ୍ଦ୍ରାକର ବନାୟକ ରଚନା କଲେ ।



କାବ୍ୟର ଲୁଣ୍ଠିତ ଗ୍ରନ୍ଥରେ ଜରତା ବେଶ୍ୟାର ଚନ୍ଦ୍ରିକା ଅନ୍ତମ ଗମନ ବିଷୟ ବର୍ଣ୍ଣନା କରିବାକୁ ଯାଇ କବି ଯଦୁମଣି ସମସ୍ତ ପ୍ରକାର ଯମକ ବହୁଳ ପ୍ରୟୋଗର କେତୋଟି ଦୃଷ୍ଟାନ୍ତ ପ୍ରଣିଧାନ ଯୋଗ୍ୟ—

**ଆଦ୍ୟ ଯମକ**—ସୁମନେ ସୁମନେ ଶୁଣ ଦେଇଣ ମାନସ
କନକ-ପୁଷ୍ପ-ବିଶ୍ଵଶ ବିଶେଷ ବିରସ । ୧ ।

ଜୀବନ-ହୀନ ଦ୍ୱାଦଶ ସମ୍ବତ୍ସର ହେଲ
ଜୀବନ ଯିବ ଏଣିକି କି କରିବ ଭଲ । ୨ ।

ଦ୍ୱିଜ କୁଳରେ ପୁଜନ୍ତି କରିକ ସଯୁକ୍ତେ
ଦ୍ୱିଜୋକ୍ତ ବିଘ୍ନଣ୍ଟକୁ ଅଣାଅ ଭୁକ୍ତେ । ୩ ।

ସୁମନେ ଅର୍ଥାତ୍ ପଣ୍ଡିତମାନେ ବା ରସିକମାନେ ସୁମନେ ଯେ ଆନନ୍ଦରେ ମନଦେଇ ଶୁଣ । କନକ-ପୁଷ୍ପ ବିଶ୍ଵଶ ଯେ ଚମ୍ପାବତୀ ରାଜ୍ୟର ରାଜା ଲୋପପାଦ ବିଶେଷଭାବେ ବିରସ ଅଛନ୍ତି ।

ଦ୍ୱାଦଶ ସମ୍ବତ୍ସର ଅର୍ଥାତ୍ ବାରବର୍ଷ ହେଲାଣି ଜୀବନହୀନ ଅର୍ଥାତ୍ ବର୍ଷା ହୋଇନାହିଁ ଏଣିକି ଜଳବିନା ଜୀବନ ଚାଲିଯିବ । ଆଉ ଭଲ କ'ଣ

କରାଯାଇ ପାରିବ । ତେଣୁ ରାଜା ଦ୍ୱିଜ ଯେ ବ୍ରାହ୍ମଣ ସମାଜକୁ ନିମନ୍ତ୍ରଣ
କରି କରନ୍ତି ସମ୍ୟକ୍ରେ ଅର୍ଥାତ୍ ଉରପର ଯୋଡ଼ି ପଚାରନ୍ତି । ଏପରି ଶୁଣି
ଦ୍ୱିଜମାନେ ପରାମର୍ଶ ଦିଅନ୍ତି ଯେ ବିଭାଣ୍ଡକଙ୍କ ପୁତ୍ର ଋଷ୍ୟଶୃଙ୍ଗଙ୍କୁ ଏଠାକୁ
ଶୀଘ୍ର ଅଣାଯାଉ । ଋଷ୍ୟଶୃଙ୍ଗଙ୍କୁ ଆଣିବା ପାଇଁ ନଗର ବେଶ୍ୟା ନିମନ୍ତେ
ସ୍ୱର୍ଗରେ ବିଶ୍ୱକର୍ମା ଇନ୍ଦ୍ରଙ୍କ ସୁଧର୍ମା ସଭାକୁ ନିମନ୍ତ୍ରିତ କରିଥାନ୍ତି । ଏଠାରେ
ସ୍ୱର୍ଗ ସଭାର ନୌକାକୁ ତୁଳନା କରାଯାଇଛି ।

ସର୍ବ ଯମକ—ରମ୍ଭା ଉର୍ବଶୀ ତହିଁ ବଦାନ୍ତି ଏ ନୃତ୍ୟ
ରମ୍ଭା ଉରୁବଶି ତହିଁ ତଟରେ ବିଧାସ୍ତ । ୧୩ ।
ନୃତ୍ୟ ନଟୀବାଳ ତହିଁ କେ କରୁ ଗଣନ
ନୃତ୍ୟତ, ନଟୀଙ୍କ ଳାଳ ତହିଁ କେ କରୁ ଗଣନା । ୧୪ ।

ସୁଧର୍ମା ସଭାରେ ରମ୍ଭା ଉର୍ବଶୀ ଇତ୍ୟାଦି ଅପ୍ସରାମାନେ ନୃତ୍ୟ
କରନ୍ତି । ନଗର ବେଶ୍ୟା ଯାଇଁ ନିର୍ମିତ ନୌକାରେ କଦଳୀ ବୃକ୍ଷ ସଦୃଶ୍ୟ
ଜାନୁ ବିଶିଷ୍ଟା ବେଶ୍ୟାମାନେ [illegible] ହୋଇ ବସିଛନ୍ତି । କପଟ [illegible]
ଉପାୟରେ ଋଷ୍ୟଶୃଙ୍ଗଙ୍କୁ ମନାଇ ଆଣିବେ ।

ନୃତ୍ୟ ଯେ ନର୍ତ୍ତକ ନଟୀ ଯେ ବେଶ୍ୟା ଅର୍ଥାତ୍ ସ୍ୱର୍ଗରେ ନୃତ୍ୟରତା
ଅପ୍ସରାମାନଙ୍କ ସଙ୍ଗୀତ ବାଦ୍ୟର ସମସ୍ତ ନିରୂପଣ କରିହେବ ନାହିଁ । ସବୁ
ସମୟରେ ନୃତ୍ୟ ଗୀତ ଚାଲିଥାଏ । ଏଠାରେ ଅମ୍ବ, ନଡ଼ିଆ ଏତେ ବେଶୀ
ପରିମାଣରେ ରଖାଯାଇଅଛି ଯେ ତାହା ଗଣିହେବ ନାହିଁ ।

ଦିବ୍ୟସ୍ତ୍ରୀ ଏ ଯେ ବିହରନ୍ତି ଆନନ୍ଦରେ
ଦିବ୍ୟସ୍ତ୍ରୀ ଏ, ଯେ ବିହରନ୍ତି ଆନନ୍ଦରେ । ୧୫ ।
ଲୋକନେ ଦିବ୍ୟସୁନ୍ଦରୀ ଜନମନ ହରେ
ଲୋକନେ ଦିବ୍ୟସୁନ୍ଦରୀ ଜନମନ ହରେ । ୧୬ ।

ଦିବ୍ୟସ୍ତ୍ରୀ ଅର୍ଥାତ୍ ସ୍ୱର୍ଗ ଅପ୍ସରାମାନେ ଯେପରି ଆନନ୍ଦ ଚିତ୍ତରେ
ବିହାର କରନ୍ତି ସେହିପରି ନୌକା ଉପରେ ସୁନ୍ଦରୀ ବେଶ୍ୟାମାନେ ବିହାର

କରୁଛନ୍ତି । ଦିବ୍ୟସୁନ୍ଦରୀ ବେଶ୍ୟାମାନଙ୍କୁ ଦେଖିଲେ ଜନମନ ମୁଗ୍ଧ ହୁଏ, କିନ୍ତୁ ଦିବ୍ୟସୁନ୍ଦରୀ ବେଶ୍ୟାମାନଙ୍କୁ ଦେଖିଲେ ମନର ଆକାଂକ୍ଷା ପୂର୍ଣ୍ଣ ନହୋଇ ପୁନର୍ଜନ୍ମ ମିଳିଥାଏ ।

ସୁମନାରେ ମଣ୍ଡିତ ହୁଁ ବୀଣାଗୀତ ସ୍ୱର
ସୁମନାରେ ମଣ୍ଡିତ ହୁଁ ବୀଣାଗୀତ ସ୍ୱର । ୧୭ ।
ମୁନି ମୋହିତ ଦ୍ରବ୍ୟକୁ ଧେନିଛନ୍ତି ସଙ୍ଗେ
ମୁନିଙ୍କି ମୋହିବା ପାଇଁ ଯାନ୍ତି ନବରଙ୍ଗେ । ୧୮ ।

ଅପ୍ସରାମାନେ ବୀଣା ଗୀତ ସ୍ୱରରେ ଯେପରି ମଣ୍ଡିତ, ଏହି ବେଶ୍ୟାମାନେ ମଧ୍ୟ ଠିକ୍ ସେହିପରି ମଣ୍ଡିତ । ମୁନିଙ୍କୁ ମୁଗ୍ଧ କରିବା ଭଳି ଦ୍ରବ୍ୟମାନ ସଙ୍ଗରେ ଯେପରି ଧରିଛନ୍ତି, ସେପରି ମୁନିଙ୍କୁ ମୋହିତ କରିବା ପାଇଁ ନାନା ବେଶରେ ନିଜକୁ ସୁସଜ୍ଜିତ କରି ନୌକାରେ ଗମନ କରୁଛନ୍ତି ।

**ଯୋଡ଼ି ଯମକ**—ତରଣୀ ତରଣି ପ୍ରାୟେ ସ୍ରୋତ ଯାଏ ଭାସି
ତରଙ୍ଗ ତରଙ୍ଗ ଉଠେ କୂଳକୁ ବିଶେଷି । ୧୯ ।

ଅର୍ଥାତ୍ ସୂର୍ଯ୍ୟ ଆକାଶରେ ଗତି କଲାପରି ନୌକା ଜଳସ୍ରୋତରେ ଯେପରି ଭାସି ଯାଉଥାଏ । ନାରୀ ତନୁରେ ଯେପରି ସୌନ୍ଦର୍ଯ୍ୟର ଲହରୀ ଖେଳେ ସେପରି ନୌକାର ଗତି ଫଳରେ ଜଳ ତରଙ୍ଗ କୂଳ ପର୍ଯ୍ୟନ୍ତ ଉଠୁଥାଏ ।

**ସର୍ବ ଯମକ**—ଅମ୍ବର ନୀଳ ରଙ୍ଗରେ ହୋଇ ସୁମଣ୍ଡିତ
ଅମ୍ବର ନୀଳ ରଙ୍ଗରେ ହୋଇ ସୁମଣ୍ଡିତ । ୨୫ ।
ପାଦପରେ ପାଦପରେ ଦେଇ ଅପସର
ବାରଙ୍ଗନା ବାରଙ୍ଗନା ମିଳିଲେ ପାଶର । ୨୬ ।

ବେଶ୍ୟାମାନେ ନୌକାରୁ ବାହାରି ଋଷ୍ୟଶୃଙ୍ଗଙ୍କ ନିକଟରେ ପହଞ୍ଚିଲେ ବେଳକୁ ଅମ୍ବର ଯେ ମେଘରେ ଆକାଶ ନୀଳ ରଙ୍ଗରେ ମଣ୍ଡିତ ହୋଇଥିଲା ।

ଏଣେ ଯୁବତୀ ବେଶ୍ୟାମାନଙ୍କର ସୁନା ହଳଦିଆ ତନୁରେ ନାଲରଙ୍ଗର ଶାଢ଼ୀ ଅତ୍ୟନ୍ତ ଶୋଭା ବର୍ଦ୍ଧନ କରୁଥିଲା ।

ପାଦପ ଯେ ବୃକ୍ଷମୂଳରେ ଧ୍ୟାନରତ ଥିବା ଋଷିଙ୍କ ନିକଟରେ ବାରଙ୍ଗନା ଯେ ବେଶ୍ୟାମାନେ ବାରଜଣ ପାଦ ଉଚ୍ଚଦେଇ ଅର୍ଥାତ୍ ପଦ୍ମାସନରେ ବସିଗଲେ ।

ଦେଖି ସୁଖୀ ମୁନିଶ ଯେ ଦେଖି ସୁଖୀ ହେଲେ
ସମାଦର କଲନ୍ତେ ସେ ସମାଦର କଲେ । ୨୭ ।
ପଦ୍ମ ଦେଉଁ ପଦ୍ମ ଦେଲେ ଭାଙ୍ଗି ନାରିକେଳ
ଦେଇ ପାନେ ତୋଷ ହେଲେ ବିଭାଣ୍ଡକ ବାଳ । ୨୮ ।
କର୍ପୂର ଅଙ୍ଗରେଁ ବୋଳି ସ୍ୱାଦ ଫଳ ଦେଲେ
କର୍ପୂର କରଣ ମୁନି ତାହାଙ୍କୁ ଭୁଞ୍ଜିଲେ । ୨୯ ।
ପଟ୍ଟବସ୍ତ୍ର ଫେଇ ପଟ୍ଟବସ୍ତ୍ର ପିନ୍ଧାଇଣ
ପଟ୍ଟରୂପ ଦର୍ଶନାର୍ଥ ଆଦର୍ଶ ଦେଇଣ । ୩୦ ।
ସୁମନା ମଣ୍ଡିଲେ ଶିରେ ଯତନେ ଗୁନ୍ଥି ଦେ
ସୁମନା ମଣ୍ଡିଣି ଦେଖି ତୋଷ ମୁନିଗଣ । ୩୧ ।

ଋଷି ଋଷ୍ୟଶୃଙ୍ଗ ବେଶ୍ୟାମାନଙ୍କୁ ଦେଖି ଯେପରି ଖୁସି ହେଲେ, ବେଶ୍ୟାମାନେ ମଧ୍ୟ ଋଷିଙ୍କୁ ପାଇ ଧନ୍ୟ ମନେକଲେ । ପରସ୍ପର ମଧ୍ୟରେ ସମାନ ପ୍ରକାର ସ୍ନେହ ଆଦାନ ପ୍ରଦାନ କଲେ । ଋଷି କୁମାର ପଦ୍ମ ଯେ ଜଳ ଗୃହିଁବାରୁ ବେଶ୍ୟାମାନେ ପଣଡ଼ ଭାଙ୍ଗି ତାର ଜଳକୁ ପିଆଇଲେ । ପଣଡ଼ଜଳ ପାନରେ ଋଷିକୁମାର ସନ୍ତୋଷ ଲାଭକଲେ ।

ବେଶ୍ୟାମାନେ ଋଷିକୁମାରଙ୍କ ଦେହରେ କର୍ପୂର ବୋଳିଦିଅନ୍ତେ ତାଙ୍କର ଶରୀର ସୁବାସରେ ମହକି ଉଠିଲା । ଯୁବତୀ ବେଶ୍ୟାମାନେ ସ୍ୱାଦୁ ଫଳ ଦିଅନ୍ତେ ତାହା ମୁନି କର୍ପୂର ଯେ କରଂପୂର୍ଣ୍ଣ କରି ଅର୍ଥାତ୍ ଅଞ୍ଜଳିପାତି ସେବନ କଲେ । ବେଶ୍ୟାମାନେ ପଟ୍ଟବସ୍ତ୍ର ଫେଇ ଅର୍ଥାତ୍ ବୃକ୍ଷପଟଳ ବସ୍ତ୍ର ବାହାର କରି ସଙ୍ଗରେ ନେଇଥିବା ପାଟବସ୍ତ୍ର ପିନ୍ଧାଇ ଦେଲେ । ପରେ

ବେଶ୍ୟାମାନେ ତାଙ୍କର ବେଶ କପରି ଦେଖାଯାଉଛି ଦେଖିବା ପାଇଁ ତାଙ୍କୁ ଆଦର୍ଶ ଯେ ଦର୍ପଣ ଦେଖାଇଲେ । ସୁମନା ଯେ ଫୁଲମାଳଗୁଡ଼ିକୁ ଅତି ଯତ୍ନରେ ତାଙ୍କର ମୁଣ୍ଡରେ ଗୁନ୍ଥି ଦେଲେ । ଯୁବତୀମାନେ ତାଙ୍କ ମୁଣ୍ଡରେ ଫୁଲ ମଣ୍ଡିବା ଦେଖି ଋଷି ସନ୍ତୋଷ ଲାଭକଲେ ।

ମଠ କାହିଁ ପୁଛୁ ମଠ ନ କରି କହିଲେ
ମଠ ତୁମ୍ଭ ଆମ୍ଭର ଯେ ଆଶ୍ରମ ବୋଇଲେ । ୩୨ ।

ଦେବାର୍ଚ୍ଚନ କର ଯେଉଁ ମନ୍ତ୍ର ପାଠ କରୁ
ଦେହାର୍ଚ୍ଚନ ହେବେ ଆମ୍ଭ କାମ ମନ୍ତ୍ର ଦୂରି । ୩୩ ।

ପାଣି ଅଭିଷେକେ ତୁଷ୍ଟ ସେ ଶମ୍ଭୁ ଦେବତା
ପାଣି ମୁନି କର ଦେଇ ଦେଖାଇ ବନିତା । ୩୪ ।

ଗୁରୁ ଆମ୍ଭର ମଠରେ ଅଛନ୍ତି ବୋଇଲେ
ଗୁରୁ ସ୍ନେହେ ମୁନି କହି ଆଣିବଟି ଭଲେ । ୩୫ ।

ଋଷ୍ୟଶୃଙ୍ଗ ଯୁବତୀମାନଙ୍କୁ 'ତୁମର ମଠ କେଉଁଠାରେ' ବୋଲି ପୁଛନ୍ତେ, ସେମାନେ ମଠ ନକରି ଶୀଘ୍ର ଉତ୍ତର ଦେଲେ ଯେ, 'ତୁମରପରି ମଠ, ଆମେ କିନ୍ତୁ ତାହାକୁ ଆଶ୍ରମ କହୁଅଛୁ ।'

ଋଷି ଯୁବତୀମାନଙ୍କୁ ପଚାରିଲେ, "ତୁମେ କେଉଁ ମନ୍ତ୍ର ପାଠକରି ଦେବତା ଅର୍ଚ୍ଚନ କର ?" ସେମାନେ ଉତ୍ତର ଦେଲେ, "ଆମ ତନୁରେ କାମମନ୍ତ୍ର ପୂରି ରହିଛି, ଏଣୁ ଆମେ ଅନଂଗ ଦେବତାଙ୍କୁ ପୂଜାକରୁ ।"

ସେ ଶମ୍ଭୁ ଦେବତା ପାଣି ଅଭିଷେକରେ ସନ୍ତୁଷ୍ଟ ହୁଅନ୍ତି । ଅର୍ଥାତ୍ ରମଣୀମାନଙ୍କ ସ୍ତନ ରୂପକ ଶମ୍ଭୁ ପାଣି ଯେ ହାତଦ୍ୱାରା ଅଧିକ ମର୍ଦ୍ଦନ କରିବାରେ କାମ ଉଦ୍ଦୀପନାରେ ଉତ୍ତପ୍ତ ହୋଇ ତୋଷ ହୋଇଥାନ୍ତି । ଏପରି କହି ଯୁବତୀମାନେ ମୁନିଙ୍କ ହାତକୁ ପାଣି ଭାବରେ ନେଇ ନିଜ ନିଜର ବକ୍ଷ ଦେଶରେ ଲଗାଇ ଦେଲେ ।

ଆମର ଗୁରୁ ଅର୍ଥାତ୍ ଜରତା ବେଶ୍ୟା ମଠରେ ଅର୍ଥାତ୍ ନୌକାରେ ଅଛନ୍ତି ବୋଲି କହିବାରୁ ଋଷିକୁମାର କହିଲେ, ବିଶେଷ ଆଦରର ସହିତ ତାଙ୍କୁ ଏଠାକୁ ଆଣନ୍ତୁ ।

କବି ଯଦୁମଣିଙ୍କ 'ରାଘବ ବିଳାସ' କାବ୍ୟର ଚତୁର୍ଥ ଛାନ୍ଦ ୮ ପଦରେ ଆଦ୍ୟ ପ୍ରାନ୍ତ ଯମକ ପ୍ରୟୋଗ ଅତି ଚିତ୍ତାକର୍ଷକ ଅଟେ ।

ଆଦ୍ୟପ୍ରାନ୍ତ ଯମକ—

ମୃଗାଙ୍କ ଲପନା ସମାଦରରେ ମୃଗାଙ୍କଜ ତୋଷ ସମାଦରରେ
ମୃଗାଙ୍କ ଶାସ୍ତ୍ରଜ୍ଞକୁ ସେ ହୃଦରେ, ମୃଗାଙ୍କ ବିଭ୍ରମ କରୁ ମୁଦରେ
ମୃଗଙ୍କ ଧୃତାରି, ମୃଗାଙ୍କ ହେଲେ ସେ ଯେ ବନଚାରି । ୮ ।

ମୃଗାଙ୍କ ଲପନା ଯେ ଚନ୍ଦ୍ରବଦନା ବେଶ୍ୟାମାନଙ୍କ ସମାଦରେ ଆଦରରେ ମୃଗାଙ୍କଜ ଯେ ଋଷ୍ୟଶୃଂଗ ପରମ ସନ୍ତୋଷ ଲାଭକଲେ । ମୃଗାଙ୍କ ଶାସ୍ତ୍ର ଯେ ଚନ୍ଦ୍ରଚୂଳନା ଶାସ୍ତ୍ର ହୃଦୟରେ ଭାବି ଋଷ୍ୟଶୃଂଗ ଭୋଳ ହୋଇ କାମପୀଡ଼ା ଅନୁଭବ କଲେ । ମୃଗାଙ୍କ ଧୃତାରି ଯେ କାମ ଅର୍ଥାତ୍ ବନଚାରୀ ମୁନି କାମଦ୍ୱାରା ମୃଗାଙ୍କ ଯେ ଚନ୍ଦ୍ର ଅର୍ଥାତ୍ କାମୁକ ହେଲେ ।

ଜରତା ରତାରେ ରତ ମୁନିଜ, ଜର ଜର ଭାବେ ହର୍ଷ ହୃଦାବ୍ଜ,
ଜରଣି କୋଳରେ ନ ଘେନି ଲାଜ, ଜର ଜନ ଚହିଁ ହୋଇ ଔଦାର୍ଯ୍ୟ
ଜରଜ ସରୋଜ, ଜରତା ଦେଇ ମୁନିରେ ଉରଜ । ୯ ।

ଜରତାର କାମ କ୍ରୀଡ଼ାରେ ମତ୍ତହୋଇ ମୁନି ଋଷ୍ୟଶୃଂଗ ଲଜ୍ଜାହୀନ ହୋଇ ତା'ର ବକ୍ଷ ରୂପକ ପଦ୍ମରେ ଆଶ୍ରୟ ନେଲେ । ହୃଦାବ୍ଜ ଅର୍ଥାତ୍ ହୃଦୟ ରୂପକ ପଦ୍ମ ।

ମଠ ନ କର କହେ ମୃଦୁବାଣୀ, ମଠ ଦେଖିବ ଆସ ମୁନିମଣି
ମଠାଶ୍ରମ ତେଜି ହେଲେ ଅଗ୍ରଣୀ, ମଠ ଗମନା ବାରାଙ୍ଗନା ଶ୍ରେଣୀ
ମଠ ତା ନାବରେ, ମଠଧରେ କହି ନାବ ବାହାରେ । ୧୦ ।

ମଠ ନ ଜଣ ଅର୍ଥରୁ ବିଳମ୍ବ ନକର ମୃଦୁବାଣୀ ଯେ ସୁମଧୁର ଭାଷା କହି ମଠ ଗମନା ବାରାଙ୍ଗନା ଶ୍ରେଣୀ ଅର୍ଥାତ୍ ଧୀରଗାମିନୀ ବେଶ୍ୟା ସ୍ତ୍ରୀ ମଠ । ଶ୍ରମ ଦୂର କରିଇ ଋଷ୍ୟଶୃଙ୍ଗଙ୍କୁ ନୌକା ରୂପକ ଆଶ୍ରମକୁ ନେଇ ବସାଇ ଭୁଲାଇ ଦେଲେ ।

ତ୍ରୟୋଦଶ ଛାନ୍ଦରେ ସୀତାଙ୍କ ବିବାହ ଯାହାର ଶୋଭା ବର୍ଣ୍ଣନାରେ କବି ଯଦୁମଣି ଆଦ୍ୟ ଯମକ ପ୍ରୟୋଗରେ କପରି ସିଦ୍ଧହସ୍ତ ତାହା ନିମ୍ନରୁ ଜଣାଯାଏ । ୧୪ ପଦରୁ ୨୦ ପଦ ଯାଏଁ ।

ରମ୍ଭା ନର୍ତ୍ତନ  ରମ୍ଭା ନର୍ତ୍ତନ  ସମ୍ଭ ଦ୍ୱାରାକୁ ଆଣ
ଦ୍ୱାର ବାସରେ  ଦ୍ୱାର ବାହରେ  ପତ୍ରଶୋଭିତ ଜାଣ । ୧୪ ।
ପୂଷ ଦଣ୍ଡରେ  ପୂଷଦଣ୍ଡରେ  ଆମୋଦ ବର୍ଦ୍ଧମାନ
ସ୍ତୁପ୍ସା ଉପରେ  ସ୍ତୁପ୍ସା ଉପରେ  ନର ସର୍ବାଙ୍ଗ ଘର୍ମ । ୧୫ ।
ବିପତ୍ତି ପତ୍ତ  ବିପତ୍ତି ପତ୍ତ  ବିମାନ ମାନେ ସେକ
ବିତ ପତ୍ତରେ  ବିତ ପତ୍ତରେ  ଭାଣ୍ଡରେ ଉମଧିକ । ୧୬ ।
ଅମ୍ବର ଶ୍ରେଣୀ  ଅମ୍ବର ଶ୍ରେଣୀ  ସ୍ତମ୍ଭ ବେଷ୍ଟନେ ରାଜେ
ମାଳ ଲୋହିତ  ମାଳ ଲୋହିତ  ପତାକା ପଂକ୍ତି ସାଜେ ।୧୭।
ବିତପ ନାଶ  ବିତପ ନାଶ  ନାହିଁ ନଥିଲା ମର୍ତ୍ତ୍ୟେ
କ ଶୋଭାକର  କ ଶୋଭାକର  ଅଦ୍ୱୈତ ନରେନ୍ଦ୍ର କ୍ଷିତେ ।୧୮।
ବୈକୁଣ୍ଠ ଶିଖ  ବୈକୁଣ୍ଠ ଶିଖ  ଦ୍ୱିଏ ଶୋଭିତ ଏଥି
କୁମୁଦବର୍ଣ୍ଣ  କୁମୁଦବର୍ଣ୍ଣ  ସୁଷମା ଭ୍ରମ ତଥି । ୧୯ ।
ବିଚିତ୍ର ପନ୍ତ୍ର  ବିଚିତ୍ର ପନ୍ତ୍ର  ଯହୁଁ ଅର୍କକା ତହିଁ
ମକର ଚିତ୍ର  ମକର ଚିତ୍ର  ପତ୍ର ପତ୍ରରେ ଶୋହି । ୨୦।

(ରମ୍ଭା-ବେଶ୍ୟା ରମ୍ଭା, ରମ୍ଭ-କଦଳୀ ଗଛ, ଦ୍ୱାରବାସରେ-ଶିବ, ଦ୍ୱାର ବାହରେ-ମଣ୍ଡପର ଗୃହ ଦ୍ୱାରରେ ନୂତନ ବସ୍ତ୍ର ଦେଇ ହୋଇଥିଲା, ପୂଷଦଣ୍ଡ-ବାୟୁ ଦେବତା, ପୂଷଦଣ୍ଡରେ-ନର୍ତ୍ତକୀମାନେ, ସ୍ତୁପ୍ସା ଉପ-ପୂର୍ଣ୍ଣ ସ୍ତୁପ୍ସା, ସ୍ତୁପ୍ସାଉପ-ଚନ୍ଦୁଆ, ବ-ପତ୍ତ-ପତ୍ର-ବସ୍ତ୍ର, ବିପତ୍ତିପତ୍ତ-ପତାକା

ଶୂନ୍ୟ ବାଜା, ଧନପତି-କୁବେର, ଧନପତି-କ୍ଷମାଶ୍ରେଷ୍ଠ, ଅମ୍ବର-ବସ୍ତ୍ରଙ୍କୁ ଚରଣକାଙ୍କ୍ଷୀ. ଅମ୍ବର-ବସ୍ତ୍ର, ନୀଳ ଲୋହିତ-ଶିବ ଓ ରଙ୍ଗ, ଧଉପନଘ-ଓଜ୍ଜ୍ୱଳ ପାଣ୍ଡି, ଧଉପ ନନ୍ଦ-ବିଶେଷ ତପସ୍ୟା ନନ୍ଦ, କଟଶାଭକଟ-ମାଙ୍କଡ଼ ଉଖା ହୋଇଥିବା ମୂର୍ତ୍ତି, ବୈକୁଣ୍ଠ ଶିଖ-ବସ୍ତ୍ରପୁରର ଶୋଭା ଓ ଇନ୍ଦ୍ର ସମ୍ପଦ. କୁମୁଦବର୍ଣ୍ଣ-ହସ୍ତୀ ଓ କଇଁଫୁଲର ମାଳ, ହରାଷ-ଚାଷ ପକ୍ଷୀ ଓ ବିଶେଷ ଚାଷ)

ପଞ୍ଚଦଶ ଛନ୍ଦ-ମଧୁଶର୍ମ୍ୟା ବର୍ଣ୍ଣନା ଅବସରରେ ଅନ୍ତର୍ଲିପି—୧୮, ୧୯, ୨୦ ପଦ

ଅଶ୍ୱର କ ନାମ ଅଛି ସଖି ? (ବାଜୀ)
ନୂତନା ବଧୂସୀ କ ବୋଲାଇ ? (ନବ)
ସିଂହ କାହିଁ ବାସ କୃଷ୍ଟ ନାସିଙ୍କଣ ? (ବନ)
ଚେକ ଚନ୍ଦ୍ରାନନ ତୋଷ ବଟ ଟୋ, ଯତ୍ନନାମ ? (ସିଦ୍ଧ)
ପିକଧ୍ୱନି କ କ ବୋଲି ଜନ ? (ସ୍ୱନ)
ଜାଗ୍ରତ ଲୋକେ ଶୁଣି କା ଗାନ ଗୋ ? । ୧୮ । (କୁଆ)

ରବିତାପ ନାମ ହୁଏ କସ ? (ତେଜ)
କୃଷକାନନ୍ଦ ପାଇ କା' ରସ ? (ଘନ)
ମଦେ କେ ପାଳନ୍ତି ଛନ୍ଦ ନ ହେବ ତ ? (ପିକ)
ବୃନ୍ଦାବନେ ହେଉ ହୋଇ ତୋଷ ଟେଗା, କାମଧର (ଶର)
କ ନାମ ବୋଲନ୍ତି ନାସିକତ (ଗ୍ରମା)
ତପୀ କ କରନ୍ତି ହୋଇ ସ୍ଥିରଚେତା । ୧୯ । (ଧ୍ୟାନ)

ଅନ୍ତର୍ଲିପି ଏହା ବୁଝି ସଖୀ !
ବେଳୁ ବେଳ ବର୍ଣ୍ଣ ଲେଖି ରଖି
ଭ୍ରାନ୍ତ ବର୍ଣ୍ଣ ହେବ ମୋ "ଜୀବନ ଧନ
ଆଉ ନ କର ମାନ" ଉପେକ୍ଷି ଗୋ ପ୍ରିୟ ସଖି
କାହାଠାରେ ଦୋଷ ମୋର ନାହିଁ
ଏତେ କଷ୍ଟ ଭ୍ରମ୍ପକୁ ଲୁଚାଇ ଗୋ । ୨୦ ।

ପୁନଶ୍ଚ ସେହି ଗ୍ରନ୍ଥରେ 'ମଧ୍ୟାକ୍ଷର' ବର୍ଣ୍ଣନା ବିଚିତ୍ର ଢ଼ଙ୍ଗରେ ହୋଇଅଛି ୨୨ ଓ ୨୩ ଛନ୍ଦରୁ ପ୍ରମାଣିତ—

ବାର୍ତ୍ତା ଶ୍ରବଣାନ୍ତେ କି ବୋଲନ୍ତି ? (ଉତ୍ତର)
ଅନିଳର ନାମ କି ସୁବର୍ତ୍ତୀ ? (ପବନ)
ହରି ଖେଳ ନାମ କିସ ବୋଲି ଜନ ? (ଅବିର)
ବର୍ଣ୍ଣନାରେ ଦେଇଥିବ ମତି ହେ, ଜୀବନ୍ତେ (ବିନାଶ)
ଆଉ ପକ୍ଷଶାଳୀ କେହୁ ମର୍ତ୍ତ୍ୟ ? (ବିଆଳି)
ମୃଗେନ୍ଦ୍ରକୁ ଜନେ କି ଭାଷନ୍ତେ ହେ । ୨୨ । (ବନେଶ)
ଅମାନିତା କରେ କିସ ଭାଷି ? (ଦେନାଇ)
ବଦାନ୍ୟରେ କେଉଁ କଥା ଘୋଷି ? (ଅହିଂସା)
ସୁବାସରେ କିସ ହୁଅଇ ପ୍ରକାଶ (ଆମୋଦ)
ବିରସ ନ ହୋଇ ଏଥି ରସ ହେ, ବୀଣାଧାରୀ (ନାରଦ)
ଅଦ୍ଭୁତର ନାମ କି ପ୍ରଚୁର (ବିଚିତ୍ର)
ବିପଦାର୍ଥେ କେଉଁ ନାମ ସ୍ମର ହେ । ୨୩ । (କାତର)

ପ୍ରତ୍ୟେକ ପଦର ମଧ୍ୟମ ଅକ୍ଷରକୁ ଯୋଗ କଲେ ଉତ୍ତର ମିଳିବ "ତବ ବିନା ଆନେ ନାହିଁ ମୋର ଚିତ୍ତ ।"

ଅଷ୍ଟାଦଶ ଗ୍ରନ୍ଥ ଚିହ୍ନକୁ ବିହାର ବର୍ଣ୍ଣନା ଅବସରରେ କବି ଯଦୁମଣିଙ୍କ ଆଦ୍ୟ, ମଧ୍ୟ, ପ୍ରାନ୍ତ ଓ ସର୍ବ ଯମକର ପ୍ରୟୋଗର ବିଚିତ୍ର ଭଙ୍ଗୀ ଦ୍ରଷ୍ଟବ୍ୟ—

**ଆଦ୍ୟ ଯମକ—**

କଷରସ-କ୍ଳେଶ-ଭାଷ କବିତ୍ୱ-ସକଳ
କଳ କଳନାକର ହେ ପଦର କୌଶଳ । ୧ ।
ଭରତା ଗ୍ରଜ ଭରତେ ଫେରାଇ ରାଜ୍ୟରେ
ରାଜ୍ୟରେ ରାଜା ହେବାକୁ ଦେଇ ଆଦେଶରେ । ୨ ।

ସୀତା ଶୀତାମ୍ବୁଜ-ମୁଖୀ ଯେବେ ହରଷରେ
ସରସରେ ହରଷରେ ଶଯକୁଟ ପରେ । ୩ ।
ବନେ ବନେ ଭ୍ରମନ୍ତ ସେ ହୋଇଣ ଆନନ୍ଦ
ବର ବରଣୀର କର ଧରିଣ ପ୍ରମୋଦ । ୪ ।
କୁନ୍ଦ କୁନ୍ଦଦନ୍ତୀ ! ଦେଖ ଫୁଟିଣ ସୁବାସ
ମଲ୍ଲି ମଲ୍ଲିହାସି ! ଶୁକ୍ଳ-ପ୍ରକାଶ ପକାଶ । ୫ ।
ରୁରୁ ରୁରୁ ନେଜି ! ଅନା ଶାବକ ଖେଳାଇ
ଦନ୍ତୀ ଦନ୍ତୀ ଗତ ! ଦେଖି ଚଉ୍ ତୋଷ ବହି । ୬ ।

(ଶୀତାମ୍ବୁଜ ମୁଖୀ-ଚନ୍ଦ୍ରମୁଖୀ, ସୀତା-ମ୍ବୁଜ-ଶୁକ୍ଳପଦ୍ମ, ପ୍ରକାଶ-ପାପ୍ତ, ଜ୍ଞାନ, ରୁରୁ-ମୃଗ, ଦନ୍ତୀ-ହସ୍ତୀ)

## ମଧ୍ୟ ଯମକ—

ଦେଖଗୋ ଅଶୋକ ଶୋକ ହୃଦୁଁ ହେବ ଦୂର
ଅଧୀର ନ ହୋଇ ଧୀର ଧୀର ଗଛ କର । ୭ ।
ଆଗରେ ନକୁଳ-କୁଳ କରନ୍ତ ଗମନ
ତା ପଛେ ନେପାଳୀ ପାଳ ଯେଚ୍ଚ ତା ନନ୍ଦନ । ୮ ।
ଭ୍ରମଣ କରନ୍ତ ଗଣ୍ଡା ଗଣ୍ଡା ଗଣ୍ଡା ହୋଇ
ବରଙ୍ଗୀ ବରଙ୍ଗ-ରଙ୍ଗ କପଶ ଗୋ ସହି । ୯ ।
ଫୁଟିଣ ସୁବାଶେ ବାସେ ମାଳତି କୁସୁମ
କ ସୁନ୍ଦର ଗୋ ସୁନାକ୍ଷି ! ସୁନାଶ-ବରଣ । ୧୦ ।

(ନେପାଳୀ-ନେପାଳୀ ମୂଷା, ବରଙ୍ଗୀ-ସୀତା, ବରଙ୍ଗ-କନ୍ଦର୍ପ, ସୁନାକ୍ଷି-ସୀତା, ସୁନାଶ-ସୁନାଶଫୁଲ)

## ପ୍ରାନ୍ତ ଯମକ—

ଫୁଟିଣ ବାନ୍ଧୁ ଅଛନ୍ତ ସୁମନା ! ସୁମନା
ଆନନ୍ଦରେ ଦେଖ ସଖୀ ନବୀନା ନବୀନା । ୧୧ ।

ଫୁଲେ ଫୁଲେ ଉଡ଼ି ବସେ ଭ୍ରମରେ ଭ୍ରମରେ
ମକରନ୍ଦ ପାନକରେ ଭ୍ରମରେ ଭ୍ରମରେ । ୧୨ ।
ଶରଦ ଚନ୍ଦ୍ରମା ମୁଖୀ ଆସି ଦେଖ ଦେଖ
ଶୁକ-ସରଙ୍କର ସ୍ୱନ ମନେରଖ ରଖ । ୧୩ ।
ଖର୍ଜୁର ଦାଡ଼ିମ୍ବ ଫଳ ହୋଇ ପେଣ୍ଡି ପେଣ୍ଡି
ଜେମ୍ବୁ-ନାରଙ୍ଗେ ବିଟପ ହୋଇ ମଣ୍ଡି ମଣ୍ଡି । ୧୪ ।

(ସୁମନା-ସୀତା ଓ ଫୁଲ, ନବୀନା-ନୂତନ ବୟସୀ ସୀତା, ନବନା-ଫୁଲ, ଭ୍ରମରେ-ଭ୍ରମରମାନେ ଓ ଭ୍ରାନ୍ତରେ)

ସର୍ବ ଯମକ—

ଅନ୍ୱିତ ଅଦ୍ୱିତ ଜନେ ଖେଳା ନାନା ରଙ୍ଗେ
ଅନ୍ୱିତ ଅଦ୍ୱିତ ଜନେ ଖେଳା ନାନା ରଙ୍ଗେ । ୧୫ ।
କଳାକର ମୁଖୀ, ତୁହି କଳନାକୁ କର
କଳାକର ମୁଖୀ, ତୁହି କଳ ନାଁକୁ କର । ୧୬ ।
ହରିବର-ଶାବକରେ ଖେଳାଇ ହରଷେ
ହରି-ବରଷା ବକରେ ଖେଳାଇ ହରଷେ । ୧୭ ।
ନିର୍ଝରରୁ ଝରଝର ହୋଇ ବହେ ଝର
ନିର୍ଝରରୁ ଝରଝର ହୋଇ ବହେ ଝର । ୧୮ ।

(କଳାକର ମୁଖୀ-ଚନ୍ଦ୍ରମୁଖୀ, କଳନା-ବୁଝି, କଳନାଁକୁ କର-ଟିକିଏ ମାନ ମଧୁର କଥା କହ, ହରି-ସିଂହ, ହରି-ବରଷା-ମେଘ ବରଷା, ନିର୍ଝର-ଝରଣା ଓ ଝର ନଥିବା ସ୍ଥାନ ବିଶେଷ, ଝରଝର-ଝର୍ଝର ନାଦରେ)

ଷଡ଼ବିଂଶ ଛାନ୍ଦ ରାମଙ୍କ ଋଷ୍ୟମୂକ ପ୍ରବେଶ ସମୟେ ସୀତାଙ୍କ ବିହୁନେ ଖେଦୋକ୍ତି—

ସଲକ୍ଷଣ ଲକ୍ଷ୍ମଣ ସଙ୍ଗେ ଦୈନ୍ୟ ଭୂଷଣ
ଗମୁଁ ଈକ୍ଷଣ୍ଟୁ ଲୁହମାନ

ଯାହା ପୀତା ଅମୃତା      ଧନ୍ୟ ଦେଲୁ କି ଚିନ୍ତା

ଧାତା ଲିଖନ ହେଲା ଆନ ଗୋ

ସୁ ଶୋଭାଙ୍ଗୀ

ତୋ ବିନା ବନାରେ ନର୍ତ୍ତନା

ଆଜି ମୋ ଶରଣ ନାହିଁ ନା

ଭାବନା ଭାବ ଯେତେ      ଭାବ ଭବ ନରତେ

ତେଜିଲୁ କାହା ହେତୁ ମନା ଗୋ । ୧ ।

ରୁଷି-ଋଷି ମୋହିନୀ      ଗଣକୁ ଗୁଣି ଗୁଣି

ଋଷ୍ୟମୂକାଦ୍ରି ତଳେ ମିଳି

ବର୍ଣ୍ଣୀ ବଳେ ବଳିଷ୍ଠ      କଶ୍ୟପ ଗୃଠ-ଗୃଠ

କନସ୍ଥ କୂଟେ କୁଟେ ବିଳ ସେ

ଗୃହ ମନ୍ତ୍ରୀ

ସଙ୍ଗତେ ନଭଗ-ତନୁଜ

ବଗୃରେ ରବିର ଆତ୍ମଜ

ମାର୍ଗେ ଦେ ଆସୁଛନ୍ତି      ମାର୍ଗଣ ଧରିଛନ୍ତି

ଯାଅ ତୁ ବଟୁରୂପେ ଦ୍ୱିଜ । ୨ ।

(ସ ଲକ୍ଷଣ ଅର୍ଥାତ୍ ସମସ୍ତ ସୁଲକ୍ଷଣ ଯୁକ୍ତ ଶ୍ରୀରାମ, ସୁକ୍ଷଣ-ସୁମୁହୂର୍ତ୍ତରେ ଲକ୍ଷଣୁ-ନେତ୍ରରୁ, ଅମୃତାଧାରା-ଯାହା ଅଧରରୁ ଅମୃତ ଝରେ ଅର୍ଥାତ୍ ସୀତା, ଲିଖନ-ଭାଗ୍ୟଲେଖା, ସୁଶୋଭାଙ୍ଗୀ-ପରମ ରୂପବତୀ, ନର୍ତ୍ତନା-ଚିର ନୂତନା, ଭାବନା-ଚିନ୍ତାଶୀଳା, ଭବ-ବିଳାସ ଓ ଅନୁରାଗ, କାହାହେତୁ-ଅନ୍ୟ କାହାର ପାଇଁ, ମନା-ନିଷେଧ) । ୧ ।

(ଋଷି-ଅଭିମାନ କରିଥିବା, ଋଷି ମୋହିନୀ-ଯାହାର ଶୋଭା ଋଷିଙ୍କୁ ମୋହିତ କରିଥାଏ, ଗୁଣ-ସଦ୍‌ଗୁଣ, ଗୁଣି-ଗୁଣି-ଭାବିଭାବି, ଋଷ୍ୟମୂକ-ଏକ ପର୍ବତର ନାମ, କଶ୍ୟପ ଗୃଠ-ସୂର୍ଯ୍ୟ, କଶ୍ୟପ ଗୃଠ ଗୃଠ-ସୂର୍ଯ୍ୟଙ୍କ ପୁତ୍ର ସୁଗ୍ରୀବ, କନସ୍ଥ-ସ୍ଥାନ, କୁଟେ-କପଟରେ, କୂଟେ-ପର୍ବତରେ, ବିଳ ଗୁହା, ନଭଗ-ପବନ, ନଭଗ ତନୁଜ-ହନୁମାନ, ରବିର ଆତ୍ମଜ-ସୁଗ୍ରୀବ, ମାର୍ଗେ-ପଥରେ, ମାର୍ଗଣ-ଧନୁଶର, ବଟୁ-ବ୍ରାହ୍ମଣ, ଦ୍ୱିଜ-ବଗୃରକର) । ୨ ।

ରାଘବ ବିଳାପ ଦ୍ୱାବିଂଶ ଛାନ୍ଦରେ କବି ଯଦୁମଣି ଶ୍ରୀରାମଙ୍କର ସୈନ୍ୟ ସହ ସିନ୍ଧୁକୂଳରେ ପ୍ରବେଶ ଓ ସୀତାଙ୍କ ବିହୁନେ ଖେଦ ବଚନ ବର୍ଣ୍ଣନା ଗୃଭୁସ୍ୱର ପରାକାଷ୍ଠା ପ୍ରତିପାଦନ କରିଛନ୍ତି—

ଦ୍ୱିଜବର ବର ଚଉ ସ୍ୱଭାବର
ଧରି କାତର ତରରେ
ହା ହା ସୀତା ସୀତା ହୃଦେ ବିକଶିତା
ହର ମୋ ହର ମୋହରେ । ୧ ।

ଅନାଥରେ ଅନା ଦର କରି କରି
ଜଟିଗଣ୍ଡି କେଣେ ଗଲୁ
ତୋ ବିନା ହିତାରେ କେ ଅଛି ହିତାରେ
ତେଜି ଅହିତା ହୋଇଲୁ । ୨ ।

ଚିନ୍ତା ଉଦଧିରେ ଭସାଇ ସଧୀରେ
ଭବିଷ୍ୟ ଦେଲୁରେ ଧୀରେ
ଆଶା ବିନାଶରେ ଆଶା ବିନାଶରେ
ଅବିନାଶିକି ନାଶିରେ । ୩ ।

ହୃଦୟରେ ମଣି ହୃଦୟରେ ମଣି
ମଣି ଅସ ନଗରଣି
ନୀରଜ ଗାତ୍ରରୁ ନୀରଜ ନେତ୍ରରୁ
ନୀର ଅଧୀର ଧାରଣି । ୪ ।

ଏ କାଳେ ସେ କାଳେ ମିଳି ଛଳ କାଳେ
ବିକଳେ ଆକୁଳେ କୂଳେ
ବୁଦ୍ଧି ପ୍ରବୋଧିଲେ ଅନ୍ତହିଁ ବୋଧରେ
ବଧିରେ ଧୀରରେ ବଳେ । ୫ ।

(ଦ୍ୱିଜବର ବର-ରାମଚନ୍ଦ୍ର, କ୍ଷତ୍ରିୟ ଶ୍ରେଷ୍ଠ, ହର-ହରଣକରିବା, ହର-ମୋହ, କାମ, ଉଦଧି-ସମୁଦ୍ର)

ପୁନଶ୍ଚ ସପ୍ତବିଂଶ ଗୁଚ୍ଛରେ ବଶ୍ଳିଷଣ ଶରଣ ବିଷୟ କବି ବିଚିତ୍ର ଭଙ୍ଗୀରେ ବର୍ଣ୍ଣନା କରିଛନ୍ତି—

ପୂର୍ବଦେବତା-ଶର୍ବରୀ ଭର୍ତ୍ତା ଆଗେ ଦୂତ ବାର୍ତ୍ତା କଲା ପ୍ରକାଶ
ଅଶୋକ ବନେ ସଶୋକେ ଥିବା ବଧୂ-ବନ୍ଧୁ ସିନ୍ଧୁ କୂଳେ ପ୍ରବେଶ
ହାସ୍ୟ ରସରେ, ଭଷି ଭଷିଲା ଦଶଗ୍ରୀବ
ନାଗ ବନ୍ଧନେ ବାରିଧି ଝାସେ ତନୁ ନାଶିବ ବୋଲି ଆସିଥିବ । ୧ ।

ପୂର୍ବ ଦେବତ -କଶ୍ୟପଙ୍କ ପ୍ରଥମ ସ୍ତ୍ରୀ ଦିତିଙ୍କ ଗର୍ଭରୁ ଜାତ ପୁତ୍ରମାନେ ପ୍ରଥମ ଦେବତା ନାମରେ ଅଭିହିତ ଥିଲେ । ତାଙ୍କର ଦ୍ୱିତୀୟ ସ୍ତ୍ରୀ ଅଦିତିଙ୍କ ଗର୍ଭରୁ ଜାତ ପୁତ୍ରମାନେ ସଦ୍‌ଗୁଣରେ ନିପୁଣ ହେତୁ ଭକ୍ତ ଦେବତା ନାମରେ ଅଭିହିତ ହେଲେ । ଅସଦ୍‌ଗୁଣରୁ ପ୍ରଥମ ଦେବତାମାନେ ଦୈତ୍ୟ ହୋଇଗଲେ ।

ପୂର୍ବ ଦେବତା – ଶର୍ବରୀ ଭର୍ତ୍ତା ଯେ ଦାନବ ଚନ୍ଦ୍ରମା ରାବଣ (ଶର୍ବରୀ-ରଜନିର ଭର୍ତ୍ତା ଯେ ଚନ୍ଦ୍ରମା) ଅଶୋକ ବନରେ ଶୋକାକୁଳା ବଧୂ ଯେ ସୀତା, ତାଙ୍କର ବନ୍ଧୁ ଯେ ଶ୍ରୀରାମ ସୈନ୍ୟ ସାମନ୍ତ ସହ ସିନ୍ଧୁକୂଳରେ ଯୁଦ୍ଧପାଇଁ ଉପସ୍ଥିତ ହେବା ଶୁଣି ଦଶଗ୍ରୀବ ଯେ ରାବଣ ଅଟ୍ଟହାସ୍ୟ କରି କହିଲା, ଯେ ରାମଚନ୍ଦ୍ର ନାଗ ବନ୍ଧନେ ବା ସୀତା ବନ୍ଧନେ ସାଗରରେ ଝାସ ଅର୍ଥାତ୍ ଆତ୍ମହତ୍ୟା କରିବାକୁ ଆସିଥିବ । ୧ ।

"ବଡଣ୍ଡ ଅନୁଜ ପବନ ତନୁଜ ଗମନୁ ଯାଇଛି ଦେଖାଯେ"
ଦେଖିଲା ଏଥର ନେତ୍ର ଗୋଷ୍ପାନ୍ତକ ପ୍ରଜ୍ୱଳ ଜ୍ୱଳନ ଶିଖା ଯେ
କୋପେ ଲଙ୍କେଶ, କର୍ମି ଅନାଇଲା ନନ୍ଦନେ
ପ୍ରଶସ୍ତ ହସ୍ତ ମସ୍ତକେ ନ୍ୟସ୍ତ କରି ଶାନ୍ତ କଲା ଭାଷା ଚନ୍ଦନେ । ୨ ।
ତାଙ୍କ ଦୃଷ୍ଟି ନ୍ୟାସ କର୍ମୀ କଲା ଈଶ କାହାକୁ ଦେବ ଯେ ପାଞ୍ଚକ
ଯେବେ ଓଷ୍ଟେ ରଦ ଦେବ, ମୃତ୍ୟୁଦେବ ଦେବତା ମୃତାହ ପଞ୍ଚକ
ସତ୍ୟ ରାବଣ, ଭଣୁ ବଶ୍ଳିଷଣ ବୋଇଲା
ସିନ୍ଧୁ ମଧ୍ୟେ ସ୍ଥିତ ସ୍ୱର୍ଣ୍ଣଖଚିତ ଶୀର୍ଣ୍ଣ ନାବ ସ୍ୱାଗ ଯୋଗ ପାଇଲା । ୩ ।

ଅନୁଜ-ସାନଭାଇ ବିଭୀଷଣ ବଦନ୍ତି ଯେ କହିଲ ପବନ ତନୁଜ ଯେ ହନୁ ଗମନୁ ଅର୍ଥାତ୍ ଆସିବା ସମୟରୁ ସମସ୍ତ ପ୍ରକାର ବିପଦ ଦେଖା ଯାଉଅଛି । ଗୋଷାନ୍ତକ ଅର୍ଥାତ୍ ଗୋଷବୈରି (ଅନ୍ତକ-ଯମ) ଏଥିରେ ଟେକିଲ ଯେ ଉପରକୁ ଉଠିଲା ପ୍ରଜ୍ୱଳ ଯେ ଜଳନ୍ତା ଜ୍ୱଳନ ଯେ ଅଗ୍ନି । ଏହାଶୁଣି କୋପରେ ରାବଣ ନନ୍ଦନେ ଯେ ନନ୍ଦନଙ୍କ ସାକୁ ଗୃହିଁଲ । ପ୍ରଶସ୍ତ ଯେ ଜନୈକ ମନ୍ତ୍ରୀ ଭାଷା ଚନ୍ଦନେ ଯେ ଭାଷା ବୃତ୍ତିରେ ଚନ୍ଦନେ ଯେ ଶୀତଳତ କରେ ଶାନ୍ତକଲା ।

(ନ୍ୟାସ-ନିକ୍ଷେପ, ପାଞ୍ଚନ-ଦୁଷ୍ଟାନ୍ତା, କ୍ଷତିକାରିକ, ରଦ-ଦନ୍ତ, ମୃତ୍ୟୁଦେବ-ଯେ ଯମ ଦେବତା, ସ୍ୱର୍ଣ୍ଣକିତ-ସ୍ୱର୍ଣ୍ଣଲଙ୍କା, ଶୀର୍ଣ୍ଣ-କ୍ଷୀଣ, ସ୍ୱାତି-ସପ୍ତବିଂଶତି ନକ୍ଷତ୍ର ମଧ୍ୟରୁ ପଞ୍ଚଦଶ ନକ୍ଷତ୍ର, ବର୍ଷା ଓ ବାତ୍ୟା କାରକ) ।

ଅର୍ଥାତ୍ ପ୍ରଶସ୍ତ କହିଲା ଯେ ହେ ପ୍ରଭୁ ! ନିଜ ଭାଇ ବିଭୀଷଣ ପ୍ରତି ଏପରି କ୍ରୁଦ୍ଧଦୃଷ୍ଟି ପକାଇଲେ ଏହାଦ୍ୱାରା କାହାର କ୍ଷତିହେବ । ଯଦି ତୁମେ ଓଷ୍ଠ କାମୁଡ଼ି ରଗିଯିବ ତେବେ ମୃତ୍ୟୁଦେବ ଯମ ତାର ମୃତ୍ୟୁର ପଞ୍ଚକ ଦେବ ଅର୍ଥାତ୍ ମୃତ୍ୟୁହେବ । ଏଣୁକରି ରାବଣ କହିଲା ସତକଥାତ । ବିଭୀଷଣ କହିଲା ସିନ୍ଧୁ ମଧ୍ୟରେ ଥିବା ଲଙ୍କାକୁ ଯେବେ ସୀତା ହରଣ କରିବା ଦୁର୍ନୀତି ଯୋଗୁଁ ଚୋଟିଏ କ୍ଷୀଣନାବ ହୋଇ ଥିଏ ଯାଏ ତେବେ ତାକୁ ସ୍ୱାତି ଯୋଗ ପଡ଼ିଲା । ଅମାବାସ୍ୟା ଶନିବାର ସ୍ୱାତି ନକ୍ଷତ୍ର ପଡ଼ିଲେ ମହାବାତ୍ୟା ହୁଏ । ଏଠାରେ ଅମାବାସ୍ୟା ରାବଣ, ଶନିଗ୍ରହସ୍ଥ ଏବଂ ସ୍ୱାତି ନକ୍ଷତ୍ର ହନୁମାନଙ୍କ ଯୋଗ ଅଛି ।

କେଶରୀ ଗର୍ଭୁ ଉଦ୍ଭବ ପରାଭବ ଟିବାରେ ହେବାର ପାଇଁଇ
ପବନ ଯେ ବନବାସୀର ଚରଣ ଶରଣରେ ବସି ଉସାଇ
ମନ୍ତ୍ରୀ ବିବଣ, ଗୃହିଁ ରାବଣ ଆଜ୍ଞା ଦେଲା
କରନ୍ତେ ଉକ୍ତ କର ଧରି ହସ୍ତରେ କେଉଡ଼ବନ୍ତ ହୋଇ ଚଳିଲା । ୪ ।

କେଶରୀ ଯେ ସିଂହ ଗର୍ଭରୁ ଜାତହୋଇ ପରାଭବ ଅର୍ଥାତ୍ ଯେ ସର୍ବଦା ପରାସ୍ତ ହୁଏ ଦୁର୍ବଳ ଶିବା ଯେ ଶୃଗାଳ ସଦୃଶ୍ୟ ତାର ମଙ୍ଗଳଚିନ୍ତା କରୁଅଛି । ପବନ ଅର୍ଥାତ୍ ଶୀଘ୍ର ସେ ବନବାସୀ ରାମ ଚରଣ ଶରଣରେ

ଉପାଇଛନ୍ତି । ଅର୍ଥାତ୍ ରାବଣ ପଞ୍ଚଦାସ ନ୍ୟାୟରେ କହିଲା ସେହି ଦରିଦ୍ର ବନବାସୀ କ୍ଷୁଦ୍ର ମଣିଷ ପାଦତଳେ ସେ ଶରଣ ପଶୁ । ରାବଣ ମହୀରାବଣ ଏକ ଦୁର୍ଦ୍ଧର୍ଷ ଦୈତ୍ୟଙ୍କୁ କହିଲା ମହୀରାବଣ ଲୋଭବନ୍ତ ଅର୍ଥାତ୍ ପ୍ରଲୋଭିତ ହୋଇ ଉଦ୍ଧୋଚ କଢ ଧରି ଗମନ କଲା । ୪ ।

ଦୁର୍ଗ ପ୍ରାକାର ପାଶ କରି ଦିଅନ୍ତେ ଅନନ୍ତେ ବିଶ୍ରବା କୁମର
ରହି ଛବିଲା-ରଥାଙ୍ଗ ଶଙ୍ଖ ଯବ ଧ୍ୱଜ ରେଖା ତ ପଙ୍କ'ମ୍ବର
ଗୁରୁ ଚରଣେ, ଶରଣ ପଶିବ ପାଇ ଯେ
ଦୟା ନିକେତନ କେତନ ଉଡୁଛି ଚିନ୍ତା ହେବ କାହିଁ ପାଇଁ ଯେ । ୫ ।
କପି ସୃଷ୍ଟିଙ୍କ ଦୃଷ୍ଟି ବୃଷ୍ଟି ଏକାଳେ ହେଲା ବିଭୀଷଣ ପିଣ୍ଡେ ଯେ
ଭାବିଲେ ରାବଣାନନ୍ଦ ଦର୍ପାଗ୍ନିର ଧୂମକେତୁ ସମ ଖଣ୍ଡେ ଯେ
ନଭେ ଶୋଭନ, ହୋଇଅଛି ଦେଖ ଆଜ ହେ
'ଶ୍ରୀରାମେ ଶରଣ ପଶିବା ଉଡ଼ିଲା' ଦନୁଜ ରାଜ ଅନୁଜ ଯେ । ୬ ।

(ଦୁର୍ଗ-ଲଙ୍କାଗଡ଼, ପ୍ରାକାର-ପ୍ରାଚୀର, ପାରେଶ, ଅନନ୍ତେ-ଆକାଶରେ, ବିଶ୍ରବା କୁମର-ବିଶ୍ରବା ଋଷିଙ୍କର ପୁଅ ବିଭୀଷଣ, ରଥାଙ୍ଗ-ଚକ୍ର, ରେଖା-ଊର୍ଦ୍ଧ୍ୱରେଖା, କପିସୃଷ୍ଟି-ବାନର କଟକ ସମୂହ, ବୃଷ୍ଟି-ପତନ, ପିଣ୍ଡେ-ଅଙ୍ଗରେ, ରାବଣାନନ୍ଦ-ରାବଣର ଆନନ୍ଦ, ଦର୍ପାଗ୍ନି-ପୋଡ଼ିହୋଇ ଯେଉଁ ଅଗ୍ନି ଜାତହୁଏ, ନଭେ-ଆକାଶରେ, ଧୂମକେତୁ-ଉପଗ୍ରହ, ଦନୁଜରାଜ-ରାବଣ, ଦନୁଜରାଜଙ୍କ ଅନୁଜ-ବିଭୀଷଣ)

ଅର୍ଥାତ୍ ଲଙ୍କାଗଡ଼ ପାରେଶ ପାଶି ହେବାପରେ ବିଭୀଷଣ ଆକାଶରେ ରହି ଛବିଲା ଶଙ୍ଖ ଚକ୍ର ହସ୍ତ ଶ୍ରୀରାମଙ୍କ ଚରଣ ତଳେ ଶରଣ ପଶିବା ମୋ ପକ୍ଷେ ଶ୍ରେୟ । ଶ୍ରୀରାମଚନ୍ଦ୍ର ଦୟାର ନିକେତନ ବୋଲି କେତନ ଯେ ବାନା ଉଡ଼ୁଅଛି ଏଣୁ ଏହି ବିଷୟରେ ମୋର ଚିନ୍ତା କରିବା ଆବଶ୍ୟକ ନାହିଁ ।

ବିଭୀଷଣଙ୍କୁ ଆକାଶ ମାର୍ଗରେ ଦେଖି ସମସ୍ତେ ଭାବିଲେ ଶ୍ରୀରାମ ଆମ୍ଭମାନଙ୍କୁ ଧରି ଯୁଦ୍ଧୋଦ୍ୟମକୁ ଆସିବାରୁ ରାବଣର ଆନନ୍ଦ ଦର୍ପ

ହୋଇ ଯେଉଁ ଅଗ୍ନି ବାହାରୁଛି, କ୍ରୋଧରୂପ ଧୂମକେତୁ ପରି ଏହା ସେଥିରୁ ଖଣ୍ଡେ ଆକାଶରେ ଶୋଭମାନ ହୋଇଅଛି । ତେଣୁ ସୁଗ୍ରୀବଙ୍କୁ ଡାକିଲେ ହେ ରାଜା ! ଏହା ଦେଖ । ଏତିକିବେଳେ ଆକାଶରୁ ବିଭୀଷଣ ଡାକିଲା ହେ ମୁଁ ଶ୍ରୀରାମଙ୍କ ନିକଟରେ ଶରଣ ପଶିବା ପାଇଁ ଆସିଅଛି ।

କର ପ୍ରସାର ଆସ ଆସ ଉଚାର ମର୍କଟ ମୁକୁଟାଳଙ୍କାର
ପୁଣ୍ୟଜନ ବାଣୀ ପୁଣ୍ୟଜନ ଶୁଣି ପ୍ରବେଶ ହୋଇଲେ ସତ୍ୱର
ରୋମା ରମଣ, ପ୍ରେମାନନ୍ଦେ କଲେ ଆଶ୍ଳେଷ
ରାବଣାନୁଜ ଛନ୍ଦିଲେ ହେ କିଷ୍କିନ୍ଧ୍ୟାପୁର ହରି ଗୀରାବତଂସ । ୬ ।

(ପ୍ରସାର-ମେଲିକରି, ମର୍କଟ ମୁକୁଟାଳଂକାର-ମର୍କଟ ଜାତିର ମୁକୁଟ ସ୍ୱରୂପୀ ଯେ ରାଜବଂଶ ତହିଁରେ ଅଳଙ୍କାର ସଦୃଶ ସଦ୍‌ଗୁଣବନ୍ତ ଅର୍ଥାତ୍ ସୁଗ୍ରୀବ, ପୁଣ୍ୟଜନ-ଧାର୍ମିକ, ପୁଣ୍ୟଜନ-ରାକ୍ଷସ, ରୋମା-ସୁଗ୍ରୀବଙ୍କ ପ୍ରଥମ ବିବାହିତା ସହଧର୍ମିଣୀ, ଆଶ୍ଳେଷ-ଆଲିଙ୍ଗନ, ରାବଣାନୁଜ-ବିଭୀଷଣ, ଛନ୍ଦିଲେ-ଉପହାସ କଲେ, ହରି-ମର୍କଟ, ଅବତଂସ-ବଂଶର ଯୋଗ୍ୟବ୍ୟକ୍ତି)

ଅର୍ଥାତ୍ ସୁଗ୍ରୀବ ହାତ ମେଲିକରି ଆସ ଆସ ବୋଲି କହିଲେ । ପୁଣ୍ୟଜନ ଯେ ଧାର୍ମିକ ଲୋକର ବଚନ ଶୁଣି ପୁଣ୍ୟଜନ ଯେ ରାକ୍ଷସ ବଂଶୀୟ ବିଭୀଷଣ ପ୍ରବେଶ ହେଲେ । ରୋମା ରମଣ ଯେ ସୁଗ୍ରୀବ ଆନନ୍ଦରେ ବିଭୀଷଣଙ୍କୁ ଆଶ୍ଳେଷ ଯେ ଆଲିଙ୍ଗନ କଲେ । ବିଭୀଷଣ ସୁଗ୍ରୀବଙ୍କୁ ମର୍କଟ ବଂଶର ଯୋଗ୍ୟ ବ୍ୟକ୍ତି ବୋଲି କହି ଅନୁରଞ୍ଜିତ କରିଥିଲେ ।



# ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର କାବ୍ୟ ରଚନାରେ ଯଦୁମଣି

ରାଜା ବିନାୟକ ମାନଧାତାଙ୍କ ପରେ ଯୁବରାଜ ବ୍ରଜବଲ୍ଲଭ ସିଂହାସନ ଆରୋହଣ କରିଥିଲେ । କବିସୂର୍ଯ୍ୟ ବଳଦେବଙ୍କ ମଧ୍ୟସ୍ଥିତାରେ ବ୍ରଜବଲ୍ଲଭ ଆଠଗଡ଼ ରାଜଜେମା ଅନଧ୍ୟାଙ୍ଗୀ ରାଜକୁମାରୀ କଳାବତୀଙ୍କୁ ବିବାହ କରିଥିଲେ । ମାତ୍ର ଆଠଗଡ଼ର ଯୁବରାଜ ରାମଚନ୍ଦ୍ର ଓ ବ୍ରଜବଲ୍ଲଭ ଦୁହେଁ କୁପଥଗାମୀ ହୋଇ ରାଜ ଦରବାରରେ କବି, ଜ୍ଞାନୀ ଓ ପଣ୍ଡିତମାନଙ୍କ ସ୍ଥାନରେ ଅସାମାଜିକ ଚରିତ୍ରହୀନ ମଦ୍ୟପୀ ଓ ଚାଟୁକାରମାନଙ୍କ ସ୍ଥାନ ବୃଦ୍ଧି ପାଇଲା । ଖଳ ଲୋକଙ୍କ କଥାରେ ପ୍ରଭାବିତ ହୋଇ ବ୍ରଜବଲ୍ଲଭ ଯଦୁମଣିଙ୍କ ଜାଗିର ଜମିକୁ ଉଚ୍ଛେଦ କରି ନୂତନ ଚାଟୁକାରମାନଙ୍କୁ ଦେଇଦେଲେ । ବ୍ରଜବଲ୍ଲଭ ସର୍ବଦା ବେଶ୍ୟାମାନଙ୍କ ବେଷ୍ଟଣରେ ରହୁଥିବାରୁ ଯଦୁମଣି ରାଜାଙ୍କୁ ସାକ୍ଷାତ କରି ନିଜର ଦୁଃଖ ଜଣାଇ ପାରୁନଥିଲେ । ଶେଷରେ ସେ ନୟାଗଡ଼ ରାଜଦରବାର ତ୍ୟାଗକରି ଅର୍ଥ ଉପାର୍ଜନ କରି ପରିବାର ଭରଣ ପୋଷଣ ଉଦ୍ଦେଶ୍ୟରେ ରଣପୁର, ଦଶପଲ୍ଲା, ଢେଙ୍କାନାଳ, ତିଗିରିଆ, ବଡ଼ମ୍ବା, ନରସିଂହପୁର, ଅନୁଗୁଳ, ବୌଦ୍ଧ, ଆଠଗଡ଼, ଖଲିକୋଟ ଓ ମଞ୍ଜୁଷା ଇତ୍ୟାଦି ରାଜ୍ୟକୁ ଯିବାପାଇଁ ବାଧ୍ୟହେଲେ ।

ବ୍ରଜବଲ୍ଲଭ ଅପୁତ୍ରିକ ଭାବେ ଶୀଘ୍ର ମୃତ୍ୟୁବରଣ କଲେ । ଫଳରେ ତାଙ୍କର ଧାନଭଞ୍ଜଙ୍କର ପୁତ୍ର ଲଡୁକେଶ୍ୱର ପୋଷ୍ୟପୁତ୍ର ରୂପେ ନୟାଗଡ଼ ରାଜସିଂହାସନରେ ଅଧିଷ୍ଠିତ ହେଲେ । ଲଡୁକେଶ୍ୱର ନାବାଳକ ଥିବାରୁ ଇଂରେଜ ସରକାରଙ୍କର ଲୋଲୁପ ଦୃଷ୍ଟି ନୟାଗଡ଼ ଉପରେ ପଡ଼ିଥିଲା । ଏଣେ ଖଳ ଓ ସ୍ୱାର୍ଥପର କର୍ମଚାରୀମାନେ ସରଳ ବାଳକ ଲଡୁକେଶ୍ୱରଙ୍କୁ ବିପଥଗାମୀ କରି ଫାଇଦା ନେଉଥିଲେ । ରାଜ୍ୟର ଏପରି ଅବସ୍ଥା ଦେଖି ଯଦୁମଣି ଏକ କବିତା ଲେଖି ରାଜାଙ୍କୁ ଉପହାର ଦେଇଥିଲେ ।

କରମକୁ ମୋର ଜନକ ବଳିଗଲା କି ପଥର (ପଦ)
କରକଶ ନବନୀତ ହୋଇଲା କଫଳା ଦାନେ କଳୁଷ ଜନ୍ମିଲା
କରି କୁମ୍ଭ ସ୍ତନୀ ସହାୟ ଥିଲା, କୋପେ ମାନସିଜ ବ୍ୟାକୁଳ କଲା । ୧ ।

କୁସୁମ କାର୍ମୁକ ପର ଅର୍ଚ୍ଚନ, କରିଥିବା ଜନ ନ ପାଏ ଅନ୍ତ
କଳ୍ପତରୁ ତଳେ କରି ସଦନ, କରିବା ସଙ୍କଳ୍ପ ନୋହିଲା ପୂର୍ଣ୍ଣ । ୨ ।
କଂସ ଅରାତି କି କରି ସରଣ, କୃତାନ୍ତ ଦଣ୍ଡକୁ ହେଲା କାରଣ
କଣ୍ଟ ନଉକା ଦର ଆରୋହଣ, କାଳନ୍ଦୀରେ ବୁଡ଼ି ଯାଉଛି ପ୍ରାଣ । ୩ ।
କଦମିଶା ସର ଅଶନୁ ଜାତ, କରାଉ ଅଛି ଯେ କହ୍ନୁ ଉକତ
କଳାକର ମୁଖୀ ଅଙ୍କରେ ସ୍ଥିତ, କରିଥିଲା କାମ ନେଲା ଲିଖିତ । ୪ ।
କରି ଅବଗାହ କ ମୁଖୀ ମରେ, କଣ୍ଟ ନାଶ ଯାଉଅଛି ତୃଷ୍ଣରେ
କର୍ପୂର ଚନ୍ଦନ ଥାଇ ଅଙ୍ଗରେ, କଲ୍ପାନ୍ତ ଖରାସମ ବ୍ୟଥା କରେ । ୫ ।
ଧର କଳତେ ଥିଲା ଚିନ୍ତାମଣି, କ୍ଳେଶ ମାତ୍ର ଦେବେ ନଟଲା ପୁଣି
କନ୍ତ୍ଵ କର୍ଣ୍ଣ ପ୍ରିୟ ମଧୁର ବାଣୀ, କି କଲେ ଲଭୁକେଶ ନରମଣି । ୬ ।

ଏହାପରେ କବି ଯଦୁମଣି ରାଜଦରବାରକୁ ଆଉ ନିୟମିତ ଭାବେ ଆସିଲେ ନାହିଁ । ଆସ୍ତେ ଆସ୍ତେ କବିଙ୍କର ଚିନ୍ତାଧାରା ବୈଷ୍ଣବ ମତବାଦ ପ୍ରତି ଆକୃଷ୍ଟ ହେଲା । କାରଣ ସେତେବେଳେ ଓଡ଼ିଆ ସାହିତ୍ୟରେ ରାଧାକୃଷ୍ଣଙ୍କ ଚରିତ ଚିତ୍ରଣ ବହୁଳ ଭାବରେ ବର୍ଣ୍ଣିତ ହେଉଥିଲା । ଏଣୁ ଯଦୁମଣି ଏହାର ସୁଯୋଗ ନେଇ କୃଷ୍ଣ ଚରିତ କାବ୍ୟ "ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର" ରଚନା କରିବାକୁ ମନ ବଳାଇଲେ । ସେତେବେଳେ ସେ କୌଣସି ରାଜାଙ୍କ ଅନୁଗ୍ରହରେ ପ୍ରତିପାଳିତ ନଥିଲେ । ଏଣୁ ତାଙ୍କର ଏହି ଅଭିନବ କୃତିକୁ ଯେ କୌଣସି ରାଜାଙ୍କ ନାମରେ ଉତ୍ସର୍ଗ ନକରି କୃଷ୍ଣଙ୍କୁ ଜଗନ୍ନାଥ ଭାବେ ମନେକରି ଶ୍ରୀଜଗନ୍ନାଥଙ୍କୁ ହିଁ ଉତ୍ସର୍ଗ କରିଛନ୍ତି । କବି ଏହାର ପ୍ରତ୍ୟେକ ଛାନ୍ଦକୁ "କଳା" ନାମରେ ନାମିତ କରି ଭଣିତରେ କେବଳ ଗ୍ରନ୍ଥକର୍ତ୍ତା ବୋଲି ଉଲ୍ଲେଖ କରିଛନ୍ତି ।

କେବଳ ହାସ୍ୟରସିକ, ଚଉପଦୀ ରଚୟିତା ରୂପରୁ ଉନ୍ନତି ଲାଭ କରିଛନ୍ତି ଜଣେ ମହାକବି ପଣ୍ଡିତ ଯଦୁଙ୍କୁ "ରାଘବ ବିଳାସ" ଓ "ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର" ଗ୍ରନ୍ଥ ରଚନା କରି । ତଥାପି କବିଙ୍କ ମନରେ ଅହଂକାର ନାହିଁ, ଗର୍ବ ନାହିଁ । ପଣ୍ଡିତ ମଣ୍ଡଳୀ ସଦ୍‌ଜନମାନଙ୍କ ପ୍ରତି ଗଭୀର ଶ୍ରଦ୍ଧା ଓ ଭକ୍ତି ତାଙ୍କ ଅନ୍ତରେ ଭୟ ସୃଷ୍ଟି କରିଛି । ସେ "ପ୍ରବନ୍ଧ 'ପୂର୍ଣ୍ଣଚନ୍ଦ୍ର" କାବ୍ୟରେ ଲେଖିଛନ୍ତି—

ଶୂଦ୍ରମୁଖୁଁ ଏ ହୋଇଛି ବାହାର, ଗୌଡ଼ବ୍ରତୀ ବହି କେହି ନ ବଡ଼ୁର
ବିଧୂ ବିଧୁନ୍ତୁଦ ଉଚ୍ଛିଷ୍ଟ ଜଣା, ଶିବେ ବାଜେ ଚନ୍ଦ୍ରଚୂଡ଼ ବାଜଣା ସେ
ପଦ୍ମା-ପତିଙ୍କର ପଦ ଯେ, ସମ୍ଭବ ସମ୍ପଦ ପଦ ଅର୍ଥରେ ବ୍ୟର୍ଥ
ଖଣ୍ଡିବାର ଅପବାଦ ଯେ ।

ଅର୍ଥାତ୍ ଏହି ଗ୍ରନ୍ଥ "ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର" ଜଣେ ଶୂଦ୍ର ବ୍ୟକ୍ତିର ମୁଖରୁ ପ୍ରକାଶ ପାଇଛି ବୋଲି କେହି ଘୃଣାଭାବ ଧରି ବଡ଼ୁର କରନାହିଁ ବା କେହି ବିରୋଧ କରନାହିଁ ।

ଆମକୁ ପରମ ଆନନ୍ଦ ପ୍ରଦାନ କରୁଥିବା ଚନ୍ଦ୍ରମା ଚଣ୍ଡାଳ ରାହୁ ଦ୍ୱାରା କବଳିତ ହୋଇ ଉଚ୍ଛିଷ୍ଟ ହୋଇଥିଲେ ହେଁ, ତାହାକୁ ଦେବାଦେବ ମହାଦେବ ମସ୍ତକରେ ଧାରଣ କରି ଚନ୍ଦ୍ରଚୂଡ଼, ଚନ୍ଦ୍ରଶେଖର ନାମରେ ନାମିତ ହୋଇଛନ୍ତି । ସେହିପରି ପଦ୍ମାବତୀ ଯେ ଶ୍ରୀକୃଷ୍ଣ ବିଷ୍ଣୁ ସ୍ୱରୂପ ତାଙ୍କର ଚରିତ ଏ ଗ୍ରନ୍ଥରେ ବର୍ଣ୍ଣନା ହୋଇଥିବାରୁ ଏହା ସମସ୍ତଙ୍କର ଆଦରଣୀୟ ହୋଇପାରିବ ।

କବି ଯଦୁମଣି "ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର" ପ୍ରଥମକଳା, ମଙ୍ଗଳାଚରଣ ରୂପକୁଳା ରାଗରେ ବର୍ଣ୍ଣନା କରିଛନ୍ତି ବିଚିତ୍ର ମାର୍ଗରେ—

ମଧୁପୁର ପଦ ଅନନ୍ତ ଶେଯେ, ପଦ୍ମାକରର ମଣ୍ଡନତା ସର୍ବେ
ହଂସ ମତରେ ଜାଣି ଏହି ମୂଳ, ତାରକ ବଳେ ବଢ଼ିଥାନ୍ତି କୁଳ, ସେ
ମୀନ, ଧ୍ୱଜ, ଗୃପେ ଶୋଭା ଯେ
ବିଯୋଗୀ ଯେ, ଶୁକ ରାଜାର ତାରଣେ ପ୍ରକାଶିତ କରେ ପ୍ରଭା ଯେ । ୧ ।

(ମଧୁପୁର-ମଧୁନାମକ ରାକ୍ଷସର ପରମ ଶତ୍ରୁ ବିଷ୍ଣୁ, ପଦ-ପାଦ, ଅନନ୍ତ-ଶେଷନାଗ, ହଂସ-ପରମହଂସ ଯୋଗୀ ବିଷ୍ଣୁ, ମୂଳ-ଶ୍ରେଷ୍ଠ, କୁଳ-ବଂଶ, ମୀନ-ମତ୍ସ୍ୟ, ଧ୍ୱଜ-ପତାକା, ଗୃପ-ଧନୁ, ବିଯୋଗୀ-ସର୍ବତ୍ୟାଗୀ, ରାଜା-ପରିହିତ, ପ୍ରଭା-ମହତ୍ତ୍ୱ, ଜ୍ୟୋତି)

ଅର୍ଥାତ୍ ମଧୁ ଦୈତ୍ୟର ଶତ୍ରୁ ଯେ ବିଷ୍ଣୁ କ୍ଷୀର ସମୁଦ୍ର ଜଳରେ ଅନନ୍ତ ନାଗ ଶଯ୍ୟାରେ ଶୟନ ସମୟରେ ଲକ୍ଷ୍ମୀଙ୍କର ହସ୍ତଦ୍ୱାରା ତାଙ୍କର ପାଦ ଆବୃତ ହୋଇଥାଏ । ସେହି ପାଦକୁ ପ୍ରଧାନ ଯୋଗୀମାନେ ପରମହଂସ ମନେକରି ସର୍ବଦା ଧ୍ୟାନ କରି ସେହି ନାମ ସ୍ମରଣରେ ମଜ୍ଜି ରହିଥାନ୍ତି । କପଟି ଏ ଭବସଂସାରରୁ ମୋକ୍ଷ ହେବେ । ସେହି ପାଦପଦ୍ମରେ ମତ୍ସ୍ୟ, ପତାକା ଓ ଧନୁ ପ୍ରଭୃତି ଅଷ୍ଟାଦଶ ଚିହ୍ନଥାଏ । ସେହି ପାଦ ସ୍ମରଣ ସକାଶେ ଅନେକ ନିଜର ବଂଶ ତ୍ୟାଗ କରି ଅଛନ୍ତି । ସେହି ପାଦ ଯୋଗୀ ଶ୍ରେଷ୍ଠ ଶୁକଦେବ ପାଣ୍ଡବ ବଂଶୀୟ ରାଜା ପରୀକ୍ଷିତାଦିଙ୍କୁ ପରିତ୍ରାଣ କରିବା ନିମନ୍ତେ ନିଜର ଧ୍ୱଜକୁ ବିସ୍ତାର କରିଅଛି ।

ଅନ୍ଧାରି ଅଂଘ୍ରିକ ଅମ୍ବୁଜ କରି, ଛବି ବର୍ଣ୍ଣିବାର କବି ଚତୁର
ବିରଞ୍ଚି ଦର୍ପକାରି ସର୍ପଇନ, ଚତୁର ପଞ୍ଚ ସହସ୍ର ବଦନରେ
କାହା କର୍ଣ୍ଣିଗୁଣ ଗଲେ ଯେ,
ଅଷ୍ଟ ପନ୍ଦର ବିଂଶ ଶତ ନେତ୍ରକୁ ମୁଦନ୍ତି କାହାକୁ ଧ୍ୟାୟୀ ଯେ । ୨ ।

(ଅନ୍ଧାରି-ବିଷ୍ଣୁ [ଯେ ଅନ୍ଧ ନାମକ ଅସୁରକୁ ବିନାଶ କରିଥିଲେ], ଅଙ୍ଘ-ପାପ, ଅରି-ଶତ୍ରୁ, ଅଂଘ୍ରି-ପାଦ, ଅମ୍ବୁଜ-ପଦ୍ମ, ବିରଞ୍ଚି-ବ୍ରହ୍ମା, ଦର୍ପକାରି-ଶିବ, ସର୍ପଇନ-ସର୍ପଶ୍ରେଷ୍ଠ ବାସୁକୀ, ଚତୁର-ଚାରି ଓ ଚାଲାକ, ସହସ୍ର-ହଜାର ବଦନ-ମୁଖ, କର୍ଣ୍ଣି-ଯଶ, ଅଷ୍ଟ-ଆଠ, ବିଂଶ-କୋଡ଼ିଏ, ମୁଦନ୍ତି-ବୁଜନ୍ତି, ଛବି-ରଙ୍ଗ)

ଅର୍ଥାତ୍ ପାପ ଓ ଅନ୍ଧାସୁରର ଯେଶତ୍ରୁ ଅଟନ୍ତି, ସେହି ବିଷ୍ଣୁଙ୍କର ପାଦର ରଙ୍ଗକୁ ପଦ୍ମସଙ୍ଗେ ସମାନ କରିବା କବିର ଚତୁରତା ଅଟେ । ଯେହେତୁ ବ୍ରହ୍ମା, ଶିବ ଓ ଅନନ୍ତ ଏମାନେ ଯେହି ବିଷ୍ଣୁଙ୍କର ପାଦର ଦର୍ଶନ ପାଇବାକୁ ବ୍ରହ୍ମାଙ୍କ ଚାରିଗୋଟି, ଶିବଙ୍କ ପାଞ୍ଚଗୋଟି ଓ ଅନନ୍ତଙ୍କର ସହସ୍ର ମୁଖ ହୋଇଥିଲା । ସେହି ବିଷ୍ଣୁଙ୍କର ପାଦକୁ ଦେଖିବାକୁ ବ୍ରହ୍ମାଙ୍କ ଆଠଗୋଟି, ଶିବଙ୍କ ପନ୍ଦରଗୋଟି ଓ ଅନନ୍ତଙ୍କର ଦୁଇ ହଜାର ନେତ୍ରକୁ ବନ୍ଦକରି ପଦ୍ମକୁ ଧ୍ୟାନ କରନ୍ତି ବା ପାଦକୁ ଧ୍ୟାନ କରନ୍ତି । ଅର୍ଥାତ୍ ପଦ୍ମକୁ କେହି ଧ୍ୟାନ ନକରି ପାଦକୁ ଧ୍ୟାନ କରନ୍ତି ।

ବରଜ ବଧୂଙ୍କ ଉରଜ ବଧୂ, ରଜ ଚନ୍ଦନ ବନ୍ଦନେ କେ ସାଧୂ
ଧରା ଆକାଶର ରୁଚି ସଙ୍କୁଳେ, ଧରା ରହିଲେ କାହା ଗର୍ଭସ୍ଥଳେ
ସନକାଦି-ପୂଜ୍ୟ-ନଘ ଯେ
ଜନ କାର୍ଯ୍ୟରୁ କାହିଁରୁ ବଜେକଲେ କନକାଦ୍ରି ହୃଦ ଭେଦ ଯେ ।

(ବରଜ ବଧୂ-ଗୋପୀ, ବଧୂ-ଚନ୍ଦ୍ର, ରଜ-ଧୂଳି କର୍ପୂର, ଧରା-ପୃଥିବୀ, ରୁଚି ସଙ୍କୁଳେ-ଶୋଭା ସମୂହରେ, କନକାଦ୍ରି-ହିମାଳୟ, କନକ-ସ୍ୱର୍ଣ୍ଣ, ଅଦ୍ରୀ-ପର୍ବତ, ଗର୍ଭସ୍ଥଳ-ମଧ୍ୟସ୍ଥଳ)

ଅର୍ଥ ଃ ଗୋପୀମାନଙ୍କର ସ୍ତନର କର୍ପୂର ଗୁଣ୍ଡି ଓ ଚନ୍ଦନରେ କିଏ ପୂଜାପାଏ ? ପୃଥିବୀ ଓ ଆକାଶ ମଧ୍ୟରେ ଥିବା ସୌନ୍ଦର୍ଯ୍ୟ କାହା ମଧ୍ୟରେ ରହିଥିଲେ । ବିଷ୍ଣୁ ଦେବତାଙ୍କ ଅନୁରୋଧରେ ମହାଧାର୍ମିକ ଓ ସତ୍ୟବାଦୀ ରାକ୍ଷସ ରାଜାର ଗର୍ବ ଦଳନ ନିମନ୍ତେ ବାମନ ଅବତାର ହୋଇ ବଳୀଙ୍କୁ ତିନିପଦ ଭୂମି ଦାନ ମାଗିଥିଲେ । ବଳୀ ସତ୍ୟକରି ତିନିପାଦ ଭୂମି ଦାନ ଦେବାକୁ କହନ୍ତେ, ଗୋଟିଏ ପାଦରେ ପୃଥିବୀକୁ ଢ଼ାଙ୍କିଦେଲେ । ସେହି ସମୟରେ ଗଙ୍ଗାଦେବୀ ହିମାଳୟରୁ ଜନମାନଙ୍କର ହିତ ନିମନ୍ତେ ନିର୍ଗତ ହୋଇ ବାମନଙ୍କ ପାଦର ନଖକୋଣରେ ଲୀନ ହୋଇଥିଲେ । ସେହି ସୁବିଶାଳ ପାଦକୁ ସନକ ପ୍ରଭୃତି ସିଦ୍ଧମାନେ ପୂଜା କରିଥିଲେ । ଏଣୁ ସେ ପାଦ ସଙ୍ଗେ କୌଣସିମତେ ପଦ୍ମ ସମାନ ହୋଇନପାରେ ।

ସଦ୍ମ କରିବାରୁ ଅର୍ଦ୍ଧ ଚନ୍ଦ୍ରମା, ଛଦ୍ମ କରିଛନ୍ତି ପିଦ୍ମ ମହିମା
ଗରୁଡ଼ ମାଚାର୍ଯ୍ୟଙ୍କ ମାଧୂର୍ଯ୍ୟ, ରସ ତରଙ୍ଗରେ ତାହାଙ୍କ ତେଜ ସେ
ଭସାଇ ନେବାରୁ ଯେନ ଯେ
ଫନ୍ଦାକରି ଧରି ରହିଛନ୍ତି ଗିରି ଗୋବର୍ଦ୍ଧନ ବୃନ୍ଦାବନ ଯେ । ୪ ।

(ସଦ୍ମ-ଘର, ଅର୍ଦ୍ଧ ଚନ୍ଦ୍ରମା-ଅଧାଚନ୍ଦ୍ର, ଛଦ୍ମ-ଛଳନା, ଗରୁଡ଼ମାଚାର୍ଯ୍ୟ-ବୃନ୍ଦାବନର ସିଦ୍ଧ ଯୋଗୀ, ଫନ୍ଦା-ବ୍ୟବସାୟ, ମାଧୂର୍ଯ୍ୟ-ମନୋହର, ରସ ତରଙ୍ଗ-ଭକ୍ତି ରସର ଢେଉ, ଗିରି-ପାହାଡ଼)

ଅର୍ଥାତ୍ ସେ ପାଦରେ ଅର୍ଦ୍ଧ ଚନ୍ଦ୍ର ଚିହ୍ନ ଥିବାରୁ ତାହା ପଦ୍ମ ସଙ୍ଗେ ତୁଳନା ହେବନାହିଁ, କାରଣ ଚନ୍ଦ୍ର ଉଦୟ ହେଲେ ପଦ୍ମ ମୁଦିତ ହୁଏ । ଯେହେତୁ ପଦ୍ମର ରଙ୍ଗ ଓ ସୁବାସଠାରୁ ବଳି ସେ ପାଦର ରଙ୍ଗ ଓ ସୁବାସ ସହସ୍ର ଗୁଣରେ ଅଧିକ। ଗୋବର୍ଦ୍ଧନ ଗିରିରେ ସେହି ପାଦଚିହ୍ନ ଥିବାରୁ ସିଦ୍ଧମାନେ ସେଠାରେ ରହି ଭଗବାନଙ୍କୁ ଚିନ୍ତା କରିବାକୁ ରହିଥାନ୍ତି । ଏଣୁ ଏ ପାଦ ସଙ୍ଗରେ ପଦ୍ମ ଲକ୍ଷ୍ୟ ହୋଇପାରେ ନାହିଁ ।

ଏମନ୍ତ ଗୁରୁ ଗୀର୍ବାଣଙ୍କ ଗିରୁ, କୃଷ୍ଣ ବର୍ଣ୍ଣ ମୋର କର୍ଣ୍ଣେ ସଂଚରୁ
ସେ ତ ସୁଧାରସ ଆମୋଦ ଦାୟୀ, ହୃଦୟରେ ପରି ପୂରଣ ହୋଇ ହେ
ମୂର୍ଚ୍ଛି ହେଲି ଉଚ୍ଛଳିତ ଯେ
ଦ୍ୱିବିଧ ପୂର୍ଣ୍ଣଚନ୍ଦ୍ର ସିଦ୍ଧି ନିର୍ବନ୍ଧେ ପ୍ରବନ୍ଧ ହୋଇଲି ଖ୍ୟାତ ଯେ । ୬ ।

(ଗୁରୁ-ଶ୍ରେଷ୍ଠ, ଗୀର୍ବାଣ-ଦେବତା, ଗିର-ବାକ୍ୟ, ସଂଚରୁ-ପ୍ରବେଶକରୁ, ସୁଧା-ଅମୃତ, ଆମୋଦଦାୟୀ-ମନକୁ ପ୍ରଫୁଲ୍ଲିତକାରୀ, ଉଚ୍ଛଳିତ-ବାହାରିବା, ଦ୍ୱିବିଧ-ଦୁଇପ୍ରକାର, ପ୍ରବନ୍ଧ-ଛନ୍ଦ, ବିଷୟ)

ଅର୍ଥାତ୍ ମୋର ଶ୍ରେଷ୍ଠ ଗୁରୁଙ୍କ ଠାରୁ "କୃଷ୍ଣ" ବୋଲି ଏହି ଦୁଇଟି ବର୍ଣ୍ଣଯୁକ୍ତ ଶବ୍ଦ ମୋ କର୍ଣ୍ଣ ଶୁଣିଲା । ସେହି ଅମୃତମୟ ଓ ଆନନ୍ଦଦାୟକ ଶବ୍ଦ ବର୍ଣ୍ଣ ଦୁଇଟିରେ ମୋର ମନ ଓ ପେଟ ପୂର୍ଣ୍ଣ ହେବାରୁ ମୋର ସେହି ପୂର୍ଣ୍ଣଚନ୍ଦ୍ର ପରି ନିର୍ମଳ ରସ ବାହାରି ପଡ଼ିବାରୁ ଏ ଗ୍ରନ୍ଥ ଲେଖିବାକୁ ପ୍ରବଳ ଇଚ୍ଛାହେଲା ।

କବି ଯଦୁମଣି ଦ୍ୱାରକା ନାମକ ନଗର ବର୍ଣ୍ଣନା ପ୍ରସଙ୍ଗରେ ନିଜର କବିତ୍ୱ ଗୃଭୁଙ୍ଗ ପ୍ରଣିଧାନ ଯୋଗ୍ୟ—

ସୁମତି ଦେଇ ବିଷ୍ଟର ସୁମତି, ଅମ୍ବୁଧି ମଧ୍ୟବର୍ତ୍ତୀ ଦ୍ୱାରବତୀ
ପୁରର ଆଶ୍ଚର୍ଯ୍ୟ କଳ୍ପନା ଶିଳ୍ପ, ସଂକଳ୍ପ କରିଁ ଆରମ୍ଭ ପ୍ରଶଂସା କଳ୍ପ ଯେ
ବସିକରି କଳ୍ପ କଳ୍ପ ଯେ
ରମା କାମକଳ୍ପ ପାଦପଙ୍କ ତଳ୍ପ ପ୍ରଜଳ୍ପନେ ହେବ ଅଳ୍ପ ଯେ । ୮ ।

ଅର୍ଥାତ୍ ହେ ପଣ୍ଡିତମାନେ ଆପଣମାନଙ୍କର ସ୍ୱମତ ଯେ ଉତ୍ତମମତକୁ ଦେଇ ଏହା ବିଚାର କରନ୍ତୁ । ହେ ଲବଧଣ ଯେ ଦ୍ୱାରକା ନଗର ଅମ୍ବୁଧି ଯେ ସମୁଦ୍ର ମଧ୍ୟରେ ରହିଅଛି । ସେହି ନଗରୀ ଯେଉଁ ସୁନ୍ଦର ଶିଳ୍ପ ଗୃହଗୁଣରେ ନିର୍ମାଣ ହୋଇଛନ୍ତି ତାକୁ ଯେ ନିର୍ମାଣ କରିଛନ୍ତି ତାଙ୍କର ପ୍ରଶଂସା ଆପଣମାନେ କଳ୍ପନା କରନ୍ତୁ । ଯଦି ତମାଙ୍କର କାମନାର କଳ୍ପତରୁ ତଦ୍ରୂପ ଯେ ବିଷ୍ଣୁ ତାଙ୍କର ତଳ୍ପ ଅର୍ଥାତ୍ ଶଯ୍ୟା ତାହା ଅତ୍ୟନ୍ତ ସହସ୍ର ମୁଖରେ ବର୍ଣ୍ଣନା କରି ପାରିବେ ନାହିଁ । କାରଣ ତାହା ଯୁଗ ଯୁଗ ବିତିଗଲେ ମଧ୍ୟ ଖୁବ୍ ଅଳ୍ପ କହିପାରିବେ ।

ଶତଯେ ଟି କ ଶତକୋଟି ଗୁଣେ, ବଜ୍ର ବଳିଷ୍ଠ ହୋଇବା ପାଷାଣେ
ଘଟଣା ହୋଇଛି ଦୁର୍ଗ ପ୍ରାକାର, ରୁଚିତର ସୂଚି କମ ନିକର ଯେ
ତା କପାଟ ପାତ ସ୍ୱନ ଯେ
ବଳସୁଁ କେକିଳାସେ ମୟୂର ବିଳାସେ ଭଜନ୍ତି ଭପୁ ଝେନାମା ଯେ । ୯ ।

ଶତକୋଟି ଯେ ବଜ୍ରଠାରୁ ଶତଗୁଣରେ ବଳିଷ୍ଠ ଯେ କଠିନ ପଥର ଦ୍ୱାରା ସେ ଦ୍ୱାରକାର ଗଡ଼ ପାଚେରୀ ତିଆରି ହୋଇଛି । ଶିଳ୍ପୀମାନଙ୍କର ଅପୂର୍ବ କଳ୍ପନାରେ ସୂଚୀ କାମରେ ସେ ପଥର ସବୁ ଖୋଳା ହୋଇଥିବାରୁ ଶିଳ୍ପକଳା ବିକଶି ଉଠୁଛି । ସେହି ପାଚେରୀରେ ଯେଉଁ କବାଟ ଲାଗିଛି, ସେ ଯେତେବେଳେ ପଡ଼େ ତାର ମେଘଠାରୁ ବଳି ଶବ୍ଦରେ ମୟୂରମାନେ ମେଘ ମନେକରି ନୃତ୍ୟ କରନ୍ତି । ସେଥିପାଇଁ କାର୍ତ୍ତିକ ମଧ୍ୟ ଏ ଶବ୍ଦ ଶୁଣି ଚମକି ପଡ଼ନ୍ତି ।

×        ×        ×        ×

କବି ଯଦୁମଣି ବୃନ୍ଦାପୁ କଳ୍ପରେ ବନ ଗମନ ପ୍ରସଙ୍ଗରେ ସଖୀମାନେ ସୁନ୍ଦରୀ ରୁକ୍ମିଣୀଙ୍କ ଶୋଭା ବିଭବ ବର୍ଣ୍ଣନାରେ—୩ ପଦ ଠାରୁ ୫ ପଦଯାଏ

ମଥୁ ସଙ୍ଗୀ ରଞ୍ଜବଲ୍ଲ ଥିବ ଶୀବ ନେବ ମୁଁ ଏକାକୀ ଲଳନା
ନୁହଇ ଉଚିତ କହିଛ କୁହିତ କୁନ୍ତଳା କର ନା କଳନା
ମନ୍ଦ-ଅଧରେ, କହିଛ ନାହିଁ ସେ ସୋରିଷେ
ଯେବେ ବା ବଳିବ ତେବେ ପଳାଇବ ତବ ଲୋକନେ କାଶୋରୀ ସେ । ୩ ।

ଅର୍ଥାତ୍ ରେ ସୁଧେଶି ତୁ ଅବା ଭାବବୁ ମଧୁ ସଙ୍ଗୀ ଯେ ବସନ୍ତର ସାଙ୍ଗ କନ୍ଦର୍ପ ବନରେ ଥିବ ସେ ମୋ ପ୍ରାଣ ନେବ । ମୁଁ ଏକାକିନୀ ପୁଣି ସ୍ତ୍ରୀ ଅଟେ, ଏକଥା ଠିକ୍ ନୁହେଁ । ରେ କୁଞ୍ଚିତ କେଶା, ଏହା କଳନା କରନାହିଁ କି ମନକୁ ଆଣନାହିଁ । କାରଣ ମହ ଯେ ତେଜ ଅହ ଯେ ଦାଦଶରେ ସୋଡଶେ ଅର୍ଥାତ୍ ଡଳେଇଶୁଦ୍ଧା କନ୍ଦର୍ପ ତାହାର ପରାକ୍ରମ ଦେଖାଯାଏ ନାହିଁ । ଯେବେ ବା ସେ ଦେଖାଇବ କି ଉଚିତ ସ୍ୱଭାବ କରିବ, ତାହାହେଲେ ରେ କିଶୋରି ! ତୁମକୁ ଦେଖି ସେ ପଳାଇବ ।

ଅମ୍ଭୋଜ କଳି ଉରଜ ଶମ୍ଭୁଲିଙ୍ଗ ଭୟୁଭଜିବା ତା ମନକୁ
କୁସୁମ କଳ୍ପ ଆକଳ୍ପ ଦେଖିଥିବ ଛଡ଼ାଇଲା ପରି ଧନୁକୁ
ବଦେ ବୈଦ୍ୟଜା, ପଥ୍ୟ ପଥିକ ତା ବସନ୍ତେ
ଶ୍ରୁତିଗାଏ ଉକ୍ତି ତେଜ ସଦମାନ୍ତ ଜାଗ୍ରତ ସାଜିଲା ତୁଟିଲେ । ୪ ।

ଅର୍ଥାତ୍ ପଦ୍ମକଳିକା ପ୍ରାପ୍ତ ତୁମ୍ଭର ଯେ ଉରଜ ସେ ଶିବଲିଙ୍ଗ ପରି ତା ଦେଖି କନ୍ଦର୍ପ ଭୟରେ ପଳାଇବ । ପୁନଶ୍ଚ ପୁଷ୍ପମାଳ ତୁମ୍ଭଠାରେ ଥିବା ଆକଳ୍ପ ଯେ ବେଶକୁ ଦେଖି ତାଠାରୁ ଧନୁ ଛଡାଇ ଆଣିଲାପରି ଦେଖିବ । ତେଣୁ ସେ ଭୟ କରିବ । ସେ ସମୟରେ ବୈଦ୍ୟ କନ୍ୟା କହିଲା, ବସନ୍ତ କାଳରେ ଭ୍ରମଣ କରିବା ପଥ୍ୟ, ଏକଥା କର୍ଣ୍ଣରେ ଶୁଣି ସଦମାନ୍ତ ଜାଗ୍ରତା ହୋ ବୃଦ୍ଧାପରି ଗୃହଣୀ ଏହା ଠିକ୍ ବୋଲି ଗଣିଲା ।

ପଟଗୃହ ବର୍ଗ ଆଚରିଲେ ମାର୍ଗ ମାର୍ଜନା ସିଦ୍ଧି ବେଗକରି
ଶିଳ୍ପ କଳ୍ପନ ରେ କମଳ କୋମଳ ଦଳ ବଳ ବହଳ କଟପାରି
ତାହା ଉପରେ, କେତକୀ ଗର୍ଭସ୍ଥ ରଜକୁ
କୁସଙ୍ଗେ ସିଞ୍ଚି ଛଦ କରାଇଲେ ବଜେ ଅବଳା ସମାଜ ରଜକୁ । ୫ ।

ସଖୀମାନେ ଶୀଘ୍ର ବାଟ ଓଳାଇ ସେଥିରେ କୋମଳ ପଦ୍ମପାଖୁଡ଼ା ସବୁକୁ ସଜାଇ ଭଲଭାବେ ବିଛାଇ, ତା ଉପରେ କେତକୀ ଫୁଲର ରଜ ବହୁତ ପରିମାଣରେ ବୁଣିଲା ପରେ, ସ୍ତ୍ରୀମାନଙ୍କ ମଧ୍ୟରେ ଶ୍ରେଷ୍ଠ ଅଟନ୍ତି ଯେଉଁ ରୁକ୍ମଣୀ ତାଙ୍କ ତା ଉପରେ ଆଣି ବସାଇଲେ ।

ଚତୁର୍ଥ କଳାରେ ନାରଦ ବଟିନରେ ରୁକ୍ମଣୀଙ୍କୁ ଦେଖି ତାଙ୍କ କମନୀୟ ରୂପ ମାଧୁରୀ ଶ୍ରୀକୃଷ୍ଣଙ୍କ ଆଗରେ ବର୍ଣ୍ଣନା, କବିଙ୍କ ଭାଷାରେ —

ମର୍ତ୍ତ୍ୟଜାତ ସୁନ୍ଦରୀଙ୍କ ଦ୍ରଣିପତ୍ୟ ନିମିତ୍ତରେ ତାଙ୍କୁ ଜନମ
କରିଅଛନ୍ତି ଧରିଛନ୍ତି ନିଗମ
ସୁର ସୁନ୍ଦରୀଙ୍କୁ ଊଣା ହେଲ ତେବେ କେବେ ଲବେ ନ ମହିମ ହେ, ମାଧବ
ନାକପତି ମତ ମୋହୀ ମହିଳା
ଡ଼ାକ ଉତ୍ତିମରେ ଶଚୀ କୁଞ୍ଚଳା
ଦେଇଥିଲେ ସେ ଗଉତମ ଉତ୍ତମ ସୁଶୀଳା ହୁଅନ୍ତା ଶିଳା ହେ, ମାଧବ ।୧୬।

ନିଗମ ଅର୍ଥାତ୍ ବେଦ ଧାରଣ କରିଅଛନ୍ତି ଯେଉଁ ବ୍ରହ୍ମା ସେ ମର୍ତ୍ତ୍ୟ ସୁନ୍ଦରୀମାନେ ନମସ୍କାର କରିବାକୁ ଏ ସୁନ୍ଦରୀ ଶିରୋମଣି ରୁକ୍ମଣୀଙ୍କୁ ଗଢ଼ିଛନ୍ତି । ମର୍ତ୍ତ୍ୟପୁରରେ ଯେତେ ସୁନ୍ଦରୀ ନାୟିକା ଅଛନ୍ତି ରୁକ୍ମଣୀ ସେମାନଙ୍କ ମଧ୍ୟରେ ଶ୍ରେଷ୍ଠା ଅଟନ୍ତି । ଆପଣ କହି ପାରନ୍ତି ଦେବସ୍ତ୍ରୀ ଠାରୁ ଊଣା ହେବ କିନ୍ତୁ ଏହା ଅସମ୍ଭବ, କାରଣ ଦେବକନ୍ୟାମାନେ ମର୍ତ୍ତ୍ୟକନ୍ୟାଙ୍କ ପରି ସୁନ୍ଦରୀ ନୁହନ୍ତି । ସେମାନେ ଯଦି ସୁନ୍ଦରୀ ହୋଇଥାନ୍ତେ ତେବେ ଶଚୀ ଅତ୍ୟନ୍ତ ସୁନ୍ଦରୀ ବୋଲି ବିଖ୍ୟାତ ମାତ୍ର ନାକପତି ଯେ ଇନ୍ଦ୍ରଙ୍କ ମନ ତାଙ୍କଠାରେ ନଭୁଲି ମର୍ତ୍ତ୍ୟର କନ୍ୟା ଗୌତମ ସୁଶୀଳା ଯେ ଅହଲ୍ୟାଙ୍କ ଠାରେ ଭୁଲିବାରୁ ଅହଲ୍ୟା ସିନା ଶିଳା ଯେ ପଥର ହେଲେ, ଅର୍ଥାତ୍ ରୁକ୍ମଣୀ ଦେବକନ୍ୟା ଓ ମର୍ତ୍ତ୍ୟକନ୍ୟାଙ୍କ ମଧ୍ୟରେ ନିଶ୍ଚୟ ଶ୍ରେଷ୍ଠା ଅଟନ୍ତି ।

ହୃଦୟେ ଉଦୟ ହେଲ ଚିନ୍ତା ଏହା ନାୟକ ନା ଏକ ଜନକ
ଘଟନାତ କରିଥିବେ ଜନକ
ତାଙ୍କ ପ୍ରପଞ୍ଚ ପ୍ରପଞ୍ଚ ପାଞ୍ଚ ଗୁଞ୍ଜା କଷ୍ଟ କରନ୍ତି କନକ ହେ ମାଧବ
ପୂର୍ଣ୍ଣ ଚନ୍ଦ୍ରମା ପାଦଙ୍କ ପ୍ରଷ୍ଟିକ
ଅର୍ଦ୍ଧ ଅର୍ଦ୍ଧକରେ ଶ୍ରଦ୍ଧା ସର୍ଜକ
ସମ୍ପୂର୍ଣ୍ଣ ନନ୍ଦ ଭାଗ୍ୟ ହେଲେ ନୁହଇ କପାଳୀ କପାଳ ଠେକ ହେ ମାଧବ ।୧୭।

ନାରଦ କହୁଛନ୍ତି ଏହା ଦେଖି ମୁଁ ବିଚାର କରି ଜନକ ଯେ ମୋର ପିତା ବ୍ରହ୍ମା ଏହାର ନାୟକ ଯେ ସ୍ୱାମୀ ହେବାପାଇଁ ଗୋଟିଏ ନା ଯେ ପୁରୁଷ ପ୍ରପଞ୍ଚ ଯେ ସଂସାରରେ ଜନକ ଯେ ନିଶ୍ଚୟ ଜନ୍ମ ଦେଇଥିବେ । ଅର୍ଥାତ୍ ଏହାପରି ଏକ ସୁନ୍ଦର ପୁରୁଷ ନିଶ୍ଚୟ ଜନ୍ମ ହୋଇଥିବ ଏ ଜଗତରେ । ତାଙ୍କର ପ୍ରପଞ୍ଚ ଯେ ଖର୍ବପ ବିଚାର୍ ବିଶେଷ ହୁଏ କାଚେ ସୁନା ସହିତ ତୁଲ ହେବାପାଇଁ ଗୁଞ୍ଜା ଯେ କାଞ୍ଚନକୁ ସ୍ପର୍ଦ୍ଧା କରିଅଛନ୍ତି । ଏ କଥା ବଡ଼ ମନ୍ଦ ଅଟେ । ସେହିପରି ଗୋଟିଏ କୁତ୍ସିତ ପୁରୁଷ ଏହାଙ୍କ ପାଇଁ ଜନ୍ମ ହୋଇଅଛି କି ?

ପୁଣି ଶିବଙ୍କ କପାଳୀ ଯେ ମହାଦେବ ଏହାର ପତି ହୁଅନ୍ତେ ମାତ୍ର ସେ ପୂର୍ଣ୍ଣଚନ୍ଦ୍ର ଓ ପାର୍ବତୀ ଏ ଦୁହିଁଙ୍କୁ ଅର୍ଦ୍ଧ ଅର୍ଦ୍ଧ କରି ଭୋଗ କରୁଛନ୍ତି । ଏ ହେତୁ ସେ କାହାର ସମ୍ପୂର୍ଣ୍ଣ ଆନନ୍ଦଦାୟିନୀ ନୁହନ୍ତି ମୁଁ ଏହା ଭାବିବା କାଳରେ ।

ଅବର ହେତୁ ସ୍ଥବିର ଉଜ୍ଜ୍ୱଳକେତୁ ତ୍ରିବଳି ଗ୍ରୁଡ଼ଥିଲା ନେତ୍ର<br>
ଯୁଗେ ଯୋଗ ହୁଅନ୍ତେ ଅଙ୍ଗ ଗାତ୍ର<br>
ଶତ ପତ୍ର ପୁତ୍ର କଳ୍ପନା ପବିତ୍ର ପାଣି ଯୋଡ଼ୁ କରପତ୍ର ହେ, ମାଧବ<br>
ହସ୍ତୁଁ ମାଳା ଯନ୍ତ୍ର କଲୁଁ ଅନ୍ତର<br>
କୌସ୍ତୁଭକୁ ଦଳ ସ୍ନେହ ହରିର<br>
ଅ ଉଚାରି ସେ ପ୍ରସ୍ତୁତ କସ୍ତୁରୀ ସୌରଭକୁ ଦେଲୁଁ ବର ହେ, ମାଧବ ।୧୮।

ଅବର ପତ୍ରବାଁ ହେତୁ ସ୍ଥିର ହୋଇଥିଲା ଆଉ କେତୁ ଛବି ଯେ ପତାକା ଅର୍ଥାତ୍ ଚଞ୍ଚଳତାକୁ ଗ୍ରୁଡ଼ଥିଲା ଏପରି ଯେ ରୁକ୍ମିଣୀଙ୍କର ଚକ୍ଷୁ ତୃତିଆଡ଼କୁ ଚାହିଁବା ଯୋଗେ ଆମ୍ଭ ଦେହରେ ପଡ଼ନ୍ତେ ଅର୍ଥାତ୍ ସେ ଆମ୍ଭଙ୍କୁ ଦେଖନ୍ତେ ନମସ୍କାର କରିବାକୁ କରପଦ୍ମ ହସ୍ତ ଯୋଡ଼ିବା ଦେଖି ମୁଁ ଭାବିଲି ଚତୁରାନ ବ୍ରହ୍ମାଙ୍କର ପବିତ୍ର ପାଣି ଏ କି ? ବୀଣା ଓ ମାଳୀକୁ କାନ୍ଧରେ କଣ୍ଠରେ ରଖିଦେଇ ଏହିପରି କଲ୍ୟାଣ କଲି । "ହେ ସୁନ୍ଦରୀ ! ହରିଙ୍କର ତୁମଠାରେ କୌସ୍ତୁଭମଣିଠୁଁ ବଳିକରି ସ୍ନେହହେଉ ।" ଏହି ରେ କସ୍ତୁରୀଗନ୍ଧା ରୁକ୍ମିଣୀଙ୍କୁ ବର ଦେଲୁଁ ।

ମଞ୍ଜୁଳ ନୀଳ ନିଚୋଳ ଚୋଳ ମେଳ କୁଚ ନୀଳାଦ୍ରି ଶଙ୍ଖଗୋଳା
ଲପନତ ଶତଦଳ କମଳ
ରତ୍ନ ସିଂହାସନ ସଘନ ଅଧର ମଧୁର ବିଶ୍ରାମ ସ୍ଥଳ ହେ, ମାଧବଂ
ବିକ୍ରମରେ ଗଞ୍ଜିଲେ ନଗଦରେ
ବିକ୍ରମରେ ଢଞ୍ଜିଲେ ନଗଦରେ
ଅଶିବତ ତାଙ୍କୁ ହୃଦୟୁ ବାହୁକୁ ମାନିବାକୁ ଆଶ୍ଳେଷରେ ହେ, ମାଧବ ।୨୦।

ମଞ୍ଜୁଳ ଯେ ମନୋହର ନୀଳନିଚୋଳ ଯେ ନୀଳବସ୍ତ୍ର ଚୋଳ ଯେ କାଞ୍ଚୁଳିର ମେଳକସ୍ଥାନ କୁଚ ନୀଳାଦ୍ରୀ ଅର୍ଥାତ୍ ନୀଳପର୍ବତ ପରି, ତା ଉପରେ ଶଙ୍ଖଗୋଳ ଅର୍ଥାତ୍ ରୁକ୍ମିଣୀଙ୍କର କଣ୍ଠ ଶଙ୍ଖପରି, ଲପନ ଯେ ମୁଖ କମଳ ଅର୍ଥାତ୍ ପଦ୍ମପତ୍ର, ତା ଉପରେ ଅଧର ରତ୍ନସିଂହାସନ ସଦୃଶ୍ୟ ଘଟନ ଯେ ସୁନ୍ଦରତାର ଦିଶୁଅଛି । ତେଣୁ ପୁରୁଷୋତ୍ତମଙ୍କୁ ଶଙ୍ଖପୁର ବୋଲି କହନ୍ତି । ତା ଉପରେ ପଦ୍ମାସନ, ତା ଉପରେ ରତ୍ନସିଂହାସନ ଅଛି । ତହିଁରେ ବିଷ୍ଣୁ ବିଶ୍ରାମ କରିଛନ୍ତି । ରୁକ୍ମିଣୀଙ୍କ ଅଧର ରୂପକ ରତ୍ନସିଂହାସନ ଉପରେ ମଧୁରତା ବାସ କରିଅଛି ।

× × × ×

ଷଷ୍ଠ କଳାରେ ନାରଦ ରୁକ୍ମିଣୀଙ୍କ ଆଗରେ କୃଷ୍ଣଙ୍କ କଥା କହିବାରେ ରୁକ୍ମିଣୀ କୃଷ୍ଣଙ୍କଠାରେ ନିଜର ସବୁକିଛି ଅର୍ପଣ କରିଦେଇଛନ୍ତି । ସଖୀମାନଙ୍କ ଅନୁରୋଧରେ ରୁକ୍ମିଣୀ ଶ୍ରୀକୃଷ୍ଣଙ୍କ ନିକଟକୁ ପତ୍ର ଲେଖିଛନ୍ତି ଅତି ଚମତ୍କାର ଭଙ୍ଗୀରେ । କବି ଯଦୁମଣିଙ୍କ ଭାଷାରେ— ପଞ୍ଚମ ପଦଠାରୁ ।

ସତ କହିଲ ଭକ୍ତି ଦୁକୂଳ ଅଞ୍ଚଳେ ପୋଛି ଲୋତକ ସଙ୍ଗତେ ଶୋଚନା
ଲେଖନୀ ପତ୍ର ଧରି ଲେଖିଲେ ଏହିପରି ବିଚ୍ଛୁର କରି ସୁଲୋଚନା
ସେ ପତ୍ରିକାର
ଲୋକନ ମାତ୍ରେ ପୀତପଟ, ଉଛାଟେ ହୋଇବେ ଲମ୍ପଟ
ଝଗବନ୍ଧିତ ନନ୍ଦଘୋଷଙ୍କୁ ବେଗ ନନ୍ଦ ସ୍ୱପାଦେ କରିବେ ଧପଟ ସେ । ୫ ।

ସଖୀଙ୍କ ଅନୁରୋଧ ରକ୍ଷାକରି ରୁକ୍ମିଣୀ ଏକଥା ଭାବି ଦୁକୂଳାଞ୍ଚଳେ ଅର୍ଥାତ୍ ଲୁଗାକାନିରେ ଲୁହ ପୋଛି ଚିନ୍ତା ଦୂରକରି ଲେଖନୀ ପତ୍ର ଧରି ଏପରି ଲେଖିଲେ, ଯେଉଁ ଲେଖା ଦେଖିଲେ କି ଭଗବାନ ଯେ ଶ୍ରୀକୃଷ୍ଣ ଅଥୟ ହୋଇ ଲମ୍ଫ ଭାବ ଧରି ନନ୍ଦଘୋଷ ରଥର ସାହାଯ୍ୟ ନ ନେଇ ନିଜ ପାଦରେ ଦଉଡ଼ି ଆସିବେ ।

ନିଗମ ବନିତାର ଫୁଲଗୋ ଶିଖର ମଞ୍ଜୁ ବଞ୍ଜୁଳ କଳିଗୁଚ୍ଛ
ପଦାଙ୍ଗୁଳିରୁ ତାଳ ବ୍ରହ୍ମସଳିଳ ଶୂଳୀ ଗରଳଜ୍ୱାଳା କଳ ତୁଚ୍ଛ
ହେ, ଯଦୁବସ୍ତ !
ଧାତା ଚିନ୍ତାକୁ ହେଲ ମତ୍ସ୍ୟ, ସିନ୍ଧୁ ଫିନ୍ଧୁକ ହେଲ ପୁଚ୍ଛ
ଶୁନ ଆର୍ତ୍ତି କର୍ତ୍ତନ କର୍ତ୍ତରୀ କଳବନ ନର୍ତ୍ତନକାରୀ ହରି ଅଛ ହେ । ୭ ।

ନିଗମ ବନିତା ଅର୍ଥାତ୍ ଦେବସ୍ୱରୂପିଣୀ ନାୟିକାର ଫୁଲଗଭା ଉପରେ ମଞ୍ଜୁ ଯେ ମନୋହର ବଞ୍ଜୁଳ ଯେ ଅଶୋକ କଳିକାପରି ଅଟେ ଯେଉଁ ଆପଣଙ୍କର ପାଦ ଅଙ୍ଗୁଳି ତହିଁରୁ ବ୍ରହ୍ମସଳିଳ ଯେ ଗଙ୍ଗାକୁ ତାଳ ଶୂଳୀ ଯେ ମହାଦେବଙ୍କର ଗରଳଜ୍ୱାଳା ଯେ ବିଷଜ୍ୱାଳାକୁ ନାଶ କରିଅଛ । ହେ ଶ୍ରୀକୃଷ୍ଣ, ବ୍ରହ୍ମାଙ୍କ ଚିନ୍ତା ନିବାରଣାର୍ଥେ ମତ୍ସ୍ୟାବତାର ଧରି ସମୁଦ୍ର ମଧ୍ୟରୁ ବେଦକୁ ଉଦ୍ଧାରିଅଛ । ଶଙ୍ଖାସୁର ସମୁଦ୍ର ମଧ୍ୟରେ ଲୁଚିବାରୁ ସମୁଦ୍ରର ଜଳକୁ ପୁଚ୍ଛ ଅର୍ଥାତ୍ ଲାଞ୍ଜରେ ଧରି ଆପଣ ତାକୁ ବଧ କରିଅଛନ୍ତି । ଶୁନ ଯେ ଇନ୍ଦ୍ରଙ୍କ ଆର୍ତ୍ତି ଯେ ଦ୍ୟାକୁଳତାକୁ କର୍ତ୍ତନ ଯେ ଖଣ୍ଡନପାଇଁ ବନ ନର୍ତ୍ତନକାରୀ ହରି ଯେ ମାଙ୍କଡ଼ ଓ ଭାଲୁମାନଙ୍କୁ କର୍ତ୍ତରୀ ଯେ କଞ୍ଚୁଷୀ ପରି କରି ରାବଣକୁ ମାରିଥିଲ ।

ଏହାଙ୍କ ପଟେ ବାଣ ବନୋଦେ ବିଚକ୍ଷଣ ହେଲ ତନୁ ତନୁକ ଭାଇ
ଡୁବିଗଲ ପ୍ରଳୟ ବନ୍ଧିଲେ ମାର୍କଣ୍ଡେୟ ଉଦ୍ଧାରିଅଛ ନୁହଁ ଦୁଇ
ହେ, ବ୍ରଜସ୍ୱାମୀ !
ମାନେ ତୁମର ସୁଖଦ ସ୍ମୃତି, ଧର ଧାରଣେ କଲବାଇ
କୂର୍ମୀର ହିଂସାରମ୍ଭେ ତୁମ୍ଭ ପ୍ରଶଂସା ଧ୍ୱଂସା କାହିଁକି ଗଲେ ଦେଇ । ୭ ।

ହେ ବିଚକ୍ଷଣ ଯେ ଶ୍ରୀକୃଷ୍ଣ ଏମାନଙ୍କୁ ତୁମ୍ଭେ ପରିତ୍ରାଣ କରି ବିନୋଦେ ଅର୍ଥାତ୍ ଆନନ୍ଦିତ ହୋଇ ଯଶ ରଖିଛ ଏପରି ନୁହେଁ, କାରଣ ମହାଦେବ ତୁମର ଦେହ ଓ ବ୍ରହ୍ମା ତୁମର ପୁତ୍ର ଏବଂ ଇନ୍ଦ୍ର ତୁମର ଭାଇ ଅଟନ୍ତି ।

ଯଥା—ମମାତ୍ମୈବ ମହାଦେବ ବ୍ରହ୍ମ ମଦ୍ଗାତ୍ର-ସମ୍ଭବା
ସୁରେଶୋ ମମଭ୍ରାତା ଚ ବକ୍ଷ୍ୟାମି-ଶୃଣୁ ନାରଦ ।

ଏହି କାରଣରୁ ତୁମ୍ଭେ ଆପଣଙ୍କ ପୁଅ ଭାଇ ଏବଂ ଦେହକୁ ରଖିଲ, ଏଣୁ ଏହା ଯଶନୁହେଁ । ପୁନଶ୍ଚ ବୋଲିବ ଅବା ମାର୍କଣ୍ଡେୟଙ୍କୁ ରଖିଛ ଯେ ସେ ଆପଣା ମୁଖରେ କହିଛନ୍ତି—ପ୍ରଳୟୁ ପୁଞ୍ଜିଲେ ମାର୍କଣ୍ଡେୟୁ ବଞ୍ଚିଗଲେ । ବୋଲିବ ଅବା ଧରି ଯେ ଗୋବର୍ଦ୍ଧନ ପର୍ବତ ଧାରଣେ ଯେ ଧରି ଗୋପୀ-ମାନଙ୍କୁ ରକ୍ଷା କରିଅଛ । ସେ ମଧ୍ୟ ଯଶ ନୁହେଁ । କାରଣ ସେମାନେ ତୁମ୍ଭଙ୍କୁ ସୁଖ ଦାନ କରିଥିଲେ । କୁମ୍ଭୀର ହିଂସାରମ୍ଭେ ଯେ କୁମ୍ଭୀର ହସ୍ତୀକୁ ଗ୍ରାସ କରୁଥିଲା ତୁମ୍ଭେ ତାକୁ ରକ୍ଷାକରି ପ୍ରଶଂସା ପାଇଛ, ତାହା ମଧ୍ୟ ପ୍ରଶଂସା ଯେ ବୃଥା କାରଣ ।

ନାଗରବର ନାରୀଗଣ୍ଡ ବିହାର ବାରି ମଜ୍ଜା ମଜ୍ଜାଇବା ହୋଇଲେ
ମୂଳ କରିବା ଯେବେ କୁବଳୟତ ତେବେ ସେ ଭାଗ୍ୟ ଭୋଗ କରୁଥିଲେ
ହେ ଗେଲେ ଗେଲେ
ରଦନ ଉପାଡ଼ିଣ ଭଲେ, କଦନ ବିରଚନ୍ତେ ମଲେ
ଆପଣେତ ବିଦଗ୍ଧ ଏପରି ଏ ସନ୍ଦିଗ୍ଧ ତାଠାରେ ଲଗାଇବା ହେଲେ । ୮ ।

ଅର୍ଥାତ୍ ଆପଣ ତ ନାଗରଶ୍ରେଷ୍ଠ ଅଟନ୍ତି । ଏଣୁ ସ୍ତ୍ରୀମାନଙ୍କ ଠାରେ ବିଶେଷ ସ୍ନେହ ଥାଏ । ସ୍ତ୍ରୀମାନଙ୍କ ଗଣ୍ଡ ସହିତ ଗଜପଣ୍ଡର ସମତା ଥିବାରୁ ଗଜକୁ ରକ୍ଷାକଲ । ପୁନଶ୍ଚ ଏ କଥାକୁ ଯେବେ ମୂଳ ଯେ ନିଶ୍ଚୟ ବୋଲି ମନେକରୁଛ ତାହାହେଲେ କୁବଳୟା ନାମକ ହସ୍ତୀର ସେ (ଭାଗ୍ୟ ଭୋଗ କରୁଥିଲେ) ସ୍ତ୍ରୀ ଗଣ୍ଡ ସହିତ ସମ୍ପର୍କ ରଖିଥିଲା । ଆପଣ ତାହାର ରଦନ ଯେ ଦନ୍ତକୁ କୌତୁକରେ ଉପାଡ଼ି କଦନ ଯେ କଷ୍ଟ ହେବାରୁ ସେ ମଲା । ଆପଣତ ବିଦଗ୍ଧ ଯେ ଚତୁର ଅଟନ୍ତି ଏପରି ସନ୍ଦିଗ୍ଧ ଯେ ସନ୍ଦେହ କଥା କିପରି ରଖିବା ହେଲେ ।

ରଖ ରଖ ଶବଦ ଯୋଗେ ଶ୍ରୁତି ସ୍ତବ୍ଧ ବୃତ୍ତିଦ ହୋଇଲେ ଗଜେନ୍ଦ୍ର
ରଖ ରଖ ଉଚ୍ଚାର କେତେ କଲେ ଦେବାର କାର୍ମୁକ ମିଥିଳା ନରେନ୍ଦ୍ର
ହେ ଯାଦବେନ୍ଦ୍ର !
ତବ ସ୍ତବରେ ଶ୍ରୁତି ସାନ୍ଦ୍ର, ବିରଚି ଥିଲେତ ମୁନୀନ୍ଦ୍ର
ଭକ୍ତ ବାକ୍ୟାନୁରକ୍ତ ମହିମା କଲ ବ୍ୟକ୍ତ ଅପକ୍ଷ ଶରଣ ପ ଚନ୍ଦ୍ର ହେ । ୯ ।

ଆପଣ ବା କହିବେ ସେ ଗଜ କୁମ୍ଭୀର ଧରିବା ସମୟରେ ରଖ ରଖ ଏହି ଶବ୍ଦରେ ମୋର କର୍ଣ୍ଣ ସ୍ତବ୍ଧ ହେବାରୁ ମୁଁ ତାକୁ ରକ୍ଷାକଲି । ମାତ୍ର ଆପଣ ରାମାବତାରରେ କାର୍ମୁକ ଯେ ମିଥିଳା ରାଜ ଜନକଙ୍କ ଶିବ ଧନୁକୁ ଭାଙ୍ଗିଲେ ସେ ଧନୁ ରଖ ରଖ ବୋଲି ଡାକିଲା । ସେ କାଳରେ ତାକୁ ରକ୍ଷା କଲନାହିଁ । ଏଣୁ ମୁଁ ଏକଥା ଭାବୁଛି, ହେ ଯଦୁକୁଳ ଚୂଡ଼ାମଣି ! ଗଜ ଡାକିବା କାଳରେ ମୁନୀନ୍ଦ୍ର ଯେ ଜୟ ବିଜୟ ତୁମ୍ଭର ସ୍ତୁତି ଡ଼ିକରି ତୁମ୍ଭ କାନକୁ ସ୍ତବ୍ଧ କରି ଦେଇଥିଲେ । ତେଣୁ ଭକ୍ତ ବାକ୍ୟରେ ଆସକ୍ତ ହୋଇ ମହିମାକୁ ବ୍ୟକ୍ତ କରିଥିଲେ । ଆପଣ ନିରାଶ୍ରୟଙ୍କ ରକ୍ଷକମାନଙ୍କ ମଧ୍ୟରେ ଶ୍ରେଷ୍ଠ ଅଟନ୍ତି । ଏଣୁ ଏ ଯଶ ତୁମ୍ଭର ହୋଇ ନପାରେ । କାରଣ ଭକ୍ତର ଅଭିପ୍ରାୟ ଅନୁସାରେ କାର୍ଯ୍ୟକଲେ ।

ବିକ୍ରମ କରି ବ୍ୟୋମଚୁମ୍ବି ବା ପରାକ୍ରମ ତେଜୋମୟ ପଦର ଧୂଆ-
ଜନଜାଳ ମଞ୍ଜୁଳ ଯତି ବିପଞ୍ଚି ମାଳ କଷ କର୍ଣ୍ଣରେ ହେଲ ଥୁଆ
ସେ ଜୀବରୁଆ !
ଜଳାଞ୍ଜଳି ହେବାରୁ ଦୟା, ହେ ବ୍ରଜଦାବାନଳ ପିଆ
ଚେଦିବଦନ ଜ୍ୟେଷ୍ଠନନ୍ଦନ ହେବ ଜ୍ୟେଷ୍ଠ ବୋଲି ଦେଖାଉଛି ହୃଦୟ । ୧୦ ।

ବିକ୍ରମ ଯେ ସାହସରେ ବ୍ୟୋମ ଯେ ଆକାଶ ସ୍ପର୍ଶକୁ କରିବା ପରାକ୍ରମ ବିଶିଷ୍ଟ ଆପଣଙ୍କର ପାଦର ଧୂଆ ଜନମାନଙ୍କରୁ ମଞ୍ଜୁଳ ଯେ ସ୍ନିଗ୍ଧ ଅଟନ୍ତି । ଏପରିକି ହେ ଯତି ନାରଦ ତାଙ୍କର ବିପଞ୍ଚି ଯେ ବୀଣା ଓ ମାଳ କଷ କର୍ଣ୍ଣରେ

ଅର୍ଥାତ୍ ରୁଦ୍ରାକ୍ଷ ମାଳ ଯାହା କାଖ କାନରେ ଥୁଆ ହେଲେ ସେ ଜୀବ ବୃକ୍ଷ ରୁଆହେଲା । କଲ୍ୟାଣ ସକାଶେ ସେ କଳ୍ପତରୁ ସ୍ୱରୂପ ହେଲା । ଅର୍ଥାତ୍ ମୋର ଜୀବ ବୃକ୍ଷରେ ହେଲା ତହିଁରେ କଲ୍ୟାଣ ଜଳପରି ଦିଆହେଲା । ହେ ବ୍ରଜ ଦାବାନଳ ପିଆ ହେ ଶ୍ରୀକୃଷ୍ଣ ! ଚେଦି ରଜାର ଜ୍ୟେଷ୍ଠପୁତ୍ର ଶିଶୁପାଳ ଯେ ବୃକ୍ଷକୁ ନାଶ କରିବା ବିଷୟରେ ଜ୍ୟେଷ୍ଠମାସ ସଦୃଶ ହୋଇ ତାକୁ ପୋଡ଼ିବାକୁ ଆସିଛି ।

ଆହ୍ଲାଦ ତେଜରେ ଦୁଃଖ ଚନ୍ଦ୍ର ସୂର୍ଯ୍ୟରେ ଦେବାରେ ବହିଛନ୍ତି ରାଗ
ନବଘନ ମୂରତି ବର୍ତ୍ତିମାନରେ ଗତି ଲୀଳାରେ ତିଳାର୍ଦ୍ଧେ ଉଦ୍ବେଗ
ହେ, ଅଘନଗ !
ମଘବା ଅସ୍ତକରେ ଯୋଗ, ହେବ ସେ ନଦୀଘର ରୋଗ
ତୁମ୍ଭ ଚରଣ ଘନ କରୁଣ ନିକେତନ କଳଶ କେତନ ଶୁଭଗ ହେ । ୧୧ ।

ଆହ୍ଲାଦ ଏବଂ ତେଜ ଗୁଣରେ ଚନ୍ଦ୍ର ସୂର୍ଯ୍ୟ ଅନୁରାଗୀ ହୋଇ ସର୍ବଦା ଦୁଃଖ ଦେଉଛନ୍ତି । ନବଜଳଧର ମୂର୍ତ୍ତି ଗତି କରିବା ବିଷୟରେ ତିଳାର୍ଦ୍ଧେ ଯେ ଟିକିଏ ମାତ୍ର ଚଞ୍ଚଳ ହେଲେ ସେ ନଦୀଘରୂପ ରୋଗ ମଘବା ଯେ ଇନ୍ଦ୍ରଙ୍କ ଦ୍ୱାରା ନଷ୍ଟ କରିବାପରି ହେବ । ଅର୍ଥାତ୍ ଶିଶୁପାଳ ନଦୀଘ ହେଲା, ଆପଣ ଜଳଧାର ତୁଲ୍ୟ ହୋଇ ନଦୀଘ କାଳ ନାଶ କରିବେ । ଆପଣଙ୍କ ପାଦ ଦୁଃଖୀ ଲୋକମାନଙ୍କ ଠାରେ କରୁଣା ଗୃହର କଳସ୍ତମ୍ଭ ପତାକା ପରି ସୁନ୍ଦର ଅଟେ । ଅର୍ଥାତ୍ ଆପଣ କରୁଣାସାଗର ଅଟନ୍ତି ।

ବ୍ୟାଜ ନୁହେଁ ଏ ଟିରି ତ୍ୟାଗ କରି ନ ପାରି ପଯୂର ପୂରଣରେ ସ୍ୱଚ୍ଛ
ମଥା ପୋଡିଲେ ବ୍ୟଥା ଲଭିବଟି ସର୍ବଦା ମିଥ୍ୟା ଏ ନୁହନ୍ତି ଶ୍ରୀବତ୍ସ
ହେ କେକୀପୁଚ୍ଛ !
ମୁକୁଟ ନ ବହିବ ମିଛ, ସଙ୍କଟକୁ ମୋ ନାହିଁ କଚ୍ଛ
ତୁମ୍ଭଙ୍କୁ ଦେଲା ବର ବହିବା ପାଇଁ ଦ୍ୱିଜ ବହିଁ ହୋଇଥିଲ କଚ୍ଛ ହେ ।୧୨।

ଏକଥା ବ୍ୟାଜ ଯେ ମିଥ୍ୟା ନୁହେଁ । ପୁରାଣମାନଙ୍କରେ ସ୍ୱଚ୍ଛ ଯେ ନିର୍ମଳ ଭାବରେ ଉଲ୍ଲେଖ ହୋଇଅଛି ଯେ ପଦ୍ମର ଅର୍ଥାତ୍ ପାଦଚିହ୍ନ ତାହାକୁ ଭକ୍ତ-ସ୍ନେହବଶରୁ ଛାଡ଼ି ପାରନାହିଁ । ଯଦି ମୋ ଦୁଃଖ ଶୁଣିକରି ନ ଆସିବ ତାହାହେଲେ ଯେତେବେଳେ ମୁହଁ ତଳକୁ ପୋଡିବ ସେତେବେଳେ ସେ ଶ୍ରୀବତ୍ସ ଚିହ୍ନକୁ ଦେଖି ବ୍ୟଥା ଯେ କଷ୍ଟ ପାଇବ, କାରଣ ଭକ୍ତ ବତ୍ସଳ ହୋଇ ପାରିବ ନାହିଁ । ହେ ଶ୍ରୀକୃଷ୍ଣ ! ଏକଥା କଦାପି ମିଛ ହେବନାହିଁ । କେ କେକାପୁଚ୍ଛ ମୁକୁଟ ! ମୋ ଆପଦକୁ କଛି ଯେ ଉପମା ନାହିଁ । ଆପଣ କଳ୍ପପାଦପତାରେ ପୃଥିବୀର ଭାର ବହନ କରିଥିଲେ । ତେଣୁ ଏ ଦୁଃଖଭାର ଆପଣଙ୍କୁ ଅର୍ପଣ କଲି ।



# ଆଠଗଡ଼ (ଅଷ୍ଟଦୁର୍ଗ) ର ଇତିହାସ

ସଂଗ୍ରାହକ-ବୃନ୍ଦାବନ ନାୟକ
ଅବସରପ୍ରାପ୍ତ ଶିକ୍ଷକ

## ତପସ୍ୱୀ ବଂଶର ଉତ୍ପତ୍ତି —

ଉତ୍କଳର ଗଜପତି ମହାରାଜ କେଶରୀଙ୍କ ରାଜତ୍ୱ କାଳରେ ତାହାଙ୍କର ବଂଶଧର ଓ ରାଜଜ୍ଞାତିବର୍ଗ ଗଞ୍ଜାମ ଅଭିମୁଖେ ପରିଭ୍ରମଣ କରିବାକୁ ଆସି ଗଞ୍ଜାମ ଅଞ୍ଚଳରେ କିଛିଦିନ କଟାଇଥିଲେ । ସେମାନେ ଜଉଗଡ଼ ନିକଟରେ ବସତି ସ୍ଥାପନ କରି ଜତୁଗୃହ ନିର୍ମାଣ କରିଥିଲେ । ସେହିଦିନ ଠାରୁ ତାହା ଜଉଗଡ଼ ନାମରେ ନାମିତ ହୋଇଥିଲା । ସେତେବେଳେ ପଦ୍ମକେଶରୀ ନାମକ ରାଜା ଜଉଗଡର ଶାସକ ରୂପେ ରାଜତ୍ୱ କରୁଥିଲେ । ସେହି ସମୟରେ ବଘେଲ ବଂଶୀୟ ଶଙ୍କର ଦେବ ନାମକ ବୀର ଓ ଶକ୍ତିଶାଳୀ ରାଜା ରୀମା ନଗର ରାଜଧାନୀରେ ରାଜତ୍ୱ କରୁଥିଲେ । ଶଙ୍କର ଦେବ ଜଣେ ଧର୍ମପରାୟଣ ଓ ପ୍ରଜାବତ୍ସଳ ରାଜାରୂପେ ସୁପରିଚିତ ହୋଇଥିଲେ । ପୁରୁଷୋତ୍ତମ ଶ୍ରୀକ୍ଷେତ୍ରକୁ ଯାଇ ଜଗନ୍ନାଥ ଠାକୁର ଶ୍ରୀ ଜଗନ୍ନାଥଙ୍କ ଦର୍ଶନ ଓ ଗଜପତିଙ୍କ ସହିତ ସାକ୍ଷାତ କରିବା ତାଙ୍କର ଅଭିଳାଷ ଥିଲା । ସଙ୍ଗରେ ରାଣୀ ପାଟମହାଦେଇ ଓ ରାଜପରିଷଦର କେତେକ କର୍ମଚାରୀଙ୍କ ସହ ଶ୍ରୀକ୍ଷେତ୍ରକୁ ଯାତ୍ରା କରିଥିଲେ । ଶ୍ରୀକ୍ଷେତ୍ରରେ ପହଞ୍ଚି ହିନ୍ଦୁର ଇଷ୍ଟ ଦେବତା ଶ୍ରୀ ଜଗନ୍ନାଥ ଠାକୁର ଦର୍ଶନ ସାଥେ ସାଥେ ଅନ୍ୟାନ୍ୟ ଦେବା ଦେବୀଙ୍କ ଦର୍ଶନ କରି ନିଜର ଦୀର୍ଘ ଦିନର ଅଭିଳାଷକୁ ଚରିତାର୍ଥ କରିଥିଲେ । ସେହି ସମୟରେ ଉତ୍କଳର ଗଜପତି ଥିଲେ କପିଳେନ୍ଦ୍ର ଦେବ । ଶଙ୍କର ଦେବ ଶ୍ରୀ ଜଗନ୍ନାଥଙ୍କ ପ୍ରଥମ ସେବକ ତଥା ଉତ୍କଳର ଚଳନ୍ତି ବିଷ୍ଣୁ ଗଜପତି କପିଳେନ୍ଦ୍ର ଦେବଙ୍କୁ ଦର୍ଶନ କରିବା ଉଦ୍ଦେଶ୍ୟରେ ରାଜ ଦରବାରରେ ଉପସ୍ଥିତ ହେବା ଅବସରରେ ଜଉଗଡ଼ ରାଜା ପଦ୍ମକେଶରୀ ଦେବ ରାଜ ଦରବାରରେ ପହଞ୍ଚିଲେ । ଶଙ୍କର ଦେବଙ୍କ ବେଶଭୂଷା ରୂପ, ଗୁଣ ପଦ୍ମକେଶରୀ ଦେବଙ୍କ ସହିତ ସାମଞ୍ଜସ୍ୟ ଲକ୍ଷ୍ୟକରି ପଦ୍ମକେଶରୀ ଦେବ ଓ ଶଙ୍କର ଦେବଙ୍କ ସହିତ ମିତ୍ରତା ସ୍ଥାପନ କରିଥିଲେ ।

୨ ।

ପଦ୍ମକେଶରୀ ଓ ଶଙ୍କର ଦେବ ମଇତ୍ର ହେବାପରେ କିଛିଦିନ ଶ୍ରୀକ୍ଷେତ୍ରରେ ରହିଥିଲେ । ପଦ୍ମକେଶରୀଙ୍କ ଅନୁରୋଧ ରକ୍ଷାକରି ଶଙ୍କର ଦେବ ମଇତ୍ରଙ୍କ ରାଜ୍ୟ ଜଉଗଡ଼ ଅଭିମୁଖେ ଯାତ୍ରା କରିଥିଲେ । ମଇତ୍ରଙ୍କ ସ୍ନେହ, ଶ୍ରଦ୍ଧା ଓ ଆଗ୍ରହରେ ମୁଗ୍ଧ ହୋଇ ଶଙ୍କର ଦେବ ଦୀର୍ଘଦିନ ଧରି ଜଉଗଡ଼ରେ ରହିଥିଲେ । ଏଣେ ଶଙ୍କର ଦେବଙ୍କ ଦୁଇଟି ପୁତ୍ର ସୂର୍ଯ୍ୟମଣି ଓ ଚନ୍ଦ୍ରମଣି ରାମା ରାଜଧାନୀରେ ରହିଥିଲେ । ସେତେବେଳେ ଗମନାଗମନର ବିଶେଷ ସୁବିଧା ନଥାଏ । ଦୂରତ୍ୱ ଯୋଗୁଁ ଶଙ୍କର ରାଜା ପୁତ୍ରମାନଙ୍କ ପାଖକୁ ଖବର ପଠାଇ ପାରି ନଥିଲେ । କିଛିଦିନ ଜଉଗଡ଼ରେ ରହିବା ପରେ ଶଙ୍କର ଦେବ ନିଜ ରାଜ୍ୟକୁ ଫେରିଯିବା ପାଇଁ ମନ ବଳାଇଥିଲେ । ଦୁଇ ମଇତ୍ରଙ୍କ ମଧ୍ୟରେ ଏପରି ସମ୍ପର୍କ ସ୍ଥାପିତ ହୋଇଥିଲା ଯେ କେହି କାହାରିକୁ ଛାଡ଼ି କ୍ଷଣେମାତ୍ର ରହିପାରୁ ନଥିଲେ । ଶେଷରେ ପଦ୍ମକେଶରୀ ନିଜ ରାଜ୍ୟର ଉତ୍ତର ଦିଗରେ ଥିବା କେତେକ ଜମିଦାରଂକ ଠାରୁ ରାଜ୍ୟ ଜୟକରି ଶଂକର ଦେବଙ୍କୁ ସେହି ରାଜ୍ୟର ରାଜା ରୂପେ ଅବସ୍ଥାପିତ କରାଇଥିଲେ । ଶଂକର ଦେବ ନିଜ ରାଜ୍ୟ ଅନ୍ତର୍ଗତ ଜଙ୍ଗଲକୁ କାଟାଇ ଶସ୍ୟକ୍ଷେତ୍ର ଉପଯୋଗୀ ଜମି ଓ ନୂତନ ନୂତନ ଗ୍ରାମ ପ୍ରତିଷ୍ଠା କରି ସୁଖରେ ପ୍ରଜାଂକର ପ୍ରିୟପାତ୍ର ହୋଇ ଦୀର୍ଘ ଦୁଇବର୍ଷ ରାଜତ୍ୱ କରିଥିଲେ । ଏପରି ସମୟରେ ଭରତ ଦେଶର ମ୍ଲେଚ୍ଛ ନାମକ ରାଜା ସୈନ୍ୟସାମନ୍ତଂକ ସହ ଆସି ପ୍ରଥମେ ପଦ୍ମକେଶରୀ ଓ ପରେ ଶଂକର ଦେବଙ୍କୁ ଯୁଦ୍ଧରେ ପରାସ୍ତକରି ସେମାନଂକର ସମସ୍ତ ଧନସମ୍ପଦ ଅପହୃତ କରି ନେଇଥିଲେ । ପଦ୍ମକେଶରୀ ଓ ଶଂକର ଦେବ ଭୟଭୀତ ହୋଇ ରାଜ୍ୟଛାଡ଼ି ଜଙ୍ଗଲ ମଧ୍ୟରେ ଆତ୍ମ ଗୋପନ କରି ରହିଥିଲେ ।

ଶଙ୍କର ଦେବ ନିଃସହାୟ ଅବସ୍ଥାରେ ରାଣୀଙ୍କ ସହିତ ଜଙ୍ଗଲ ମଧ୍ୟରେ ଦୁଃଖକଷ୍ଟ ସହ୍ୟକରି ଅରଣ୍ୟରେ ରହିଥିଲେ । ଅରଣ୍ୟରେ ଯାଉ ଯାଉ କିଛିଦିନ ପରେ ନିଜ ରାଜ୍ୟର ଉତ୍ତର ଅଞ୍ଚଳ ଅନ୍ତର୍ଗତ ପେଜଗଳା ପାହାଡ଼ ନିକଟରେ ପହଞ୍ଚିଥିଲେ । ପେଜଗଳା ପାହାଡ଼ ଦେହରେ ଥିବା ଗୁମ୍ଫାମାନଙ୍କରେ ଆଗରୁ ମୁନିଋଷିମାନଙ୍କ ତପସ୍ୟାର ସ୍ଥଳରୂପେ ସୁବିଦିତ ଥିଲା । ଶଙ୍କର ଦେବ ଅନ୍ୟ କୌଣସି ଉପାୟ ନ ପାଇ ଶେଷରେ ସେହି

ପେଜଗଲା ପାହାଡ଼ସ୍ଥ ଗୁମ୍ଫା ନିକଟରେ ପହଞ୍ଚିଲେ । ରହିବାର ସୁବିଧା ଦେଖି ସେହି ଗୁମ୍ଫା ମଧ୍ୟରେ କିଛିଦିନ ରହିଥିଲେ । ଶେଷରେ ପେଜଗଲା ଗିରିଗୁହା ନିକଟରେ ଗୋଟିଏ କୁଟୀର ନିର୍ମାଣ କରି ରାଣୀଙ୍କ ସହ ବାସ କରି ରହିଥିଲେ ।

ପେଜଗଲା ପାହାଡ଼ ଏକ ଇତିହାସ ପ୍ରସିଦ୍ଧ ସ୍ଥାନଥିଲା । ସେଠାକାର ଗୁମ୍ଫାମାନଙ୍କରେ ମୁନିଋଷିମାନେ ବାସ କରୁଥିଲେ । କାରଣ ଏହାର ପଶ୍ଚିମ ପାର୍ଶ୍ୱ ବର୍ତ୍ତମାନ ସୁଦ୍ଧା ଅତ୍ୟନ୍ତ ମନୋରମ ଦେଖା ଯାଉଛି । ପର୍ବତ ମଧ୍ୟରୁ ତିନିଗୋଟି ପେଜଧାର ବହିଆସି ଭୂମିରେ ମିଶିବା ପରି ଦେଖା ଯାଉଛି । ନିକଟକୁ ଯାଇ ସେହି ପେଜଧାର ପରି ଥିବା ଚିହ୍ନ ଉପରେ ହାତ ଲଗିଲେ ତାହା ହାତକୁ କୋମଳ ଲାଗୁଛି । ଦୂରରୁ ଦେଖିଲେ ତିନିଧାର ଗଳାପେଜ ବହି ଆସିଲା ପରି ଦେଖାଯାଉଛି । ଅପରାହ୍ଣରେ ସୂର୍ଯ୍ୟକିରଣ ପଡ଼ିଲେ ଏହି ପେଜଧାର ଗୁଡ଼ିକ ସ୍ଫଟିକ ସୌନ୍ଦର୍ଯ୍ୟର ଶୋଭା ପ୍ରକାଶି କରୁଅଛି । ଏହାର ସମୀପରେ ବିରାଟ ପ୍ରସ୍ତର ପ୍ରାଙ୍ଗଣ ପରି ରହିଅଛି । ବର୍ତ୍ତମାନ ସେହି ସ୍ଥାନଟି ଦର୍ଶକମାନଙ୍କୁ ଆକର୍ଷଣ କରିଥାଏ । ତେଣୁ ପ୍ରତିଦିନ ଶହଶହ ଦର୍ଶକ ସେଠାକୁ ଯାଇ ସେଠାକାର ପ୍ରାକୃତିକ ଶୋଭା ଉପଭୋଗ କରନ୍ତି ।

ଶଙ୍କର ଦେବ ପେଜଗଲା ପାହାଡ଼ ନିକଟରେ ପହଞ୍ଚିଲା ସମୟରେ ସେଠାରେ ପଣ୍ଡୁ ନାମକ ଜଣେ ତପସ୍ୱୀ ତପସ୍ୟାରତ ଥିଲେ । ତପସ୍ୱୀଙ୍କ ଶରୀର ପଣ୍ଡୁର ବର୍ଣ୍ଣ ଦେଖା ଯାଉଥିବାରୁ ତାଙ୍କୁ ପଣ୍ଡୁ ତପସ୍ୱୀ କୁହା ଯାଉଥିଲା । ଶଙ୍କର ଦେବ ପଣ୍ଡୁ ତପସ୍ୱୀଙ୍କ ନିକଟରେ ପହଞ୍ଚି ନିଜର ସମସ୍ତ ପ୍ରକାର ଦୁର୍ଘଟଣା ବର୍ଣ୍ଣନା କରିଥିଲେ । ଶେଷରେ ପଣ୍ଡୁ ତପସ୍ୱୀଙ୍କ ଆଦେଶ କ୍ରମେ ସେଠାରେ ରହି ତପସ୍ୱୀଙ୍କ ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ପଣ୍ଡୁ ତପସ୍ୱୀ ଶଙ୍କର ଦେବଙ୍କୁ କହିଥିଲେ ଯେ ବିନା ସାଧନାରେ କୌଣସି କାର୍ଯ୍ୟ ସିଦ୍ଧ ହୋଇ ପାରିବ ନାହିଁ । ଏଣୁ ତାଙ୍କୁ ପ୍ରଥମେ ତପସ୍ୟା କରିବା ପାଇଁ ଉପଦେଶ ପ୍ରଦାନ କରିଥିଲେ ।

"ତପସ୍ୟା ବିନା କେହି ଲଭ ନାହିଁ ଧନ
ତପସ୍ୟା ବିନା କେହି ଲଭିଛି ସୁସନ୍ତାନ ।
ତପସ୍ୟା ବିନା କେହି ହୋଇଛି ବିଦ୍ୟାବନ୍ତ
ତପସ୍ୟା ବିନା କେହି ହୋଇଛି ନରନାଥ ।
ତପସ୍ୟା ବିନା କେହି ହୋଇଛି ଜନପ୍ରିୟ
ତପସ୍ୟା ବିନା କାହିଁ ଶ୍ରେଷ୍ଠ କୁଳ ଶ୍ରିୟ ।
ତପସ୍ୟା ବଳୁ ଜନେ ମୋହନ କାନ୍ତି ଶୋଭ
ତପସ୍ୟା ବଳୁ ବିପ୍ର ଗୋ ମାତୃ ପିତୃ ସେବା ।
ତପସ୍ୟା ବଳୁ ହୁଏ ଏକାଗ୍ରତା ଜାତ
ତପସ୍ୟା ବଳୁ ହୃଦ ନିର୍ମଳ ପବିତ୍ର ।
ତପସ୍ୟା ବଳୁ ଦେବେ ହୁଅନ୍ତି ଅନୁକୂଳ
ତପସ୍ୟା କରି ବାବୁ ନୁହନ୍ତୁ ବ୍ୟାକୁଳ ।
ତପସ୍ୟା ବିନା କେହି ଲଭିନାହିଁ ମାନ
ତପସ୍ୟା ହୃଦରୁ ଦୁଃଖ କରଇ ଖଣ୍ଡନ ।"

ଶଙ୍କର ଦେବ ଗୁରୁ ପଣ୍ଡୁ ତପସ୍ୱୀଙ୍କ ମୁଖରୁ ଏପରି ଶ୍ରବଣ କରି ତାଙ୍କର ଚରଣ ସେବାରେ ବ୍ରହ୍ମଚରିହ ସେଶ୍ୱଦନ ଠାରୁ ତପସ୍ୟା ରତ ହୋଇଥିଲେ । ସେକଗଲାସ୍ଥ ତ ଗୁମ୍ଫା ମଧ୍ୟରେ ପଦ୍ମାସନରେ ବସି ନାସାଗ୍ରକୁ ଦୃଷ୍ଟି ରଖି ଫଳାହାର ପୂର୍ବକ ଶ୍ରୀ ଶ୍ରୀ ସଦାଶିବଙ୍କ ଚରଣରେ ଲକ୍ଷ୍ୟ ରଖି ଧ୍ୟାନମଗ୍ନ ହୋଇଥିଲେ । ଶଙ୍କର ଦେବଙ୍କ ଭକ୍ତିପୂର୍ଣ୍ଣ ଅଶ୍ରୁଳ ନୟନ ତପସ୍ୟାରେ ପ୍ରୀତ ହୋଇ ସ୍ୱୟଂ ଦେବ ଦେବ ମହାଦେବ ଯତି ବେଶରେ ପ୍ରବେଶ କରି ଶଙ୍କର ରାଜାଙ୍କୁ ଦର୍ଶନ ଦେଲେ । ଅଭୟ ବରଦାତା ମହାଦେବଙ୍କ ଯତି ବେଶ ଦର୍ଶନ କରି ଶଙ୍କର ରାଜା ନିଜକୁ ଭାଗ୍ୟବାନ ମନେକରି ଯେ ଉଦହସ୍ତ ହୋଇ ଯତିଙ୍କ ପାଦତଳେ ପଡ଼ିଗଲେ । ସଦାଶିବ ଶଙ୍କର ଦେବଙ୍କ ପ୍ରାଣଭରା ଭକ୍ତିରେ ମୁଗ୍ଧ ହୋଇ ତାଙ୍କର ମନସ୍କାମନା ପୂର୍ଣ୍ଣ କରିଥିଲେ । ସଦାଶିବଙ୍କ ସ୍ୱପ୍ନାଦେଶ କ୍ରମେ ଶଙ୍କର ଦେବ ତାଙ୍କର ଦୁଇ ପୁତ୍ରଙ୍କୁ ପଞ୍ଚମୁଖ ବ୍ୟାଘ୍ର ପୃଷ୍ଠରୁ ପାଇ ପରମ ପ୍ରୀତ ହୋଇଥିଲେ । ପରେ ପରେ ହରାଇଥିବା ରାଜ୍ୟକୁ ମଧ୍ୟ ଲଭିଲେ ।

# ପ୍ରଥମ ରାଜା ଶଙ୍କର ତପସ୍ୱୀ (୯୮୯-୧୦୦୨)

ଶଙ୍କର ଦେବ ୯୭୪ ଖ୍ରୀଷ୍ଟାବ୍ଦରେ ପ୍ରଥମେ ରାଜା ହୋଇଥିଲେ । ପାଞ୍ଚବର୍ଷ ରାଜତ୍ୱ କରିବା ପରେ ୯୮୪ ଖ୍ରୀଷ୍ଟାବ୍ଦରେ ମ୍ଳେଚ୍ଛ ରାଜାଙ୍କ ଦ୍ୱାରା ପରାସ୍ତ ହୋଇ ସେଜଙ୍ଗଲା ପର୍ବତ ଗୁମ୍ଫାରେ ଚଣ୍ଡୁ ତପସ୍ୱୀଙ୍କ ଶିଷ୍ୟତ୍ୱ ଗ୍ରହଣ କରି ତପସ୍ୟା ରତ ହେଲେ । ସେଠାରେ ସେ ପାଞ୍ଚବର୍ଷ ନିଷ୍ଠୁ ଉହନ ତପସ୍ୟା କରି ତାଙ୍କର ଅଭିଳାଷକୁ ଚରିତାର୍ଥ କରିଥିଲେ । ନିଜର ଦୁଇପୁତ୍ର ଓ ହରାଇଥିବା ରାଜ୍ୟ ୯୮୯ ଖ୍ରୀଷ୍ଟାବ୍ଦରେ ଫେରି ପାଇଥିଲେ । ଈଶ୍ୱରଙ୍କ ଦତ୍ତପୁତ୍ର ଯୋଗୁଁ ଈଶ୍ୱରଙ୍କ ପରି ସୁନ୍ଦର ଦେଖା ଯାଉଥିଲେ । ଶଙ୍କର ଦେବ ସେହି ଦୁଇ ପୁତ୍ରଙ୍କୁ ଚଣ୍ଡୁ ତପସ୍ୱୀଙ୍କର ପାଦସେବା କରାଇ ଜ୍ଞାନ ଲାଭ କରିଥିଲେ । ଦୁଇ ପୁତ୍ରଙ୍କ ବ୍ୟାଘ୍ର ପୃଷ୍ଠରେ ଅଣାଯାଇ ଥିବାରୁ ତପସ୍ୱୀ ଚଣ୍ଡୁ ଜ୍ୟେଷ୍ଠ ପୁତ୍ରର ନାମ ବ୍ୟାଘ୍ର ତପସ୍ୱୀ ଓ କନିଷ୍ଠ ପୁତ୍ରର ନାମ ହଂସ ତପସ୍ୱୀ ରୂପେ ନାମକରଣ କରିଥିଲେ । ଶଙ୍କର ଦେବ ଦୁଇ ପୁତ୍ରଙ୍କୁ ଗୁରୁ ଚଣ୍ଡୁ ତପସ୍ୱୀଙ୍କ ନିକଟରେ ବିଦ୍ୟାଧ୍ୟୟନ ଓ ଅନ୍ୟାନ୍ୟ ଶିକ୍ଷା ପାଇଁ ସମର୍ପଣ କରି ମ୍ଳେଚ୍ଛ ରାଜାଙ୍କୁ ପରାସ୍ତ କରି, ହତ୍ୟାକରି ନିଜରାଜ୍ୟ ପୁନର୍ବାର ଲାଭ କଲେ ।

ବିଦ୍ୟା ଶିକ୍ଷା ପରେ ଶଙ୍କର ଦେବ ନିଜର ଦୁଇ ପୁତ୍ରଙ୍କୁ ଚଣ୍ଡୁ ତପସ୍ୱୀଙ୍କ ନିକଟରୁ ଆଣି ଜ୍ୟେଷ୍ଠପୁତ୍ର ସୂର୍ଯ୍ୟମଣି ତଥା ବ୍ୟାଘ୍ର ତପସ୍ୱୀଙ୍କୁ ଶ୍ରୀ ଶ୍ରୀ ମହାକାଳେଶ୍ୱରଙ୍କ ପୀଠରେ ଅଭିଷେକ ନିମନ୍ତେ ସକଳ ପ୍ରକାର ଆୟୋଜନ କରାଇଥିଲେ । ନିଜ ରାଜ୍ୟର ଅଧିକାଂଶ ପ୍ରଜାଙ୍କୁ ମହାକାଳେଶ୍ୱର ପୀଠକୁ ଆମନ୍ତ୍ରଣ ପୂର୍ବକ ସେଠାରେ ଅଭିଷେକ କାର୍ଯ୍ୟ ସମାପନ କରାଇ ବ୍ୟାଘ୍ର ତପସ୍ୱୀଙ୍କୁ ୧୦୦୨ ଖ୍ରୀଷ୍ଟାବ୍ଦରେ ରାଜ୍ୟଭାର ସମର୍ପଣ କରି ସିଂହ ଜନ ଆବେଦନ କରାଉଥିଲେ । ଶ୍ରୀ ଶ୍ରୀ ମହାକାଳେଶ୍ୱରଙ୍କ ଠାରୁ ଆଶୀଷ ଲାଭକରି ଏବଂ ଗୁରୁ ଚଣ୍ଡୁ ତପସ୍ୱୀଙ୍କ ପାଦ ପୂଜାକରି ବ୍ୟାଘ୍ର ତପସ୍ୱୀ ପିତାଙ୍କ ରାଜ୍ୟରେ ରାଜତ୍ୱ କରିଥିଲେ । ଶଙ୍କର ଦେବ ଚଣ୍ଡୁ ତପସ୍ୱୀଙ୍କ ପରେ ଶଙ୍କର ତପସ୍ୱୀ ରୂପେ ପରିଚିତ ହୋଇଥିଲେ । ସେ ଶ୍ରୀ ଶ୍ରୀ ମହାକାଳେଶ୍ୱରଙ୍କ ପୀଠରେ ନିଜର ଶେଷ ଜୀବନ କଟାଇବାକୁ ଶ୍ରେୟ ମନେ କରିଥିଲେ ।

## ଶ୍ରୀ ଶ୍ରୀ ମହାଲିଙ୍ଗେଶ୍ୱରଙ୍କ ଆବିର୍ଭାବ—

ଆପଣମାନେ ଜାଣିଥିବେ ପୋଲସରା ନିକଟସ୍ଥ ଜୁଲୁଣ୍ଡା ନାମକ ଗ୍ରାମରେ ଶ୍ରୀ ଶ୍ରୀ ମହାଲିଙ୍ଗେଶ୍ୱରଙ୍କ ମନ୍ଦିର ଅବସ୍ଥିତ । ଅଷ୍ଟଦୁର୍ଗର ଅଷ୍ଟଶମ୍ଭୁମାନଙ୍କ ମଧ୍ୟରେ ଏ ହେଉଛନ୍ତି ପ୍ରଥମ । ପ୍ରକୃତରେ ମହା-ଲିଙ୍ଗେଶ୍ୱରଙ୍କ ମହିମା କହିଲେ ନସରେ । ଅତୀତରେ ସେହି ଠାକୁରଙ୍କ ନିକଟରେ ମଥୁରା ନାମକ ଏକ ଗଉଡ଼ ଗ୍ରାମ ଥିଲା । ସେଠାରେ ଅଧିକାଂଶ ଗଉଡ଼ ରହି ଗୋ ସେବା କରନ୍ତି । ଜଣେ ଗଉଡ଼ର ଏକ ଦୁଧିଆଳି ଗାଈର ନାମ କପିଳା । କପିଳା ଗାଈ ପ୍ରତିଦିନ ଯାଇ ଶିବଲିଙ୍ଗ ସ୍ୱର୍ଏଟେ ଚାରି ଗୋଡ଼ ରଖି ଲିଙ୍ଗ ଉପରେ ସ୍ୱତଃ ଦୁଧ ଦେଉଥାଏ । ଗଉଡ଼ ଚନ୍ଦ୍ରଶେଖର ଦୁଧ ଦୁହିଁଲାବେଳେ ଗାଈ କିଛି ଦୁଧ ନ ଦେବାର କାରଣ ଜାଣିବା ପାଇଁ ଗାଈକୁ ଠିକଏ ଲକ୍ଷ୍ୟ ରଖିଥାଏ । ପ୍ରଭାତ ପୂର୍ବରୁ ଦେଖିଲା ଯେ କପିଳାଗାଈ ଗୋଟିଏ ସ୍ଥାନକୁ ଯାଇ ସେଠାରେ ଦୁଧ ସ୍ୱତଃ ଦେଉଛି । ଚନ୍ଦ୍ରଶେଖର ଗଉଡ଼ ରାଗରେ ଗାଈକୁ ମାଡ଼ଦେଲା ଓ ପରେ ଗୋଟିଏ ଲୁହା ମୁଷଳଦ୍ୱାରା ସେହି ସ୍ଥାନକୁ ଖୋଳିବାକୁ ଲାଗିଲା । ହଠାତ୍ ତାଜା ରକ୍ତ ବାହାରିବା ଦେଖି ଚନ୍ଦ୍ରଶେଖର ଆଶ୍ଚର୍ଯ୍ୟ ହୋଇ ଭୟରେ ଗ୍ରାମକୁ ଯାଇ ଏହି ଘଟଣା ଲୋକଙ୍କୁ କହିବା ସଙ୍ଗେ ସଙ୍ଗେ ତଳେ ପଡ଼ିଗଲା ଓ ତାର ପ୍ରାଣବାୟୁ ଚାଲିଗଲା । ଗ୍ରାମଲୋକେ ଏପରି ଘଟଣା ଦେଖି ଭୟଭୀତ ହୋଇପଡ଼ିଲେ ଏବଂ ଦଳବଦ୍ଧ ହୋଇ ସେହିସ୍ଥାନରେ ପହଞ୍ଚି ଶିବଲିଙ୍ଗ ଦର୍ଶନକରି ଆଶ୍ଚର୍ଯ୍ୟ ହୋଇଗଲେ । ଧୂପ ଦୀପ ପୂଜାର୍ଚ୍ଚନା କରି, ହରିନାମ ଉଚ୍ଚାରଣ କରି, ଶଙ୍ଖ ଧ୍ୱନିରେ ଗଗନମଣ୍ଡଳ ପୂର୍ଣ୍ଣ କରିଦେଲେ । ସେହିଦିନ ଠାରୁ ଗ୍ରାମର ପ୍ରତ୍ୟେକ ବ୍ୟକ୍ତି ସେହି ଶିବଲିଂଗଙ୍କୁ ପୂଜାରାଧନା କରିବାକୁ ଲାଗିଲେ । ଜୁଲୁଣ୍ଡା ଗ୍ରାମର ଗାଣ୍ଡୁବାହୁ ନାମକ ମାଳାକାରର ଦୁଇପୁଅ ସ୍ୱୟଂ ଦର୍ଶନ କରିଥିବା ଶିବଲିଂଗର ଅଭିଷେକ, ସେବା ମାର୍ଜଣା ଓ ପୂଜାରେ ନିଜନିଜକୁ ଉତ୍ସର୍ଗ କରିଦେଲେ । ଶେଷରେ ଶଙ୍କର ତପସ୍ୱୀ ମହାଦେବଙ୍କ ଅପାର କରୁଣା ଲାଭକରି ସେଠାରେ ନିଜର ଶେଷ ଜୀବନକୁ କଟାଇଥିଲେ ଓ ଶଙ୍କର ଦେବ ତପସ୍ୱୀ ଠାକୁରଙ୍କୁ ପ୍ରଥମେ ମହାଲିଂଗେଶ୍ୱର ନାମରେ ନାମିତ କରି ରାଜ୍ୟର ସକଳ ପ୍ରଜାଙ୍କୁ ସେଠାକୁ ଆମନ୍ତ୍ରଣ କରି ମହାଲିଂଗେଶ୍ୱରଙ୍କ ମହିମା ପ୍ରଚାର କରିଥିଲେ ।

## ଦ୍ୱିତୀୟ ରାଜା ପର୍ବତା ବ୍ୟାଘ୍ର ତପସ୍ୱୀ (୧୦୦୭-୧୦୪୮)—

ପଦ୍ମ କେଶରୀଙ୍କ କନିଷ୍ଠ ଭ୍ରାତ ଆମ୍ବ କେଶରୀ ସେତେବେଳେ ନଜରଗଡ଼ରେ ରାଜତ୍ୱ କରୁଥିଲେ । ଉତ୍କଳର ଗଜପତି ପୁରୁଷୋତ୍ତମ କେଶରୀ ଦକ୍ଷିଣ ଦିଗକୁ ଯାତ୍ରା କରି ଜଉଗଡ଼ ଦେଖିବାକୁ ଆସିଥିଲେ । ଏହି ଖବର ପାଇ ବ୍ୟାଘ୍ର ତପସ୍ୱୀ ବିଭିନ୍ନ ପ୍ରକାର ଭେଟି ଓ ଉପହାର ସହ ଶିକୁଳା ଘାଟକୁ ଆସି ଉତ୍କଳ ଗଜପତି ପୁରୁଷୋତ୍ତମ କେଶରୀଙ୍କୁ ଦେଖା କରିଥିଲେ । ତାଙ୍କ ସହିତ ନଜର କନିଷ୍ଠଭ୍ରାତ ଭୀମ ତପସ୍ୱୀ ଉପସ୍ଥିତ ଥିଲେ । ପୁରୁଷୋତ୍ତମ କେଶରୀ ବ୍ୟାଘ୍ର ତପସ୍ୱୀ ଶିବଙ୍କ ଆଜ୍ଞାପୂର୍ଣ୍ଣ କଥାଶୁଣି ଅତ୍ୟନ୍ତ ପ୍ରୀତ ହୋଇଥିଲେ ଓ ବ୍ୟାଘ୍ର ତପସ୍ୱୀଙ୍କୁ ପର୍ବତା ବ୍ୟାଘ୍ର ତପସ୍ୱୀ ଦେଓ ରୂପେ ନାମ ପ୍ରଦାନ କରି ମୁଣ୍ଡରେ ଶାଢ଼ୀ ବାନ୍ଧି ଗରୁଡ଼ ଗୋବିନ୍ଦ ନାମକ ଦୁଇଗୋଟି ତରବାରୀ ପ୍ରଦାନ କରି ସେହିଦିନ ଠାରୁ ବ୍ୟାଘ୍ରମୁଣ୍ଡ ସଙ୍କେତ ପ୍ରଦାନ କରିଥିଲେ । ତାଙ୍କୁ ଖଲିଡ଼ ମୁଠା ଦୁର୍ଗର ରାଜା ରୂପେ ସ୍ୱୀକୃତି ପ୍ରଦାନ କରିଥିଲେ ।

ବ୍ୟାଘ୍ର ତପସ୍ୱୀଙ୍କ କନିଷ୍ଠଭ୍ରାତ ଭୀମ ତପସ୍ୱୀଙ୍କୁ ରାଜ୍ୟର ଉତ୍ତର ଅଞ୍ଚଳରେ ଉଦ୍‌ଭବ ହୋଇଥିବା ବାବା ଶ୍ରୀ ଲଡ଼ୁକିଶୋର ଠାକୁରଙ୍କ ସେବା ପୂଜାରେ ବ୍ରତୀରହି ସେଠାକାର ରାଜ୍ୟ ପରିଚାଳନା କରିବାକୁ ଆଦେଶ ପ୍ରଦାନ କରିଥିଲେ । ଗଜପତି ପୁରୁଷୋତ୍ତମଙ୍କ ଆଦେଶ ପାଳନ କରି ଅରଣ୍ୟର ଉତ୍ତର ଦିଗକୁ ଯାଉ ଯାଉ କିଛିଦିନ ପରେ ବାବା ଶ୍ରୀ ଲଡ଼ୁ-କିଶୋର ଅର୍ଥାତ୍ ଆଜିର ଶରଣକୁଳସ୍ଥ ଲଡ଼ୁବାବା ଠାକୁରଙ୍କ ଦର୍ଶନ ଲାଭକଲେ । ଭୀମ ତପସ୍ୱୀ ଶ୍ରୀ ଲଡ଼ୁବାବାଙ୍କ ସେବା ପୂଜାରେ ନିଜକୁ ନିୟୋଜିତ କରିଥିଲେ । ଲଡ଼ୁବାବାଙ୍କ ନିକଟରେ ରୁଦ୍ରାଭିଷେକ କରାଇ ଠାକୁରଙ୍କ ଆଶୀଷ ଲାଭକଲେ । କିଛିଦିନ ପରେ ସେ ସେହି ରାଜ୍ୟର ରାଜା ହୋଇଥିଲେ । ନୂଆଁକୁର ଗୋଟିଏ ଦୁର୍ଗ ନିର୍ମାଣ କରାଇ ରାଜକାର୍ଯ୍ୟ ପରିଚାଳନା କରିଥିଲେ । ଭୀମ ତପସ୍ୱୀଙ୍କ ରାଜତ୍ୱକାଳରୁ ସେହି ରାଜ୍ୟକୁ ନୂଆଁଗଡ଼ ତଥା ଆଜିର ନୟାଗଡ଼ କୁହାଗଲା ।

ପର୍ବତା ବ୍ୟାଘ୍ର ତପସ୍ୱୀ ଦେଓ ଚୁହାଣ ବଂଶର ଏକ କନ୍ୟାଙ୍କୁ ବିବାହ କରିଥିଲେ । ଏହାଙ୍କର ଆଠଗୋଟି ପୁତ୍ରସନ୍ତାନ ଜାତ ହୋଇଥିଲେ । ସେମାନଙ୍କ ନାମ ଯଥାକ୍ରମେ ବୃଷଭ ତପସ୍ୱୀ, ଅର୍ଜୁନ ତପସ୍ୱୀ, ମହାଦେବ ତପସ୍ୱୀ, ଭୀମ ତପସ୍ୱୀ, ବାମନ ତପସ୍ୱୀ, ବଳଭଦ୍ର ତପସ୍ୱୀ, କାର୍ତ୍ତିକେୟ ତପସ୍ୱୀ ଓ ଗଣେଶ ତପସ୍ୱୀ । ପର୍ବତା ବ୍ୟାଘ୍ର ତପସ୍ୱୀ ଦେଓ ଦୀର୍ଘ ୪୬ ବର୍ଷ ରାଜ୍ୟ ଶାସନ କରିଥିଲେ । ନିଜର ଆରାଧ୍ୟ ଦେବତା ଶ୍ରୀ ମହାଲିଂଗେଶ୍ୱରଙ୍କ ମନ୍ଦିର ନିର୍ମାଣ କରାଇ ଶ୍ରୀକ୍ଷେତ୍ରରୁ ବ୍ରାହ୍ମଣ ଆମନ୍ତ୍ରଣ କରି ପ୍ରତିଷ୍ଠା କରାଇ ଥିଲେ । ଶ୍ରୀ ମହାଲିଂଗେଶ୍ୱରଙ୍କ କୃପାରୁ ଏହାଙ୍କର ଆଠଗୋଟି ପୁତ୍ର ନିମନ୍ତେ ରାଜ୍ୟ ମଧ୍ୟରେ ଆଠଗୋଟି ଦୁର୍ଗ ନିର୍ମାଣ କରିଥିଲେ । ଜ୍ୟେଷ୍ଠପୁତ୍ର ବୃଷଭ ତପସ୍ୱୀଙ୍କୁ ଖଲଡ଼ମୁଠା ଦୁର୍ଗ, ଦ୍ୱିତୀୟ ପୁତ୍ର ଅର୍ଜୁନ ତପସ୍ୱୀଙ୍କୁ ପାଣ୍ଡିରପଡ଼ା ମୁଠା ଦୁର୍ଗ, ତୃତୀୟ ପୁତ୍ର ମହାଦେବ ତପସ୍ୱୀଙ୍କୁ ବଡ଼ ପଙ୍କଲବାଡ଼ଶାସନ ମୁଠା ଦୁର୍ଗ, ଚତୁର୍ଥପୁତ୍ର ଭୀମ ତପସ୍ୱୀଙ୍କୁ ଶିକୁଳା ମୁଠା ଦୁର୍ଗ, ପଞ୍ଚମ ପୁତ୍ର ବାମନ ତପସ୍ୱୀଙ୍କୁ ଘାଟିପାରି ମୁଠା ଦୁର୍ଗ (ଗୁଡ଼ିଆଳି), ଷଷ୍ଠପୁତ୍ର ବଳଭଦ୍ର ତପସ୍ୱୀଙ୍କୁ ପଶ୍ଚିମର ଯମୁନା ଓ ଜକର ମୁଠା ଦୁର୍ଗ, ସପ୍ତମ ପୁତ୍ର କାର୍ତ୍ତିକେୟ ତପସ୍ୱୀଙ୍କୁ ରୁମାଗଡ଼ ମୁଠା ଦୁର୍ଗ ଓ ଅଷ୍ଟମ ପୁତ୍ର ଗଣେଶ ତପସ୍ୱୀଙ୍କୁ ପାଟିଗଡ଼ ମୁଠା ଦୁର୍ଗ ଏହିପରି ଆଠ ପୁତ୍ରଙ୍କୁ ଆଠଗୋଟି ଦୁର୍ଗରେ ରଖାଇ ରାଜକାର୍ଯ୍ୟ ପରିଚାଳନା କରିବା ପାଇଁ ଦାୟିତ୍ୱ ଦେଇଥିଲେ ।

ପର୍ବତା ବ୍ୟାଘ୍ର ତପସ୍ୱୀ ଦେଓଙ୍କ ରାଜ୍ୟକୁ ଆଠଗୋଟି ଦୁର୍ଗରେ ପରିଣତ ହେବାରୁ ତାହାକୁ ଅଷ୍ଟଦୁର୍ଗ ନାମରେ ନାମିତ କରାଗଲା । ବ୍ୟାଘ୍ର ତପସ୍ୱୀ ସୁଚାରୁ ରୂପେ ଦୀର୍ଘ ୪୬ ବର୍ଷ ରାଜ୍ୟଭାର ଚଳାଇ ଶେଷରେ ୧୦୪୮ ଖ୍ରୀଷ୍ଟାବ୍ଦରେ ଜ୍ୟେଷ୍ଠପୁତ୍ର ବୃଷଭ ତପସ୍ୱୀଂକ ଖଲଡ଼ ମୁଠା ଦୁର୍ଗରେ କାଳ ହୋଇଥିଲେ । ବ୍ୟାଘ୍ର ତପସ୍ୱୀ ପିତାଂକ ନିଧନ ବାର୍ତ୍ତା ପ୍ରେରଣ କରି ସାତ ଭାଇଙ୍କୁ ଅନ୍ତ୍ୟେଷ୍ଟି କ୍ରିୟା ପାଇଁ ଡକାଇ ଆଣିଥିଲେ । ବୃଷଭ ତପସ୍ୱୀ ରାଜ୍ୟ ଲୋଭରେ ମୋହ ହୋଇ ଘାତକମାନଂକ ଦ୍ୱାରା ସାତ ଭାଇଙ୍କୁ ମରାଇ ଅଗ୍ନିରେ ଦାହ କରିଦେଇଥିଲେ ଓ ପିତାଂକ ଅନ୍ତ୍ୟେଷ୍ଟି କ୍ରିୟାରେ ସମସ୍ତଂକ ଅନ୍ତ୍ୟେଷ୍ଟି କ୍ରିୟା ସମାପନ କରିଥିଲେ । ନିଜ ରାଜ୍ୟର ଆଠମୁଠା ଅର୍ଥାତ୍ ଅଷ୍ଟଦୁର୍ଗର ଶାସନଭାର ନିଜ ଦାୟିତ୍ୱରେ ରଖିଥିଲେ ।

## ତୃତୀୟ ରାଜା ବୃଷଭ ତପସ୍ୱୀ (୧୦୪୮-୧୦୯୮) —

ବୃଷଭ ତପସ୍ୱୀ ଅଷ୍ଟଦୁର୍ଗର ରାଜାହେବା ପରେ ଚୂଡ଼ାଙ୍ଗ ବଂଶର ଗୋଟିଏ କନ୍ୟାକୁ ବିବାହ କରିଥିଲେ । ଏହାଙ୍କର କୀର୍ତ୍ତିନ ଓ ଜଗନ୍ନାଥ ନାମରେ ଦୁଇଟି ପୁତ୍ର ଜାତ ହୋଇଥିଲେ । ଦୀର୍ଘ ୫୦ ବର୍ଷ ରାଜ୍ୟ ଶାସନ କରି ବୃଷଭ ତପସ୍ୱୀ ୧୦୯୮ ଖ୍ରୀଷ୍ଟାବ୍ଦରେ ମୃତ୍ୟୁବରଣ କରିଥିଲେ । ଏହାଙ୍କ ପରେ ଜ୍ୟେଷ୍ଠ ପୁତ୍ର କୀର୍ତ୍ତିନ ରାଜ୍ୟଭାର ଗ୍ରହଣ କରିଥିଲେ ।

## ଚତୁର୍ଥ ରାଜା କୀର୍ତ୍ତିନ ତପସ୍ୱୀ ଦେଓ (୧୦୯୮-୧୧୨୨)—

କୀର୍ତ୍ତିନ ତପସ୍ୱୀ ଦେଓ ରାଜା ହେବା ପରେ ରାମକୃଷ୍ଣ ନରେନ୍ଦ୍ର ଦେଓଙ୍କ କନ୍ୟାକୁ ବିବାହ କରିଥିଲେ । ଏହାଂକର କୌଣସି ପୁତ୍ର ସନ୍ତାନ ନଥିଲେ । ୧୧୨୨ ଖ୍ରୀଷ୍ଟାବ୍ଦରେ ଏହି ରାଜାଂକ ମୃତ୍ୟୁ ହୋଇଥିଲା । ଏହିଠାରୁ ଶାଳିବାହାନ ରାଜାଂକ ଜ୍ୟେଷ୍ଠ ଅଂଶ ଲୋପ ହୋଇଯାଇଥିଲା ।

## ପଞ୍ଚମ ରାଜା ଜଗନ୍ନାଥ ନିଃଶଙ୍କ ଦେଓ (୧୧୨୨-୧୧୮୨)—

କୀର୍ତ୍ତିନ ତପସ୍ୱୀ ଦେଓଙ୍କ ମୃତ୍ୟୁପରେ ତାଙ୍କର କନିଷ୍ଠ ଭ୍ରାତା ଜଗନ୍ନାଥ ତପସ୍ୱୀ ଖଲଡ଼ ମୁଠା ଦୁର୍ଗରେ ରାଜା ହୋଇଥିଲେ । ଜଗନ୍ନାଥ ତପସ୍ୱୀ ଦେଓ ପୁଣି ଗଜପତି କପିଳେନ୍ଦ୍ର ଦେବଙ୍କ ଠାରୁ ପାଟ, ଶାଢ଼ୀ, ଘୋଡ଼ା ସହିତ ଜଗନ୍ନାଥ ନିଃଶଙ୍କ ଦେଓ ରୂପେ ସନନ୍ଦ ଲାଭ କରିଥିଲେ । ଏହାଙ୍କ ରାଜତ୍ୱ ସମୟରେ କୋଦଳା ଆଠଗଡ଼ ରୂପେ ନାମକରଣ ହୋଇଥିଲା । ଏହି ରାଜାଙ୍କ ସମୟରେ ରାଜ୍ୟରେ ଆଠଗୋଟି ଦୁର୍ଗ ଥିବାରୁ ପୁଣି ଗଜପତିଙ୍କ ଠାରୁ ଅଷ୍ଟଦୁର୍ଗ ରୂପେ ସ୍ୱୀକୃତି ଲାଭ କରିଥିଲେ ।

ଜଗନ୍ନାଥ ନିଃଶଙ୍କ ଦେଓ ଶ୍ରୀ ମହାଲିଙ୍ଗେଶ୍ୱରଙ୍କ ଦୈନିକ ଭୋଗ ନିମନ୍ତେ ୪୧ ଏକର ଜମି ବ୍ୟତୀତ ମାଳି, ପଣ୍ଡା, ପରିଛା, ଟହଲିଆ, ପୁରୋଧା, କୁମ୍ଭକାର, ଗଉଡ଼, କାହାଳିଆମାନଙ୍କ ନିମନ୍ତେ ୭୨ ଏକର ଜମି ଖଞ୍ଜି ଦେଇଥିଲେ । ଏହି ରାଜା ରାଜ୍ୟର ଉତ୍ତମ ଲୋକମାନଙ୍କୁ ରାଜ କାର୍ଯ୍ୟରେ ନିଯୁକ୍ତ କରିଥିଲେ ।

ଜଗନ୍ନାଥ ନଃଶଙ୍କ ଦେଓ ବଡ଼ ପରାକ୍ରମୀ ଥିଲେ । କପିଳେନ୍ଦ୍ର ଦେବଙ୍କ ପରେ ତାଙ୍କର ପୁତ୍ର ପୁରୁଷୋତ୍ତମ ଦେବ ପୃଷ୍ଟରେ ରାଜା ହୋଇଥିଲେ । ଗଜପତି ପୁରୁଷୋତ୍ତମ ଦେବଙ୍କ ସହିତ ଜଗନ୍ନାଥ ନଃଶଙ୍କ ଦେଓ ଦକ୍ଷିଣ ପଶ୍ଚିମ ଦିଗକୁ ରାଜ୍ୟ ଜୟ କରିବାକୁ ଯାଇଥିଲେ । ବହୁତ ରାଜ୍ୟ ଜୟକରି ହରିଚନ୍ଦନ ବୃକ୍ଷ ଆଣିଥିବାରୁ ଏହ ଶ୍ରୀହରିଙ୍କ ଅନୁଗ୍ରହ ଭାବି ଜଗନ୍ନାଥ ନଃଶଙ୍କ ଦେଓଙ୍କୁ ପୁରୀ ଗଜପତି ପୁରୁଷୋତ୍ତମ ଦେବ ଜଗନ୍ନାଥ ନଃଶଙ୍କ ହରିଚନ୍ଦନ ରୂପେ ସନନ୍ଦ ପ୍ରଦାନ କରିଥିଲେ । ସେହିଦିନ ଠାରୁ ଅଷ୍ଟଦୁର୍ଗ ରାଜବଂଶରେ ହରିଚନ୍ଦନ ଉପାଧି ପ୍ରଚଳିତ ହୋଇ ଆସୁଅଛି । ସେତେବେଳେ ପୁରୀ ରାଜା ଆଠଗଡ଼ରୁ ଆଠହଜାର ଟଙ୍କା ଜମାବନ୍ଦି ନେବାପାଇଁ ସ୍ଥିର କରିଥିଲେ । ଏହା ୧୧୫୨ ଖ୍ରୀଷ୍ଟାବ୍ଦର ଘଟଣା । ଜଗନ୍ନାଥ ନଃଶଙ୍କ ପ୍ରାୟ ୬୦ ବର୍ଷ ରାଜ୍ୟ ଶାସନ କରି ୧୧୮୨ ଖ୍ରୀଷ୍ଟାବ୍ଦରେ ଇହଧାମ ତ୍ୟାଗ କରିଥିଲେ । ଏହାଙ୍କର ଦାଶରଥି ନାମକ ଗୋଟିଏ ପୁତ୍ର ଥିଲେ ।

## ଷଷ୍ଠ ରାଜା ଦାଶରଥି ନଃଶଙ୍କ ହରିଚନ୍ଦନ (୧୧୮୨-୧୨୨୫)—

ଜଗନ୍ନାଥ ନଃଶଙ୍କ ହରିଚନ୍ଦନଙ୍କ ପରେ ତାଙ୍କର ପୁତ୍ର ଦାଶରଥି ନଃଶଂକ ହରିଚନ୍ଦନ ଅଷ୍ଟଦୁର୍ଗରେ ରାଜା ହୋଇଥିଲେ । ଏହି ରାଜା ଉତ୍ତମ ଶାସକ ରୂପେ ପ୍ରଜାଂକର ପ୍ରିୟପାତ୍ର ହୋଇ ପାରିଥିଲେ । ରାଜ୍ୟରୁ ବଣ, ଲଟା ଓ କଣ୍ଟା ପରିଷ୍କାର କରାଇ କେତୋଟି ନୂତନ ଗ୍ରାମ ଓ ପଲ୍ଲୀ ପ୍ରତିଷ୍ଠା କରିଥିଲେ । ଦାଶରଥି ନଃଶଂକ ହରିଚନ୍ଦନ ବରୁଳ ରାଜା ରାମଚନ୍ଦ୍ର ମହାରଥିଂକ କନ୍ୟାକୁ ବିବାହ କରିଥିଲେ । ଏହାଂକର କୃଷ୍ଣ ନାମରେ ଗୋଟିଏ ପୁତ୍ରଥିଲେ । ଦାଶରଥି ନଃଶଂକ ହରିଚନ୍ଦନ ୧୨୨୫ ଖ୍ରୀଷ୍ଟାବ୍ଦରେ ମୃତ୍ୟୁବରଣ କରିଥିଲେ ।

## ସପ୍ତମ ରାଜା କୃଷ୍ଣ ନଃଶଙ୍କ ହରିଚନ୍ଦନ (୧୨୨୫-୧୩୧୮)—

ଦାଶରଥି ନଃଶଙ୍କ ହରିଚନ୍ଦନଙ୍କ ପରେ ତାଂକର ପୁତ୍ର କୃଷ୍ଣ ନଃଶଂକ ହରିଚନ୍ଦନ ଅଷ୍ଟଦୁର୍ଗର ରାଜକାର୍ଯ୍ୟ ପରିଚାଳନା କରିଥିଲେ । ସେ ଭୀଷଣ ରାଗି ଓ ଉଗ୍ର ଥିଲେ । ସବୁଦା ଭୋଗ ବିଳାସରେ ରହିବାକୁ ଶ୍ରେୟମନେ

କରୁଥିଲେ । କୃଷ୍ଣ ନିଃଶଂକ ହରିଚନ୍ଦନ ଖଡ଼୍ଗସିଂହ ରାମଚନ୍ଦ୍ର ରାଜାଂଙ୍କର କନ୍ୟାକୁ ବିବାହ କରିଥିଲେ । ଏହାଂଙ୍କ ରାଜତ୍ୱକାଳ ଦାଶରଥି ନିଃଶଂକ ହରିଚନ୍ଦନଙ୍କ ବିପରୀତ ହୋଇଥିଲା । ରାଜ କର୍ମଚାରୀମାନେ ମଧ୍ୟ ରାଜାଙ୍କ ଠାରୁ ବଳ ଯାଉଥିଲେ । ଏହାଂଙ୍କ ରାଜତ୍ୱ କାଳରେ ଉତ୍କଳ ଗଜପତି ପୁରୁଷୋତ୍ତମ ଦେବ ଓ କାଞ୍ଚି ରାଜାଙ୍କ ସହିତ ଯୁଦ୍ଧ ହୋଇଥିଲା । ଏହି ସମୟ ପୁରୁଷୋତ୍ତମ ଦେବଙ୍କର ଦଶଅଂକ ୧୨୩୭ ଶକାବ୍ଦ ଅର୍ଥାତ୍ ୧୩୧୫ ଖ୍ରୀଷ୍ଟାବ୍ଦ । କୃଷ୍ଣ ନିଃଶଂକ ହରିଚନ୍ଦନ ଗଜପତି ପୁରୁଷୋତ୍ତମ ଦେବଙ୍କୁ କାଞ୍ଚି ଯୁଦ୍ଧରେ ସାହାଯ୍ୟକରି ଶ୍ରେଷ୍ଠ ଯୋଦ୍ଧା ରୂପେ ଖ୍ୟାତି ପାଇଥିଲେ ।

କୃଷ୍ଣ ନିଃଶଂକ ହରିଚନ୍ଦନଙ୍କ ଶାସନର କିଛିଦିନ ପରେ ନବାବ ରାଜା ମଙ୍ଗରାଜ ନିଜକୁ ଚକ୍ରବର୍ତ୍ତୀ ରୂପେ ଘୋଷଣା କରି ସମସ୍ତଙ୍କୁ ପରାସ୍ତ କରିଥିଲେ । ନବାବ ମଙ୍ଗରାଜ ସର୍ବଦା ଖଡ଼୍ଗ ହସ୍ତରେ ରହୁଥିଲେ । ଯଦି କୌଣସି ବ୍ୟକ୍ତି ତାଂକର କଥାକୁ ଅବଜ୍ଞାକରେ ସେ କୌଣସି କଥାକୁ ବିଚାର ନକରି ସଙ୍ଗେ ସଙ୍ଗେ ତାହାର ମୁଣ୍ଡ କାଟି ପକାଉଥିଲେ । କୃଷ୍ଣ ନିଃଶଂକ ହରିଚନ୍ଦନ ଭୋଗ ବିଳାସରେ ରହି ଠିକ୍ ସମୟରେ ନବାବଂକ ଦେୟ ନ ପଠାଇବାରୁ ନବାବ ପତ୍ରଲେଖି ଦୁଇଦିନ ମଧ୍ୟରେ ସମସ୍ତ ବକେୟା ଥିବା ଅର୍ଥ ପୈଠ କରିବାକୁ କହିଥିଲେ । ସେ ପତ୍ରକୁ କୃଷ୍ଣ ନିଃଶଂକ ହରିଚନ୍ଦନ ଅବଜ୍ଞା କରି ବହୁତ ଦିନ ପରେ ନବାବ ପାଖକୁ ଯିବାରୁ ନବାବ ତାଂକର ମୁଣ୍ଡ କାଟି ଦେଇଥିଲେ । ସେତେବେଳକୁ କୃଷ୍ଣ ନିଃଶଂକ ହରିଚନ୍ଦନଂକ ପୁତ୍ରକୁ ମାତ୍ର ୧୧ ବର୍ଷ ହୋଇଥିଲା । ତାଂକର ନାମଥିଲା ତ୍ରିପୁରାରୀ । ତ୍ରିପୁରାରୀ ବଡ଼ ଚତୁର ଓ କ୍ଷମ ଥିଲେ । ନବାବ ମଙ୍ଗରାଜ ତାଙ୍କୁ ବନ୍ଦୀରେ ରଖିବାରୁ ବାଳକ ତ୍ରିପୁରାରୀ ବକେୟା ଥିବା ସମସ୍ତ ଅର୍ଥ ମଙ୍ଗରାଜଂକ ନିକଟରେ ପରିଶୋଧ କରି ମୁକ୍ତ ହୋଇଥିଲେ ।

## ଅଷ୍ଟମ ରାଜା ତ୍ରିପୁରାରୀ ନିଃଶଙ୍କ ହରିଚନ୍ଦନ (୧୩୧୮-୧୩୭୫)

ପିତାଂକ ମୃତ୍ୟୁପରେ ବାଳକ ତ୍ରିପୁରାରୀ ରାଜ୍ୟ ପରିଚାଳନା ଦାୟିତ୍ୱ ଗ୍ରହଣ କରିଥିଲେ । ରାଜ୍ୟର କୁଶଳ ନିମନ୍ତେ ତ୍ରିପୁରାରୀ ପିତାଂକ

ଉଦ୍ଦେଶ୍ୟରେ ୧୩୧୮ ଖ୍ରୀଷ୍ଟାବ୍ଦରେ ବ୍ରାହ୍ମଣମାନଙ୍କୁ ସନ୍ତୋଷ କରିବା ପାଇଁ ଚଢ଼ିଆପଲ୍ଲୀ ନାମକ ପଲ୍ଲୀକୁ ଦାନ ଦେଇ ସେହି ଗ୍ରାମର ନାମ ପିତାଂଙ୍କ ନାମରେ ନାମିତ କରି କୃଷ୍ଣଦାସପୁର ଶାସନ ରୂପେ ନାମିତ କରିଥିଲେ । ଏହି ଦାନର ଦକ୍ଷିଣା ସ୍ୱରୂପ ବଡ଼ାପଡ଼ା ଗ୍ରାମକୁ ବ୍ରାହ୍ମଣମାନଙ୍କୁ ଦେଇଥିଲେ । ଝିପୁରାଘ ମଃଶଂକ ହରିଚନ୍ଦନ ପ୍ରଜାଙ୍କୁ ସୁଖରେ ପାଳନ କରୁଥିଲେ । ମଙ୍ଗରାଜ ନବାବ ତାଂକ ପିତାଙ୍କୁ ଡକାଇ ମୁଣ୍ଡ କାଟି ଦେଇଥିବାରୁ ସର୍ବଦା ଝିପୁରାଘ ଚିନ୍ତାଶକ୍ତ ରହୁଥିଲେ । ଏହାର ପ୍ରତିଶୋଧ କିପରି ନେବାକୁ ହେବ ସେଥିପ୍ରତି ସର୍ବଦା ଚେଷ୍ଟା କରୁଥିଲେ ।

କିଛିଦିନ ପରେ ଝିପୁରାଘ କେତେକ ଆତ୍ମୀୟ ଲୋକଙ୍କୁ ସଙ୍ଗରେ ନେଇ ଉତ୍କଳ ଗଜପତିଙ୍କୁ ସାକ୍ଷାତ କରି ନିଜର ମନକଥା ପ୍ରକାଶ କରିବାକୁ କଟକ ଯାତ୍ରା କରିଥିଲେ । କଟକ ଦୁର୍ଗରେ ଗଜପତିଙ୍କୁ ଭେଟି ଦେଇ ନିଜ ପିତାଂକର ଘଟକୁମରଡ଼ା ଠାରେ ନବାବ ମଂଗରାଜ କିପରି ମୁଣ୍ଡ କାଟିଥିଲେ ତାହା ଜଣାଇଥିଲେ । ନିଜେ ଜମାନବନ୍ଦୀ ଟଂକା ପରିଶୋଧ କରି ବନ୍ଦୀ ମୁକ୍ତ ହୋଇ ନିଜ ରାଜ୍ୟକୁ କିପରି ପରିଚାଳନା କଲେ ତାହା ବର୍ଣ୍ଣନା କରିଥିଲେ ।

ସେତେବେଳେ ଉତ୍କଳର ଗଜପତି ଥିଲେ ଗଙ୍ଗବଂଶୀୟ ରାଜା ନରସିଂହ ଦେବ । ସେ ଝିପୁରାଘ ମଃଶଂକ ହରିଚନ୍ଦନଂକ ଠାରୁ ସମସ୍ତ ଘଟଣା ଶୁଣି ନବାବ ମଙ୍ଗରାଜ ସହିତ ଯୁଦ୍ଧ କରିବାକୁ ସ୍ଥିର କରିଥିଲେ । ସେହି ଯୁଦ୍ଧଯାତ୍ରାରେ ଝିପୁରାଘ ମୁଖ୍ୟ ସେନାପତି ରୂପେ ନିଯୁକ୍ତ ହୋଇଥିଲେ । ନବାବ ମଙ୍ଗରାଜ ସହିତ ଭୀଷଣ ଯୁଦ୍ଧ ହେଲା । ଶେଷରେ ଝିପୁରାଘ ବଙ୍ଗ ନବାବଙ୍କ ସେନାପତି ନଙ୍ଗୁଳିର ମୁଣ୍ଡକାଟି ପ୍ରତିଶୋଧ ନେଇଥିଲେ । ଯୁଦ୍ଧରେ ମଙ୍ଗରାଜ ନବାବ ପରାସ୍ତ ହୋଇ ଆତ୍ମସମର୍ପଣ କରିଥିଲେ । ଝିପୁରାଘ ମଙ୍ଗୁଳି ସେନାପତିର ମୁଣ୍ଡକାଟି ମଙ୍ଗରାଜ ନବାବଙ୍କୁ ପରାସ୍ତ କରି ବନ୍ଦୀ କରିବାରୁ ସେହିଦିନ ଠାରୁ ଗଜପତି ନରସିଂହ ଦେବ ତାଙ୍କୁ ଝିପୁରାଘ ମଙ୍ଗରାଜ ମଃଶଂକ ଦେଓ ପଦରେ ଭୂଷିତ କରିଥିଲେ । ଏହାଥିଲା ୧୩୪୪ ଖ୍ରୀଷ୍ଟାବ୍ଦର ଘଟଣା । ଝିପୁରାଘ

ବାଙ୍କପୁର ରଘୁନାଥ ହରିଚନ୍ଦନଙ୍କ ମଧ୍ୟମା କନ୍ୟାକୁ ବିବାହ କରିଥିଲେ । ଦୁର୍ଭାଗ୍ୟର କଥା ତାଙ୍କର କୌଣସି ସନ୍ତାନ ଜାତ ହୋଇ ନଥିଲା । ସନ୍ତାନ ଆଶାରେ ପୁନଶ୍ଚ ଚକ୍ରଡିରାଜା ଶ୍ୟାମସୁନ୍ଦର ଦେବଙ୍କ କନ୍ୟା ସହିତ ଦ୍ୱିତୀୟ ବିବାହ କରିଥିଲେ । ତାଙ୍କଠାରୁ ଏକ ପୁତ୍ର ସନ୍ତାନ ଜାତ ହୋଇଥିଲା । ତାହାର ନାମ ଥିଲା କୁଳମଣି । ୧୩୭୪ ଖ୍ରୀଷ୍ଟାବ୍ଦରେ ତ୍ରିପୁରାରି ମଙ୍ଗରାଜ ନିଃଶଙ୍କ ଦେଓଙ୍କର ମୃତ୍ୟୁ ହୋଇଥିଲା ।

## ନବମ ରାଜା କୁଳମଣି ମଙ୍ଗରାଜ ଦେଓ (୧୩୭୪-୧୪୭୦)—

ପିତାଙ୍କ ମୃତ୍ୟୁର ପଞ୍ଚଦଶ ଦିବସରେ କୁଳମଣି ରାଜଗାଦି ନିମନ୍ତେ ମଙ୍ଗଳ ପୂଜାର ଆୟୋଜନ କରି ମହାକାଳେଶ୍ୱରଙ୍କ ନିକଟକୁ ଯାଇଥିଲେ । ପୂଜାରାଧନା ପୂର୍ବକ ଯେଉଁଦିନ ଅଭିଷେକର ସମସ୍ତ କାର୍ଯ୍ୟ ସମାପନ କରାଯାଇଥିଲା । କୁଳମଣି ମଙ୍ଗରାଜ ନିଃଶଙ୍କ ଦେଓ ଅତ୍ୟନ୍ତ ଶାନ୍ତ ଓ ଭଦ୍ର ଥିଲେ । ପ୍ରିୟ ଅପ୍ରିୟ ସମସ୍ତଙ୍କୁ ସମାନ ଦୃଷ୍ଟିରେ ଦେଖି ସୁଖରେ ରାଜକାର୍ଯ୍ୟ ପରିଚାଳନା କରୁଥିଲେ । ରାଜା କୁଳମଣି ବିଭିନ୍ନ ପ୍ରକାର ଭେଟି ଓ ଧନରତ୍ନ ସାଙ୍ଗରେ ନେଇ ପୁରୁଷୋତ୍ତମ ଶ୍ରୀକ୍ଷେତ୍ରକୁ ଯାତ୍ରା କରିଥିଲେ । ଶ୍ରୀକ୍ଷେତ୍ରରେ ଜଗନ୍ନାଥ ମହାପ୍ରଭୁଙ୍କୁ ଦର୍ଶନ କରି ସେଠାରୁ ବାରବାଟି ଦୁର୍ଗ ଅଭିମୁଖେ ଯାତ୍ରାକଲେ । ଉତ୍କଳ ଗଜପତି ନରସିଂହ ଦେବ ଅଷ୍ଟଦୁର୍ଗ ରାଜାଙ୍କର ଆଗମନ ବାର୍ତ୍ତା ଶୁଣି ପାତ୍ରଙ୍କୁ ପଠାଇ ବାଟରୁ ପାଛୋଟି ଦୁର୍ଗମଧ୍ୟକୁ ନେଇଥିଲେ । ନରସିଂହ ଦେବଙ୍କ ପୁତ୍ର ସନ୍ତାନ ନଥିଲେ । କେବଳ ସୀତା ନାମକ ଏକମାତ୍ର କନ୍ୟା ଥିଲା । କୁଳମଣିଙ୍କ ବ୍ୟବହାରରେ ସନ୍ତୁଷ୍ଟ ହୋଇ ନରସିଂହ ଦେବ ନିଜର କନ୍ୟା ସୀତା ଦେବୀଙ୍କ ସହିତ କୁଳମଣିଙ୍କର ବିବାହ କାର୍ଯ୍ୟ ସମାପନ କରିଥିଲେ । ଅଶ୍ୱ, ଗଜ, ଧନରତ୍ନ, ଦାସୀ ପରିଚାରୀ ସହ ଅଷ୍ଟଦୁର୍ଗକୁ ପଠାଇଥିଲେ ।

କୁଳମଣି ମଙ୍ଗରାଜ ନିଃଶଙ୍କ ଦେଓଙ୍କର ତିନିଗୋଟି ପୁତ୍ର ଓ ଗୋଟିଏ କନ୍ୟା ଜାତ ହୋଇଥିଲେ । ଜ୍ୟେଷ୍ଠପୁତ୍ର ଅଳ୍ପଦିନ ମଧ୍ୟରେ ମୃତ୍ୟୁବରଣ କରିଥିଲେ । ଦ୍ୱିତୀୟ ପୁତ୍ରର ନାମ ଗୋପାଳକୃଷ୍ଣ, କନିଷ୍ଠ ପୁତ୍ରର ନାମ

ବିକ୍ରମଦେବ ଓ କନ୍ୟାର ନାମ ରତ୍ନମଣି । କୁଳମଣି ମଙ୍ଗରାଜ ନିଃଶଙ୍କ ଦେଓଙ୍କ ରାଜତ୍ୱର ପନ୍ଦର ବର୍ଷ ବେଳେ ଘୁମୁସର ରାଜା ଧନୁର୍ଜୟ ଭଞ୍ଜଙ୍କ ସହିତ ତାଙ୍କର ଯୁଦ୍ଧ ହୋଇଥିଲା । ଧନୁର୍ଜୟ ଭଞ୍ଜଙ୍କ ସେନାପତି ଜଗୁମାଢ଼ୀ ସାମନ୍ତ ବଡ଼ ପରାକ୍ରମଶାଳୀ ଥିଲା । କୁଳମଣି ଓ ଜଗୁମାଢ଼ୀ ସାମନ୍ତଙ୍କ ମଧ୍ୟରେ ଭୀଷଣ ଯୁଦ୍ଧ ହୋଇଥିଲା । ଶେଷରେ କୁଳମଣି ଜଗୁମାଢ଼ୀକୁ ପରାସ୍ତ କରି ପ୍ରାଣରେ ନମାରି ବାମ ଆଖିଟିକୁ ଖୋଳି ଦେଇଥିଲେ । ଏହି ଘଟଣାରେ ଧନୁର୍ଜୟ ଭଞ୍ଜ କ୍ରୋଧରେ ପୁଣି କୁଳମଣିଙ୍କ ସହିତ ଯୁଦ୍ଧ କରିଥିଲେ । ଯୁଦ୍ଧରେ କୁଳମଣିଙ୍କୁ ପରାସ୍ତ କରି ପ୍ରାଣରେ ନମାରି ଅପମାନିତ କରି ନିଜ ରାଜ୍ୟ ଅଷ୍ଟଦୁର୍ଗକୁ ପଠାଇ ଦେଇଥିଲେ । ଅପମାନିତ ହୋଇ କୁଳମଣି ଦୁଃଖରେ ନିଜରାଜ୍ୟକୁ ଫେରିଆସି ପାତ୍ର ମନ୍ତ୍ରୀମାନଙ୍କୁ ଶାସନଭାର ପ୍ରଦାନ କରି ଏ ସମସ୍ତ ଘଟଣା ଉତ୍କଳ ଗଜପତିଙ୍କୁ ଜଣାଇବା ପାଇଁ କଟକ ଯାତ୍ରାକଲେ । ଗଜପତି ନରସିଂହ ଦେବ କୁଳମଣିଙ୍କ ଠାରୁ ସମସ୍ତ ଘଟଣା ଶୁଣି ତାଙ୍କୁ କିଛିଦିନ ବାରବାଟୀ ଦୁର୍ଗରେ ରହିବାକୁ ଅନୁରୋଧ କରିଥିଲେ । କୁଳମଣି ବାରବାଟୀ ଦୁର୍ଗରେ ଦୀର୍ଘ ଦୁଇମାସ ରହିଥିଲେ ।

ରାଜା କୁଳମଣି ଅଷ୍ଟଦୁର୍ଗରେ ଅନୁପସ୍ଥିତ ଥିବା ଶୁଣି ଜଗୁମାଢ଼ୀ ଓ ଧନୁର୍ଜୟ ଭଞ୍ଜ ସୈନ୍ୟସାମନ୍ତ ସହ ଆସି ପୁନର୍ବାର ଅଷ୍ଟଦୁର୍ଗକୁ ଆକ୍ରମଣ କରିଥିଲେ । ଆକସ୍ମିକ ଆକ୍ରମଣ ଫଳରେ ସମସ୍ତ ରାଜ କର୍ମଚାରୀ ଭୟଭୀତ ହୋଇ ପଡ଼ିଲେ । କଣା ଜଗୁମାଢ଼ୀ ସାମନ୍ତ ଅଷ୍ଟଦୁର୍ଗକୁ ଜୟକରି ରାଜତ୍ୱ କଲେ । ଏ ସମସ୍ତ ଘଟଣା କୁଳମଣି ମଙ୍ଗରାଜ ଶୁଣି କ୍ରୋଧରେ ଜଳିଗଲେ । ଶ୍ୱଶୁରଙ୍କୁ କିଛି ନ କହି କଣା ଜଗୁମାଢ଼ୀକୁ ମାରିବାକୁ ସ୍ଥିରକଲେ । ମୁଁ ମରିବ ନଚେତ୍ କଣା ଜଗୁମାଢ଼ୀକୁ ମାରିବ । ଏପରି ନିଷ୍ପତ୍ତି ଶୁଣି ନରସିଂହ ଦେବ କୁଳମଣିଙ୍କୁ ନିକଟକୁ ଡାକି କହିଲେ, "ତୁମେ କୌଣସି ଚିନ୍ତା କରନାହିଁ, ମୁଁ ସେହି କଣା ଜଗୁମାଢ଼ୀକୁ ନିଶ୍ଚୟ ମାରିବ ।"

ଏ ମଧ୍ୟରେ କଣା ଜଗୁମାଢ଼ୀ ଅଷ୍ଟଦୁର୍ଗରେ ରାଜତ୍ୱ କରି ସେଠାକାର କର୍ମଚାରୀମାନଙ୍କୁ ଧନରତ୍ନରେ ସନ୍ତୁଷ୍ଟ କରି ଦେଇଥିଲେ । କୁଳମଣି ମଙ୍ଗରାଜ ନିଃଶଙ୍କ ଦେଓ ୧୩୮୯ ଖ୍ରୀଷ୍ଟାବ୍ଦରେ ରାଜ୍ୟ ହରାଇ ପ୍ରାୟ ୧୨ ବର୍ଷ ଶ୍ୱଶୁର ଘରେ ବାସ କରିଥିଲେ ।

ନରସିଂହ ଦେବ ଯେତେବେଳେ ସୈନ୍ୟ ସାମନ୍ତ ସହ ରାଜ୍ୟଜୟ କରିବାକୁ ବାହାରିଥିଲେ । କେତେ ରାଜା ମିତ୍ରପଣ ଦେଖାଇଲେ ଓ ଆଉ କେତେ ରାଜା ଯୁଦ୍ଧରେ ପରାସ୍ତ ହୋଇ ଆତ୍ମ ସମର୍ପଣ କରିଥିଲେ । ଦିନକର ଘଟଣା ନରସିଂହ ଦେବ ଯୁଦ୍ଧ କ୍ଷେତ୍ରରେ ତୃଷିତ ହୋଇ ପଡ଼ିଲେ । କୁଳମଣି ତାଙ୍କୁ ବନସ୍ଥିତ ଅଁଳାକୋଳି ଖୁଆଇ ତୃଷା ନିବାରଣ କରାଇଥିଲେ । ନରସିଂହ ଦେବ ଅଁଳାକୋଳି ଖାଇ ପରମ ସନ୍ତୋଷ ଲାଭକରି ସେହିଦିନ ଠାରୁ କୁଳମଣିଙ୍କୁ କୋଳି ସାମନ୍ତ ସିଂହାର ପଦରେ ଭୂଷିତ କରି ଖାଡ଼ୀ ପ୍ରଦାନ କରିଥିଲେ ।

କୁଳମଣି ମଙ୍ଗରାଜ ନିଃଶଙ୍କ ଦେଓ ସର୍ବଦା ନିଜରାଜ୍ୟ ଅଷ୍ଟଦୁର୍ଗ ଓ ଜଗୁମାର୍ଥୀ କଥା ଚିନ୍ତା କରୁଥାନ୍ତି । ଦିନେ କୁଳମଣି ଘୋଷଣା କଲେ ଯେଉଁ ବ୍ୟକ୍ତି କଣା ଜଗୁମାର୍ଥୀର କଣ୍ଠାମୁଣ୍ଡ ଆଣି ତାଙ୍କୁ ଦେବ ସେ ତାକୁ ସ୍ୱର୍ଣ୍ଣରେ ଭୂଷଣ କରିଦେବେ । ଏପରି ସ୍ଥିରକରି ସୈନ୍ୟ ସହ ଅଷ୍ଟଦୁର୍ଗକୁ ଗମନ କଲେ । କଣା ଜଗୁମାର୍ଥୀ ସାମନ୍ତ ସଙ୍ଗେ ଭୀଷଣ ଯୁଦ୍ଧହେଲା । ଯୁଦ୍ଧରେ ଜଗୁମାର୍ଥୀ ସାମନ୍ତଙ୍କୁ ପରାସ୍ତ କରି ତାର ମୁଣ୍ଡ କାଟିଥିଲେ । ଦୁଃଖର ବିଷୟ ଏହିପରି ଅଷ୍ଟଦୁର୍ଗର ରାଜ କର୍ମଚାରୀ ଓ ପ୍ରଜାମାନେ ଜଗୁମାର୍ଥୀ ଠାରୁ ଧନରତ୍ନ ପାଇ ନିଜ ରାଜ୍ୟର ରାଜା କୁଳମଣିଙ୍କ ସହିତ ଯୁଦ୍ଧ କରିବାକୁ କୁଣ୍ଠାବୋଧ କରିନଥିଲେ । ସେହି ଦିନ ଅଷ୍ଟଦୁର୍ଗ ପ୍ରଜା ଓ ରାଜ କର୍ମଚାରୀ ଅବିଶ୍ୱାସୀ ରୂପେ ପରିଗଣିତ ହୋଇଥିଲେ । ଅଷ୍ଟଦୁର୍ଗର ପ୍ରଜା ଓ ରାଜ କର୍ମଚାରୀମାନଙ୍କ ନିକଟରେ ଧର୍ମାଧର୍ମର କୌଣସି ବିଚାର ନାହିଁ ବୋଲି ଜାଣି ରାଜା କୁଳମଣି ଦୁଃଖ କରିଥିଲେ । କୁଳମଣି ନିଃଶଙ୍କ ଦେଓ କଣା ଜଗୁମାର୍ଥୀ ସାମନ୍ତଙ୍କୁ ହତ୍ୟାକରି ପୁନଶ୍ଚ ଅଷ୍ଟଦୁର୍ଗରେ ରାଜା ହୋଇଥିଲେ । ତାପରେ ରାଣୀ ସୀତା ଦେବୀଙ୍କୁ ବାରବାଟୀ ଦୁର୍ଗରୁ ଅଷ୍ଟଦୁର୍ଗକୁ ଆଣିଥିଲେ । ଏହା ୧୪୦୧ ଖ୍ରୀଷ୍ଟାବ୍ଦର ଘଟଣାବଳୀ । କୁଳମଣି ୫୮ ବର୍ଷ ସୁନାମରେ ରାଜ୍ୟ ଶାସନ କରିଥିଲେ ।

୧୪୩୫ ଖ୍ରୀଷ୍ଟାବ୍ଦରେ ଗଜପତି ନରସିଂହ ଦେବଙ୍କ ବିୟୋଗ ହୋଇଥିଲା । ପୁତ୍ରସନ୍ତାନ ନଥିବାରୁ ମୃତ୍ୟୁପରେ ମନ୍ତ୍ରୀଙ୍କ ଚେଷ୍ଟାରେ ସୂର୍ଯ୍ୟ

ବଂଶଜ ଶ୍ରୀ କପିଳେଶ୍ୱର ଦେବ ରାଜ୍ୟଭାର ଗ୍ରହଣ କରିଥିଲେ । ନରସିଂହ ଦେବଙ୍କ ମୃତ୍ୟୁର ଅଷ୍ଟମ ବର୍ଷ ପରେ ୧୪୪୩ ଖ୍ରୀଷ୍ଟାବ୍ଦରେ ବଙ୍ଗ ସୁଲତାନ ମହାବଳୀ ନାସିରୁଦ୍ଦିନ କପିଳେଶ୍ୱରଙ୍କ ସହିତ ଯୁଦ୍ଧ ଆରମ୍ଭ କରିଥିଲେ । ସେହି ଯୁଦ୍ଧରେ ଗଜପତି କପିଳେଶ୍ୱର ନିଜର ପରାକ୍ରମ ଦେଖାଇ ବଙ୍ଗ ସୁଲତାନଙ୍କ ଠାରୁ ଉଦୟଗିରି ଓ ଚନ୍ଦ୍ରଗିରି ଜୟକରି ନିଜ ରାଜ୍ୟ ଅନ୍ତର୍ଭୁକ୍ତ କରାଇଥିଲେ । ଯୁଦ୍ଧରେ ଜୟୀ ହୋଇ ରାଜ୍ୟକୁ ଫେରିଲା ବେଳେ ବନ୍ଧୁ ରାଜ୍ୟ ମନେକରି କପିଳେଶ୍ୱର ଦେବ ଅଷ୍ଟଦୁର୍ଗ ଆଗମନ କରିଥିଲେ । ଏହି ଖବର ପାଇ କୁଳମଣି ମଙ୍ଗରାଜ ନଃଶଙ୍କ ଦେଓ କପିଳେଶ୍ୱରଙ୍କୁ ଦୂରରୁ ପାଛୋଟି ଆଣିଥିଲେ । କପିଳେଶ୍ୱର ଅଷ୍ଟଦୁର୍ଗରେ କିଛିଦିନ ରହିଥିଲେ । ଏହି ଅବସରରେ କୁଳମଣି ନିଜ କନ୍ୟା ରତ୍ନମଣି ସହିତ କପିଳେଶ୍ୱରଙ୍କ ବିବାହ କାର୍ଯ୍ୟ ସମାପନ କରି ଦେଇଥିଲେ । ୧୪୬୦ ଖ୍ରୀଷ୍ଟାବ୍ଦରେ କୁଳମଣି ମଙ୍ଗରାଜ ନଃଶଙ୍କ ଦେଓଙ୍କ ଦେହାନ୍ତ ହୋଇଥିଲା ।

## ଦଶମ ରାଜା ଗୋପାଳକୃଷ୍ଣ ମଙ୍ଗରାଜ ନିଃଶଙ୍କ ଦେଓ (୧୪୬୦-୧୪୬୩)—

କୁଳମଣି ମଙ୍ଗରାଜ ନଃଶଙ୍କ ଦେଓଙ୍କ ପରେ ତାଙ୍କର ପୁତ୍ର ଗୋପାଳ-କୃଷ୍ଣ ମଂଗରାଜ ଅଭିଷେକ ହୋଇ ରାଜ୍ୟ ପରିଚାଳନା କରିଥିଲେ । ଗୋପାଳକୃଷ୍ଣ ୧୮ ବର୍ଷ ବୟସରେ ଖଡ଼ସିଂହ ନରେଶ ବଳଆରସିଂହଙ୍କ କନ୍ୟାଙ୍କୁ ବିବାହ କରିଥିଲେ ଏବଂ ଜାକିଷ୍ଟ ଭାଇ ବିକ୍ରମ ସିଂହ ୨୫ ବର୍ଷ ବୟସରେ ବାସୁଦେବ ଭଞ୍ଜଙ୍କ କନ୍ୟା ଓ ଖଲିକୋଟ ମଦନମୋହନ ଦେଓଙ୍କ କନ୍ୟା ସହିତ ବିବାହ କରିଥିଲେ । ଗୋପାଳକୃଷ୍ଣ ୧୪୬୦ ଠାରୁ ୧୪୬୩ ତିନି ବର୍ଷ ରାଜ୍ୟ ପରିଚାଳନା କରିଥିଲେ । ତାଙ୍କର କୌଣସି ସନ୍ତାନ ନଥିଲେ । ଗୋପାଳକୃଷ୍ଣ ମଂଗରାଜ ନିଃଶଙ୍କ ଦେଓ ତାଙ୍କ ଶାସନ ସମୟରେ ମଂଗରାଜ ନାମରେ ଏକ ବିରାଟ ପୋଖରୀ ଖୋଳାଇଥିଲେ । ଗୋପାଳକୃଷ୍ଣ ରୋଗାଗ୍ରସ୍ଥ ରହି ଜନ୍ମୋତ୍ସର୍ଗ ନକରି ୩୧ ବର୍ଷ ବୟସରେ ମୃତ୍ୟୁବରଣ କରିଥିଲେ ।

## ଏକାଦଶ ରଜା–ବକ୍ରମ ସାମନ୍ତସିଂହାର ଦେଓ (୧୪୭୩-୧୫୧୮)—

ଗୋପାଳକୃଷ୍ଣଙ୍କ ନଧନ ପରେ କନଷ୍ଠ ଭାଇ ବକ୍ରମସିଂହ ସିଂହାସନ ଆରୋହଣ କରିଥିଲେ । ନାମାନୁସାରେ ବକ୍ରମସିଂହ ବଡ଼ ପରକ୍ରମୀ, ଚତୁର ବୁଦ୍ଧିମାନ ଓ ସୁନ୍ଦର କୁମାର ଥିଲେ । ବକ୍ରମ ସିଂହ ଖଲଡ଼ ମୁଠା, ବଣଡ଼ା ମୁଠା, ଚଙ୍କାଳ ଓ ପୋଲସର ପ୍ରଭୃତ ଅଞ୍ଚଳର ଦାୟିତ୍ୱ ନଜ ତତ୍ତ୍ୱାବଧାନରେ ରଖିଥିଲେ । ସେ ଅଶ୍ୱଶାଳ, ଖେଳଘର ନର୍ମାଣ କରାଇଥିଲେ । ଉପଯୁକ୍ତ ଉପହାର ସହ ପୁରୀ ଗଜପତଙ୍କୁ ସାକ୍ଷାତ କରବାକୁ ଯାଇଥିଲେ । ପୁରୀରେ ପହଞ୍ଚ ଶ୍ରୀ ଜଗନ୍ନାଥ ଠାକୁରଙ୍କ ଦର୍ଶନ ପରେ ଠାକୁର ରଜାଙ୍କୁ ଭେଟି ଦେଇ ଦର୍ଶନ କରଥିଲେ । ଗଜପତଙ୍କ ନକଟରେ ପିତାଙ୍କ ବୟୋଗ ଓ ଦୁଇ ଭାଇଙ୍କ ବିୟୋଗ କଥା ପ୍ରକାଶ କର ନଜେ ରଜ୍ୟ ପରଚାଳନା କରବା କଥା ଜଣାକଲେ । ଗଜପତ ସମସ୍ତ ଘଟଣା ଶୁଣିବା ପରେ ତାଙ୍କୁ ସାମନ୍ତସିଂହାର ଉପାଧିରେ ଭୂଷିତ କର ଶାଢ଼ୀ ବାନ୍ଧ ଦେଇଥିଲେ । ସେତେବେଳକୁ ବକ୍ରମ ସାମନ୍ତସିଂହାରଙ୍କୁ ୫୮ ବର୍ଷ ହୋଇଥିଲ । ବକ୍ରମ ସିଂହ ନଜରଜ୍ୟକୁ ଫେର ସୁଖରେ ପ୍ରଜାଙ୍କୁ ପାଳନ କରଥିଲେ । ୧୫୧୮ ଖ୍ରୀଷ୍ଟାବ୍ଦରେ ବକ୍ରମ ସାମନ୍ତସିଂହାର ଦେଓଙ୍କ ମୃତ୍ୟୁ ହୋଇଥିଲ । ଏହାଙ୍କର ଗୋପୀନାଥ ନାମରେ ଗୋଟିଏ ପୁତ୍ରଥିଲେ ।

## ଦ୍ୱାଦଶ ରଜା ଗୋପୀନାଥ ହରଚନ୍ଦନ ଦେଓ (୧୫୧୮-୧୫୭୭)—

ବକ୍ରମ ସାମନ୍ତସିଂହାରଙ୍କ ପରେ ପୁତ୍ର ଗୋପୀନାଥ ୧୫୧୮ ଖ୍ରୀଷ୍ଟାବ୍ଦରେ ଯୁବରଜ ରୂପେ ରଜ୍ୟଭାର ବହନ କରଥିଲେ । ଏହାର ସାତ ବର୍ଷ ପରେ ୧୫୨୫ ଖ୍ରୀଷ୍ଟାବ୍ଦରେ ଶକଟି ବଶ୍ୱନାଥ ରାଉତରାୟଙ୍କର କନ୍ୟା ସହତ ବବାହ ହୋଇଥିଲେ । ସେତେବେଳକୁ ଗୋପୀନାଥଙ୍କୁ ୩୧ ବର୍ଷ ହୋଇଥିଲ । କଛୁଦନ ସୁଖରେ ରାଜକାର୍ଯ୍ୟ ଚଳାଇବା ପରେ ଉପଯୁକ୍ତ ଉପହାର ସହ ପୁରୁଷୋତ୍ତମ ଶ୍ରୀ ଜଗନ୍ନାଥ ଦର୍ଶନକୁ ଯାତ୍ରା କରଥିଲେ ;

ପୁରୀରେ ପହଞ୍ଚି ଶ୍ରୀ ଜଗନ୍ନାଥ ଓ ସକଳ ଦେବାଦେବୀଙ୍କୁ ଦର୍ଶନ କରି ଗଜପତିଙ୍କୁ ସାକ୍ଷାତ କରି ଉପହାର ପ୍ରଦାନ କରିଥିଲେ । ଗଜପତିଙ୍କ ନିକଟରେ ରାଜ୍ୟର ସମସ୍ତ ଘଟଣା ଅବଗତ କରାଇଲେ । ଗୋପୀନାଥଙ୍କ ଚତୁରତା, ଧୀରମତି, ପରାକ୍ରମ, ସାହସ ଓ ଜ୍ଞାନଗାରିମାକୁ ଉପଲବ୍ଧି କରି ଉତ୍କଳ ଗଜପତି ଗୋପୀନାଥ ହରିଚନ୍ଦନ ନାମରେ ସନନ୍ଦ ପ୍ରଦାନକରି ଶାଢ଼ୀ ବାନ୍ଧିଥିଲେ । ଏହା ସହିତ ଗରୁଡ଼ ଗୋବିନ୍ଦ ନାମକ ଦୁଇଗୋଟି ହାସ, ଚନ୍ଦ୍ରସୂର୍ଯ୍ୟ ନାମକ ତରାମ ଓ ଗୃହିମୁଠା ଚଅଁର, ଦୁଇଟି ନିଶାଣ, ଚନ୍ଦ୍ରସୂର୍ଯ୍ୟର ଆଲଟ, ଦୁଇଟି ବୀରବଂଶୀ, ସମୋଗ ଶିରପା, ସାଲୁ ପତାକା ଓ ଅଶ୍ୱର ଶିରୋପା ଇତ୍ୟାଦି ଅର୍ପଣ କରି ହରିଚନ୍ଦନ ପଦବୀରେ ଭୂଷିତ କରିଥିଲେ । ଗୋପୀନାଥ ହରିଚନ୍ଦନ ପୁରୀରୁ ବିଦାୟ ନେଇ ରାଜନୀତି ଓ ରଣ କୌଶଳ ଶିକ୍ଷା କରିବା ନିମନ୍ତେ ବାଘେଇ ବଂଶଜ ନାରାୟଣ ଦେବଙ୍କୁ ସରଦାର ରୂପେ ନିଯୁକ୍ତ କରି ଶାଢ଼ୀ ବାନ୍ଧି ଦେଇଥିଲେ । ନାରାୟଣ ଦେବ ଗୋପୀନାଥଙ୍କ ଗୌରବରେ ସନ୍ତୋଷ ହୋଇ ତାଙ୍କୁ ଉପଯୁକ୍ତ ଶିକ୍ଷା ଓ ରଣକୌଶଳ ପ୍ରଦାନ କରିଥିଲେ । ଏତଦ୍ ବ୍ୟତୀତ ମହାଇନ୍ଦ୍ରଜାଲିକ, ଶାବେର ଗୁଣି ବିଦ୍ୟା, ଭୋଜ ବିଦ୍ୟା, ଯୁଦ୍ଧ ବିଦ୍ୟା, କୌତୁକ ବିଦ୍ୟା, ରଙ୍ଗଖେଳ, ବ୍ୟୂହର ସଂଗଠନ ଓ ଚତୁର୍ଯ୍ୟ ବୁଦ୍ଧିବଳ ଇତ୍ୟାଦି ସମସ୍ତ ବିଦ୍ୟା ଶିକ୍ଷା ଦେଇଥିଲେ । ଗୋପୀନାଥ ସକଳ ବିଦ୍ୟାରେ ପାରଙ୍ଗମ ହେବାରୁ ତାଙ୍କୁ ଅନ୍ୟ ରାଜାମାନେ ଭୟ କରୁଥିଲେ । ଗୋପୀନାଥ ହରିଚନ୍ଦନ ରାଜ୍ୟର ପ୍ରତ୍ୟେକ ଗ୍ରାମ ଶେଷରେ ଗୋଟିଏ ଗୋଟିଏ ଆଖଡ଼ା ଘର ନିର୍ମାଣ କରାଇ ସେଠାରେ ଗ୍ରାମର ଯୁବକମାନଙ୍କୁ ଯୁଦ୍ଧ ବିଦ୍ୟା ଶିକ୍ଷା ଦେବାର ବ୍ୟବସ୍ଥା କରାଇ ଦେଇଥିଲେ । ଗୋପୀନାଥ ହରିଚନ୍ଦନ ସୂକ୍ଷ୍ମରେ ରାଜ୍ୟ ପାଳନ କରି ପ୍ରଜାଙ୍କର ପ୍ରିୟପାତ୍ର ହୋଇ ପାରିଥିଲେ ।

ସେ କିଛି ଦିନ ପରେ ଉପଯୁକ୍ତ ସ୍ଥାନରେ ରାଜ୍ୟର ସୁରକ୍ଷା ପାଇଁ ଗୋଟିଏ ନୂତନ ଦୁର୍ଗ ନିର୍ମାଣ କରିବା ପାଇଁ ଚିନ୍ତା କରୁଥିଲେ । ଉକ୍ତ ଦୁର୍ଗ ପାଇଁ ଉପଯୁକ୍ତ ସ୍ଥାନ ନିର୍ବାଚନ କରିବାକୁ ସରଦାର ନାରାୟଣ ଦେବଙ୍କୁ ଅନୁରୋଧ କରିଥିଲେ । ସ୍ଥାନଟି ଏପରି ହୋଇଥିବ ଯେଉଁ ସ୍ଥାନକୁ ସହଜରେ ଶତ୍ରୁ ସୈନ୍ୟ ଭିତରକୁ ପ୍ରବେଶ କରିପାରିବେ ନାହିଁ । ସରଦାର ନାରାୟଣ

ଦେବ ରାଜ୍ୟର ସବୁ ସ୍ଥାନ ବୁଲି ଦେଖିଥାନ୍ତି । ସେ ମନେ ମନେ ଚିନ୍ତାକରି ଶେଷରେ ରାଜାଙ୍କୁ କହିଲେ, "ସ୍ୱାମୀ ! ନୂତନ ଦୁର୍ଗ ପାଇଁ ଗୋଟିଏ ଉପଯୁକ୍ତ ସ୍ଥାନ ଅଛି । ମୁଁ ଦିନେ ପଶ୍ଚିମ ଦିଗକୁ ଯାଉ ଯାଉ ଏଠାରୁ ଅଳ୍ପ ଦୂରରେ ଗୋଟିଏ ପର୍ବତ ଦେଖିଲି, ତାହାର ନାମ ଭରାଣ୍ଡି ଚୂଳିଆ । ଏହି ଭରାଣ୍ଡି ଚୂଳିଆର ଗୁହାତଳେ ଏକ ସୁବିସ୍ତୀର୍ଣ୍ଣ ସ୍ଥଳଭୂମି ରହିଅଛି । ପୂର୍ବ, ଉତ୍ତର ଓ ଦକ୍ଷିଣ ତିନି ଦିଗରେ ତିନିଗୋଟି ଉଚ୍ଚ ପର୍ବତ ଆକାଶକୁ ଛୁଇଁଲି ପରି ଦେଖି ରହିଛି । ପଶ୍ଚିମ ଦିଗରେ ଏକ କୁଦ ଅବସ୍ଥିତ । ଯେଉଁ ମଧ୍ୟକୁ ସହଜରେ କୌଣସି ଶତ୍ରୁ ପ୍ରବେଶ କରି ପାରିବ ନାହିଁ । ବିଶେଷତଃ ସେ ସ୍ଥାନର ମାହାତ୍ମ୍ୟ ଏପରି ଯେ ସେଠାକାର ଠେକୁଆ ଆମ କୁକୁରକୁ ଭୟ ନକରି ନିର୍ଭୟରେ ବୁଲି ପାରୁଛନ୍ତି ଏବଂ ଠେକୁଆମାନେ କୁକୁର ଉପରକୁ ମାଡ଼ି ଆସନ୍ତି । ଆମ କୁକୁର ନିରୂପାୟ ହୋଇ ଚାହିଁ ରହିଥାଏ । ସେଠାକାର ପ୍ରାକୃତିକ ଦୃଶ୍ୟ ଅତିବ ମନୋହର । ଏପରି ନିରାପଦ ସ୍ଥାନରେ ଦୁର୍ଗ ନିର୍ମାଣ କଲେ ଶତ୍ରୁ ଉପଦ୍ରବରୁ ସହଜରେ ରକ୍ଷା ମିଳିବ । ଦକ୍ଷିଣ ପଶ୍ଚିମ କୋଣରେ ଏକ ଗଡ଼ ଘାଇ ଖୋଳିବାକୁ ହେବ । ବର୍ତ୍ତମାନ ସେହି ସ୍ଥାନରେ ଦୁଇଟି ଦୁଷ୍ଟ କନ୍ଧ ପ୍ରତିଦିନ ଭ୍ରମଣ କରୁଛନ୍ତି । ସେମାନେ ଭରାଣ୍ଡୀ ନାମକ ଠାକୁରାଣୀଙ୍କୁ ସର୍ବଦା ସେବା ପୂଜା କରି ଠାକୁରାଣୀଙ୍କ ପ୍ରସାଦରୁ ପ୍ରଚଣ୍ଡ ଓ ଚିରଞ୍ଜୀବୀ ହୋଇ ରହିଛନ୍ତି । ସେହି କନ୍ଧମାନଙ୍କୁ ଯୁଦ୍ଧରେ ପରାସ୍ତ କରି ପାରିଲେ ସେହି ସ୍ଥାନରେ ଆମେ ନୂତନ ଦୁର୍ଗ ନିର୍ମାଣ କରିପାରିବା ଏବଂ ବାହ୍ୟଶତ୍ରୁ ଭୟ ଦୂରହେବ । ସେହି କନ୍ଧ ଦୁଇଭାଇ ଯେଉଁ କନକମୟ ଭରାଣ୍ଡୀ ଠାକୁରାଣୀଙ୍କ ମସ୍ତକ ଉପରେ ବିଭିନ୍ନ ପ୍ରକାର ଉପଚାର ଦେଇ ପୂଜା କରୁଛନ୍ତି ସେ ଠାକୁରାଣୀ ହେଉଛନ୍ତି ଆମ ବଂଶର ଇଷ୍ଟଦେବୀ । ଏଣୁ ସେମାନଙ୍କୁ ପରାଜୟ କରିବା ଆମପକ୍ଷେ ସହଜ ହୋଇ ପାରିବ ।

ସର୍ଦ୍ଦାର ନାରାୟଣ ଦେବଙ୍କ ଠାରୁ ଏପରି ସମସ୍ତ ଘଟଣା ଶୁଣି ଗୋପୀନାଥ ହରିଚନ୍ଦନ ସେହି ସ୍ଥାନଟିକୁ ଦେଖିବାକୁ ଆଗ୍ରହ ବଢାଇଲେ । କିଛିଦିନ ପରେ ଆଶ୍ୱିନ ମାସ ଦେବୀ ପର୍ବ ପହଞ୍ଚିଲା । ଗୋପୀନାଥ ହରିଚନ୍ଦନ ଶରତକାଳୀନ ମା ଦୁର୍ଗାଙ୍କ ଷୋଡ଼ଶ ଦିନ ପୂଜା ପାଇଁ ଇଚ୍ଛା

ପ୍ରକାଶ କଲେ । ମା ଦୁର୍ଗାଙ୍କ ମନ୍ଦିରକୁ ସୁନ୍ଦର ଭାବେ ସାଜସଜା କରାଗଲା । ନୈଷ୍ଠିକ ବ୍ରାହ୍ମଣମାନଙ୍କୁ ଆମନ୍ତ୍ରଣ କରି ଚଣ୍ଡି ସ୍ତୋତ୍ର ମନ୍ତ୍ର ଜପ ପାଠ କରାଗଲା । ଏହିପରି କିଛିଦିନ ପୂଜା ପାଠ ପରେ ଦିନେ ପ୍ରଭାତରୁ ରାଜା ଗୋପୀନାଥ ଦେବ ଧାର୍ମିକ କର୍ମ ସମାପନ କରି ସର୍ଦ୍ଦାର ନାରାୟଣ ଦେବଙ୍କ ସହିତ ପାରିଧିକୁ ବିଜେକଲେ । ରାଜ୍ୟର ପଶ୍ଚିମ ଦିଗକୁ ଯାତ୍ରା କଲେ । ଯାତ୍ରା କିଛି ସମୟ ପରେ ଉତ୍ତରାଣ୍ଡି ଶୁଳିଆ ପାହାଡ଼ ନିକଟରେ ସେହି ପର୍ବତ ପାଦ ଦେଶରେ ଏକ ଝରଣା କଳକଳ ନାଦରେ ପ୍ରବାହିତ ହୋଇ ବନଭୂମିରେ ପ୍ରତିଶବ୍ଦ ସୃଷ୍ଟି କରୁଥିବା ଶୁଣିଲେ । ସେହି ଝରଣାର ନାମ ଅଶୋକ ନାଳ ବା ଯାମନାଳ । ଯାମନାଳ ପାର୍ଶ୍ୱସ୍ଥ ଏକ ବିରାଟ ଆମ୍ବଗଛ ମୂଳରେ ରାଜା ଗୋପୀନାଥ ସୈନ୍ୟ ସାମନ୍ତଙ୍କ ସହ ପହଞ୍ଚିଲେ । ସେହି ଆମ୍ବଗଛର ନାମଥିଲା ଅଳସୁଆ ବୃକ୍ଷ । କାରଣ ଯେ କୌଣସି ବ୍ୟକ୍ତି ସେହି ବୃକ୍ଷମୂଳରେ ପହଞ୍ଚିଲେ ସେଠାରେ ବିଶ୍ରାମ ନେବାକୁ ବାଧ୍ୟ ହୁଅନ୍ତି । ସେଠାରେ କିଛି ସମୟ ବସିଲା ପରେ କ୍ଲାନ୍ତି ଉପଶମ ହୁଏ । ତେଣୁ ସେହି ଆମ୍ବ ଗଛର ନାମ ଅଳସଦାୟୀ ବା ଲୋକେ ଅଳସୁଆ ଗଛ ବୋଲି କହନ୍ତି । ରାଜା ଗୋପୀନାଥ ସେହି ବୃକ୍ଷ ମୂଳରେ ପହଞ୍ଚି ବିଶ୍ରାମ ନେଲେ ।

ସେହି ପର୍ବତ ପାର୍ଶ୍ୱରେ ଲଙ୍ଗଳ ବେଣିଆ ନାମକ ଦୁଇଗୋଟି ଆମ୍ବ ଗଛ ବର୍ତ୍ତମାନ ସୁଦ୍ଧା ରହିଅଛି । ସେହି ବୃକ୍ଷର ଅନତି ଦୂରରେ ଲଙ୍ଗଳିଆ ଓ ବେଣିଆ ନାମକ କନ୍ଧ ଦୁଇଭାଇ ବହୁତ ଦିନ ଆଗରୁ ସେଠାରେ ବାସକରି ରହିଥାନ୍ତି । ଗୋପୀନାଥ ହରିଚନ୍ଦନ ସହିତ ସୈନ୍ୟ ସାମନ୍ତକୁ ଦେଖି ସେ ଦୁଇ ଭାଇଙ୍କ ମନରେ ସନ୍ଦେହ ଜାତହେଲା । ମନେ ମନେ ଭୀଷଣ ରାଗିଯାଇ କାଠରେ ନିର୍ମିତ ଧନୁ ଓ ଶରକୁ ସଜାଡ଼ି ଗୋପୀନାଥ ହରିଚନ୍ଦନଙ୍କ ନିକଟରେ ଉପସ୍ଥିତ ହେଲେ । ରାଜା ଗୋପୀନାଥ ସେ ଦୁହିଁଙ୍କ ରୂପକୁ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ସେମାନଙ୍କର ପିଙ୍ଗଳବର୍ଣ୍ଣ କେଶ, କଳାବର୍ଣ୍ଣ ଶରୀର, ଲମ୍ବ ଓ ମୋଟାଦେହ, ଓଷ୍ଠର ତଳ ଦେଶରେ ଅଳ୍ପ ଦାଢ଼ି, ଲମ୍ବା ଲମ୍ବା କାନ ଓ ପିଙ୍ଗଳବର୍ଣ୍ଣ ଚକ୍ଷୁ, ଲଙ୍ଗୁଳାଟି ଖଣ୍ଡିଏ ଖଣ୍ଡିଏ ଅଣ୍ଟାରେ ଭିଡ଼ିଛନ୍ତି, ରୂପାରେ ନିର୍ମିତ କଙ୍କଣ ହାତରେ ପିନ୍ଧିଛନ୍ତି ଏବଂ ନିର୍ଭୟରେ ସେହି ଜଙ୍ଗଲ ମଧ୍ୟରେ ଭ୍ରମଣ କରୁଛନ୍ତି । ଏପରି ବେଶ

ଦେଖି ରାଜା ସର୍ଦ୍ଦାର ନାରାୟଣ ଦେବଙ୍କ ଠାରୁ ସେମାନଙ୍କ ବିଷୟରେ ଜାଣିବାକୁ ଇଚ୍ଛା ପ୍ରକାଶ କରିଥିଲେ ।

ସର୍ଦ୍ଦାର କହିଲେ, "ପ୍ରଭୁ ! ଏ ଦୁହେଁ ହେଉଛନ୍ତି ସେହି ଲଙ୍ଗଳିଆ ବେଣିଆ ଜାତି ଦୁଇଭାଇ, ଏମାନେ ନିଶ୍ଚୟ ଆମ ସହିତ ଯୁଦ୍ଧ କରିବେ, ଆପଣ ସଜାଗ ରହନ୍ତୁ ।" ଏପରି କଥା ସରେ ନସରେ ଦୁଇଭାଇ ଆସି ରାଜାଙ୍କ ନିକଟରେ ପହଞ୍ଚିଗଲେ । ରାଜାଙ୍କୁ କହିଲେ, "ତୁ କିଏ ? କାହିଁକି ଏଠାକୁ ବୀର ବେଶରେ ଆସିଛୁ ?" ଗୋପୀନାଥ ରାଜା କହିଲେ, "ତୁମେତ ଜାତିରେ ଜନ୍ତୁ ଏଣେ ବଣ ଜଙ୍ଗଲରେ ବୁଲୁଅଛ । ମୁଁ କିଏ ତୁମେ କିପରି ଜାଣିବ, ମୁଁ ଏହି ଅଷ୍ଟଦୁର୍ଗ ରାଜ୍ୟର ରାଜା । ମୃଗୟା ନିମନ୍ତେ ଏଠାକୁ ଆସିଅଛି, ତୁମେ ବାଧାପରି ମୋତେ କ'ଣ ପଚାରୁଛ ।" ଏହା ଶୁଣି ଲଙ୍ଗଳିଆ କହିଲା, "ଆମ ଦୁହିଁଙ୍କର ନାମ ଲଂଗଳିଆ ବେଣିଆ । ଏହି ଜଂଗଲ ମଧ୍ୟରେ ଆମେ ଘରକରି ରହିଅଛୁ । ଆମର ଏହି ସ୍ଥାନରେ କୌଣସି ବ୍ୟକ୍ତି କୌଣସି ଜନ୍ତୁ ମାରି ପାରିବ ନାହିଁ । ଆମର ବିନାନୁମତିରେ ଏ ଜଂଗଲରେ ପ୍ରବେଶ କଲେ ତାହାର ମୃତ୍ୟୁ ନିଶ୍ଚିତ । ଆମର ଅଜଣାରେ ଏହି ଜଂଗଲ ମଧ୍ୟରୁ କେହି ଫଳ କିମ୍ବା ଫୁଲ ଧରିଲେ ତାହାର ଆଖିକୁ ଦେଖାଯିବ ନାହିଁ, ଜ୍ଞାନଶୂନ୍ୟ ହୋଇ ମୂକ ହୋଇଯିବ । କୌଣସି ବ୍ୟକ୍ତି ଆମର ଚାରଣକୁ ଲଙ୍ଘନ କଲେ ସ୍ଥାଣୁ ବା ସ୍ତମ୍ଭିତ ହୋଇଯିବ । ହେଲେ ଆମକୁ ଆଶ୍ଚର୍ଯ୍ୟ ଲାଗୁଛି ତୁ ଆମର ଏହି ଅଞ୍ଚଳକୁ ଆସିଲୁ କିପରି ? ତୁ ନିଶ୍ଚୟ ଆମର ପର୍ଣ୍ଣବିଦ୍ୟା ଜାଣିଛୁ, ଏଣୁ ଏଠାକୁ ଆସି ପାରିଲୁ । ଆମେ ତୁମ ସମସ୍ତଙ୍କୁ ବନ୍ଦୀ କରି ମୋ ଇଷ୍ଟଦେବୀଙ୍କ ନିକଟରେ ବଳିଦେବୁ ।"

ଏପରି ଶୁଣି ରାଜା ଗୋପୀନାଥ କ୍ରୋଧରେ ଜଳିଉଠିଲେ । ଧନୁଶର ଧରି ଲଙ୍ଗଳିଆ ବେଣିଆ ଉପରକୁ ଶର ସନ୍ଧାନ କଲେ । ଲଙ୍ଗଳିଆ ବେଣିଆ ମଧ୍ୟ ନିଜନିଜର ଧନୁଧରି ତୀକ୍ଷ୍ଣ ଶର ରାଜାଙ୍କ ଉପରକୁ ନିକ୍ଷେପ କଲେ । ରାଜା ନିଜର ଆୟୁଧ ସାହାଯ୍ୟରେ ତାହାର ପ୍ରତିକାର କରନ୍ତି କିନ୍ତୁ ଲଙ୍ଗଳିଆ ବେଣିଆ ଉପରେ ରାଜାଙ୍କ ଶର ବାଜି ରୁଧିର ବାହାରେ ନାହିଁ । ଏପରି ଦୃଶ୍ୟ ଦେଖି ରାଜା ବିସ୍ମିତ ହୋଇଗଲେ । ସରଦାର

ନାରାୟଣ ଦେବ ଏଥିର ପ୍ରତିକାର ପାଇଁ ଯୁଦ୍ଧରୁ ବିରତ ରହି ଦୂରରୁ ନିରୀକ୍ଷଣ କରୁଥାନ୍ତି । କାରଣ ସେ ମଧ୍ୟ କନ୍ଧ ବିଦ୍ୟାରେ ପାରଙ୍ଗମ । ପ୍ରଥମେ ଯୁଦ୍ଧରେ ରାଜା କ୍ଲାନ୍ତ ଅନୁଭବ କଲେ ହେଲେ କରିବେ ବା କ'ଣ । ପୁଣି କନ୍ଧମାନଙ୍କ ଦ୍ଵାରା ପରାସ୍ତ ହେବା ଭୟ ଯୁଦ୍ଧରେ ବ୍ରତୀ ରହିଥାନ୍ତି । ଏଣେ ସରଦାର ନାରାୟଣ ଦେବ ଦୂରରେ ରହି ସାଧନାରତ ହୋଇଥିଲେ । ସାଧନାର ଅଳ୍ପ ସମୟ ପରେ କନ୍ଧମାନେ ଯୁଦ୍ଧରେ ପରାସ୍ତ ହୋଇଥିଲେ । ରାଜା ଗୋପୀନାଥ ସେମାନଙ୍କୁ ଶିଆଳି ନଇ ପଟରେ ବାନ୍ଧିଦେଲେ ।

ସରଦାର ନାରାୟଣ ଦେବ କନ୍ଧ ବିଦ୍ୟା ସାଧନରେ ନିପୁଣ ଥିବାରୁ ତାଙ୍କର ସାଧନାବଳରେ ରାଜା ଗୋପୀନାଥ ହରିଚନ୍ଦନ ଲଙ୍ଗଳିଆ ବେଣିଆଙ୍କୁ ପରାସ୍ତ କରି ପାରିଲେ । ଶେଷରେ ସେହି ଦୁଇଭାଇଙ୍କୁ ନେଇ ଭରାଣ୍ଡୀ ଠାକୁରାଣୀଙ୍କ ନିକଟରେ ବଳୀ ଦେବାପାଇଁ ସ୍ଥିର କଲେ । ବଳୀ ଦେବା ପୂର୍ବରୁ ରାଜା ସେମାନଙ୍କୁ ପଚାରିଲେ, "ତୁମର ଶେଷ ଇଚ୍ଛା ପ୍ରକାଶ କର ।"

ରାଜାଙ୍କ ଠାରୁ ଏପରି ଶୁଣି ଲଙ୍ଗଳିଆ ବେଣିଆ କହିଲେ, "ରାଜା ତୁ ଯେବେ ଆମକୁ ବଳୀଦେବୁ ତେବେ ଆମେ କହିବା ପ୍ରକାରେ କରିବୁ । ନଚେତ୍ ଆମକୁ ମାରିବା ତୋ ପକ୍ଷେ କଷ୍ଟହେବ ।" ସେମାନଙ୍କ କଥାରେ ରାଜା ସମ୍ମତି ପ୍ରକାଶ କରିବାରୁ ଲଙ୍ଗଳିଆ କହିଲେ, "ରାଜା ପ୍ରଥମେ ଆମ ବଂଶଧରଙ୍କ ଦ୍ଵାରା ଆମର ଇଷ୍ଟଦେବୀଙ୍କ ସେବାପୂଜା କରାଇବୁ ଏବଂ ଆମକୁ ବଳୀଦେବା ପରେ ଆମର କଟାମୁଣ୍ଡ ଦୁଇଟିକୁ ତୁ ଯେଉଁ ଦୁର୍ଗ ନିର୍ମାଣ କରିବୁ ତାର ଦ୍ଵାର ଦେଶରେ ରଖାଇଲେ ତୋର ଦୁର୍ଗ ମଧ୍ୟକୁ ଯିଏ ପ୍ରବେଶ କରିବ ପ୍ରଥମେ ଆମର ଦର୍ଶନ କରି ଭିତରକୁ ଆସିବ । ନଚେତ୍ ତୋର ସମସ୍ତ ପ୍ରକାର ଅମଙ୍ଗଳ ହେବ ।"

ରାଜା ଗୋପୀନାଥ ଓ ଲଙ୍ଗଳ ବେଣିଆଙ୍କ ମଧ୍ୟରେ ୧୫୪୨ ଖ୍ରୀଷ୍ଟାବ୍ଦରେ ଯୁଦ୍ଧ ହୋଇଥିଲା । କନ୍ଧ ଦୁଇ ଭାଇଙ୍କୁ ରାଜା ବଳୀ ଦେଇଥିଲେ ଏବଂ ସେମାନଙ୍କ ଶେଷ ଇଚ୍ଛା ପ୍ରକାରେ ଗଡ଼ ଦ୍ଵାରର ଦୁଇ ପାର୍ଶ୍ଵରେ ସେମାନଙ୍କ ପ୍ରତିମୂର୍ତ୍ତି ନିର୍ମାଣ କରାଇ ସ୍ଥାପନ କରିଥିଲେ ।

ଲଂଗଳିଆ ବେହିଆଙ୍କୁ ମାରିବା ପରେ ଗୋପୀନାଥ ହରିଚନ୍ଦନ ସେହି ଚଉଡ଼ା ସମଚ୍ଛାଦିତ ଅଞ୍ଚଳରେ ଦୁର୍ଗ ନିର୍ମାଣ ପାଇଁ ଶିଳ୍ପୀକାର ଡକାଇ ଶୁଭାରମ୍ଭ ମୁହୂର୍ତ୍ତ ଦେଖି ମାର୍ଗଶୀର ମାସ ଶୁକ୍ଳପକ୍ଷ ସପ୍ତମୀ ଶୁକ୍ରବାର ଶତଭିଷା ନକ୍ଷତ୍ରରେ ଶୁଭାରମ୍ଭ କରି ଦୁର୍ଗ ନିର୍ମାଣ କାର୍ଯ୍ୟ ସମାପନ କରିଥିଲେ । ଏହି ନୂତନ ଦୁର୍ଗର ନାମ ଲଂଗଳ ବେଣିଆ ନାମରେ ନାମିତ ହୋଇଥିଲା । ଲଂଗଳିଆ ବେଣିଆଙ୍କ ବଂଶଧର ଅଣାଇ ଭରାଣ୍ଡୀ ଠାକୁରାଣୀଙ୍କ ସେବାପୂଜା କରାଇଲେ । ସମସ୍ତ କାର୍ଯ୍ୟ ସମାପନ ହେବାପରେ ୧୬୫୬ ଖ୍ରୀଷ୍ଟାବ୍ଦରେ ନୂତନ ଦୁର୍ଗର ପ୍ରତିଷ୍ଠା କାର୍ଯ୍ୟ ସମାପନ କରାଯାଇଥିଲା । ସେତେବେଳକୁ ଗୋପୀନାଥ ହରିଚନ୍ଦନଙ୍କୁ ୭୬ ବର୍ଷ ହୋଇଥିଲା । ପ୍ରତିଷ୍ଠା ପରେ ପରେ ଖଲଡ଼ି ମୁଠା ଦୁର୍ଗରୁ ଲଂଗଳ ବେଣିଆ ଦୁର୍ଗକୁ ସ୍ଥାନାନ୍ତରିତ ହୋଇଥିଲା । ନୂତନ ଦୁର୍ଗରେ ରାଜା ଓ ରାଜପରିବାର ରାଜକର୍ମଚାରୀ ସମସ୍ତେ ସୁଖରେ ରହିଥିଲେ । ଗୋପୀନାଥ ହରିଚନ୍ଦନଙ୍କ ରଘୁନାଥ ଓ ଜନାର୍ଦ୍ଦନ ନାମରେ ଦୁଇଗୋଟି ପୁତ୍ରଥିଲେ ।

ଗୋପୀନାଥ ହରିଚନ୍ଦନ ଯେଉଁ ସ୍ଥାନରେ ଲଙ୍ଗଳ ବେଣିଆଙ୍କ ସହିତ ଯୁଦ୍ଧ କରିଥିଲେ ସେହି ସ୍ଥାନର ନାମ ହରିଚନ୍ଦନ ପାଇଁ ସ୍ମରଣ କରିବାକୁ ସେଠାରେ ଏକ ଶିବଲିଙ୍ଗ ପ୍ରତିଷ୍ଠା କରିଥିଲେ । ସେହି ଶିବଲିଙ୍ଗଙ୍କ ନାମ ରଖିଥିଲେ ଜମ୍ବେଶ୍ୱର । ଯାହାର ନାମ ଆଜି ଖୋଲ ମହାଦେବ ବା ବଣ ମହାଦେବ ବୋଲି ସୁପରିଚିତ । ହିନଥିଲା ଅଷ୍ଟଦୁର୍ଗ ରାଜାମାନେ ବାହାରକୁ ଯିବାକୁ ହେଲେ ଶ୍ରୀ ଜମ୍ବେଶ୍ୱରଙ୍କୁ ଦର୍ଶନ କରି ଯାଉଥିଲେ । ଜମ୍ବେଶ୍ୱରଙ୍କ ଆଶୀଷରୁ ଲଙ୍ଗଳ ବେଣିଆ ଦୁର୍ଗକୁ କୌଣସି ଶତ୍ରୁ ଆକ୍ରମଣ କରିପାରୁ ନଥିଲା । ଏଣେ ରାଜ୍ୟରେ ବର୍ଷାର ଅଭାବ ଦେଖାଦେଲେ ଜମ୍ବେଶ୍ୱରଙ୍କ ନିକଟରେ ଅଭିଷେକ କରି ପାୟସ ଭୋଗ କଲେ ଠାକୁର ସନ୍ତୁଷ୍ଟ ହେଉଥିଲେ ଓ ବର୍ଷା ହେଉଥିଲା । ସେହି ପ୍ରଥା ବର୍ତ୍ତମାନ ସୁଦ୍ଧା ଚାଲିଆସୁଛି । ଜମ୍ବେଶ୍ୱରଙ୍କ ପାଦଦେଶରେ ଅଶୋକ ନାଳ ବା ଯାନନାଳ ପ୍ରବାହିତ ହେଉଅଛି । ନାଳର ଅପର ପାର୍ଶ୍ୱରେ ଗୋଟିଏ ଗିରି ଗୁମ୍ଫା ରହିଅଛି ଯେଉଁଠାରେକି ତପସ୍ୱୀମାନେ ରହି ସାଧନା କରୁଥିଲେ । ବର୍ତ୍ତମାନ ସେହି ଗୁମ୍ଫା ମଧ୍ୟରେ ପ୍ରାୟ ୮ କିମ୍ବା ୧୦ ଜଣ ଲୋକ ସୁବିଧାରେ ରହି.

ପାରିବେ । ସେଠାରେ ବର୍ତ୍ତମାନ ମନ୍ଦିର ନିର୍ମାଣ କରାଯାଇ ଦୈନିକ ଭୋଗର ବ୍ୟବସ୍ଥା କରାଯାଇଅଛି । ତାହା ବର୍ତ୍ତମାନ ଏକ ଦର୍ଶନୀୟ ସ୍ଥାନରେ ପରିଣତ ହୋଇ ପାରିଛି । ଛୁଟି ଦିନମାନଙ୍କରେ ଶହ ଶହ ଲୋକ ନିର୍ଭୟରେ ଜଙ୍ଗଲ ମଧ୍ୟରେ ଥିବା ସେହି ଠାକୁରଙ୍କ ପାଖକୁ ଯାଇ ପ୍ରାକୃତିକ ସୌନ୍ଦର୍ଯ୍ୟ ଉପଭୋଗ କରନ୍ତି । ବାଟରେ ଯାଉ ଯାଉ ଚମ୍ପା ବଣ, କେତକୀ ବଣ, ନାଗେଶ୍ୱର ବଣ, ଚୂଆ ବଣ, କାଣ୍ଡିସର ବଡ଼ ବଡ଼ ଝୋଟା ଏବଂ ପାଣିଝରଣାଯୁକ୍ତ ଏକ ବଡ଼ ବଡ଼ ପ୍ରସ୍ତର ପ୍ରକୃତିର ଶୋଭା ଅତୀବ ରମଣୀୟ ଓ ଚିତ୍ତାକର୍ଷକ ଯୋଗୁଁ ଦର୍ଶକମାନଙ୍କୁ ଆକୃଷ୍ଟ କରିଥାଏ ।

ଗୋପୀନାଥ ହରିଚନ୍ଦନଙ୍କର ୧୫୭୭ ଖ୍ରୀଷ୍ଟାବ୍ଦରେ ମୃତ୍ୟୁ ହୋଇଥିଲା । ତାଙ୍କ ପରେ ଜ୍ୟେଷ୍ଠ ପୁତ୍ର ରଘୁନାଥ ଲଙ୍ଗଳ ବେଣିଆ ଦୁର୍ଗରେ ଅଭିଷେକ ହୋଇ ଅଷ୍ଟଦୁର୍ଗର ରାଜା ହୋଇଥିଲେ ।

## ତ୍ରୟୋଦଶ ରାଜା ରଘୁନାଥ ହରିଚନ୍ଦନ ଦେଓ (୧୫୭୭-୧୬୨୮)—

ରଘୁନାଥ ହରିଚନ୍ଦନ ଦେଓ ୧୭ ବର୍ଷ ବୟସରେ ରାଜ୍ୟ ଶାସନଭାର ଗ୍ରହଣ କରିଥିଲେ । ରଘୁନାଥ ଭାରି ଶାନ୍ତଶୀଳ ଓ ସୁଶିକ୍ଷିତ ଥିଲେ । ସେ ହିନ୍ଦୀ, ବଙ୍ଗଳା, ଓଡ଼ିଆ ଓ ଗୀର୍ବାଣୀ ଚାରିଗୋଟି ଭାଷା ଶିକ୍ଷା କରିଥିଲେ । ରଘୁନାଥ ମଢ଼ୁଆରାଜା ରାମଚନ୍ଦ୍ର ଦେବଙ୍କ କନ୍ୟାଙ୍କୁ ବିବାହ କରିଥିଲେ । ପିତାଙ୍କ ମୃତ୍ୟୁପରେ ରାଜକାର୍ଯ୍ୟ ପରିଚାଳନା କରି ସୁଖରେ ରହିଥିଲେ । ଏହାଙ୍କ ରାଜତ୍ୱର କିଛିଦିନ ପରେ ବଙ୍ଗ ନବାବ ମଲିକ ଖାନ୍ ସୈନ୍ୟ ସାମନ୍ତ ହାତୀ ଘୋଡ଼ା ସହ ସିବନ୍ଦୀ ଟଙ୍କା ଆଦାୟ କରିବା ପାଇଁ ବୁଲିବୁଲି ଆସି ଲଙ୍ଗଳ ବେଣିଆ ଦୁର୍ଗର ନୈଋତ କୋଣରେ ତମ୍ବୁ ପକାଇ ରହିଥିଲେ । ରଘୁନାଥଙ୍କ ନିକଟକୁ ସମଖାନ୍ଙ୍କ ହାରା ଖବର ପଠାଇଲେ । ରଘୁନାଥ ହରିଚନ୍ଦନ ଦେଓ ଦୂତକୁ ଉପଯୁକ୍ତ ସମ୍ମାନ ଦେଇ ସଙ୍ଗରେ ସୈନ୍ୟ ସାମନ୍ତ ଓ ସିବନ୍ଦୀ ଟଙ୍କା ନେଇ ନବାବ ମଲିକ ଖାନ୍ଙ୍କୁ ଦେଇଥିଲେ । ନବାବ ମଲିକ ଖାନ୍ ସନ୍ତୁଷ୍ଟ ହୋଇ ଅଷ୍ଟଦୁର୍ଗ ରାଜ୍ୟ ଓ

ରାଜାଙ୍କୁ ପ୍ରଶଂସା କରିଥିଲେ ଏବଂ ଘୋଡ଼ା ଓ ହାତୀ ଦୁଇଟି ପୁରସ୍କାର ଦେଇଥିଲେ । ନବାବ ନାଗିରା ପାହାଡ଼ ନିକଟରେ ବସାକରି ରହିଥିଲେ । ସେଠାକାର ଶିଳାଲିପି ଦେଖି ବିଶେଷ ଖୁସି ହୋଇଥିଲେ ।

## ନାଗିରା ପାହାଡ଼ ଓ ତାହାର ଖୋଦିତ ଶିଳାଲିପି—

ଜଙ୍ଗଲ ବେଷ୍ଟିଆ ଦୁର୍ଗର ଦକ୍ଷିଣ ଦିଗରେ ନାଗିରା ନାମକ ଏକ ଅରଣ୍ୟପୂର୍ଣ୍ଣ ପାହାଡ଼ ଯେଉଁଠାରେ କି ଦିନବେଳେ ମଧ୍ୟ ହିଂସ୍ରଜନ୍ତୁ ଭ୍ରମଣ କରୁଥିଲେ । ଏହି ପାହାଡ଼ର ନୈଋତ ଦିଗରେ ପ୍ରାୟ ୯ କିଲୋମିଟର ଦୂରରେ ବୋଦ୍ଧୁବଣୀ ଅର୍ଥାତ୍ ଅଞ୍ଜର ବୋଇରଣୀ ବା କଳ୍ପସୂର୍ଯ୍ୟ ନଗର ନାମକ ଏକ ଗ୍ରାମ ନଗର ଅବସ୍ଥିତ । ଏହାର ଈଶାନ୍ୟ କୋଣରେ ୧୬ କିଲୋମିଟର ଦୂରରେ କୋଦଳା ନାମକ କ୍ଷୁଦ୍ର ସହର ଅବସ୍ଥିତ । ନାଗିରା ପାହାଡ଼ ପ୍ରାୟ ପାଞ୍ଚରୁ ସାତ କିଲୋମିଟର ଜଙ୍ଗଲ ଦ୍ୱାରା ପରିବେଷ୍ଟିତ । ଏହିରି ଏହି ଜଙ୍ଗଲ ମଧ୍ୟରେ ଏକ ଶିଳାଲେଖ ଅବସ୍ଥିତ । ଏହି ଶିଳାର ଦୈର୍ଘ୍ୟ ୩ ଫୁଟ ଓ ପ୍ରସ୍ଥ ୨.୫ ଫୁଟ । ଏହି ଶିଳାରେ ଛବିଶି ଧାଡ଼ି ଅକ୍ଷର ଖୋଦିତ ହୋଇଅଛି । ତାହା ପୁଣି ତିନି ପ୍ରକାର ଭାଷାର ଅକ୍ଷର । ପ୍ରଥମ ପନ୍ଦର ଧାଡ଼ି ତେଲୁଗୁ ଅକ୍ଷର ଯୁକ୍ତ ସଂସ୍କୃତ ଶ୍ଳୋକ । ତାପରେ ନାଗିରୀ ଭାଷାରେ ଲିଖିତ ସଂସ୍କୃତ ଶ୍ଳୋକ ଓ ଅବଶିଷ୍ଟ ଓଡ଼ିଆ ଭାଷାରେ ଖୋଦିତ ଅକ୍ଷର ଦେଖାଯାଏ । ଏହି ଓଡ଼ିଆ ଲିପି ଓଡ଼ିଆ ବୀର ଜାତିର ଖୋଦିତ ଅକ୍ଷର ଅଟେ । ଏହି ଶିଳାଲିପିଟି ନଗର ଶେଷ ଗୁହାଟିରେ ଅବସ୍ଥିତ ଥିବାରୁ ଏହାକୁ ନାଗିରା ପାହାଡ଼ କୁହାଯାଉଥିଲା । ଏହି ଖୋଦିତ ଲିପି ଉପରେ କାଳିବୋଳା କାଗଜ ଛପାଇଲେ ଓଲଟା ଅକ୍ଷର ଦେଖାଯାଏ । ସେହି କାଗଜକୁ ପୁଣି ଦର୍ପଣରେ ଦେଖିଲେ ଠିକ୍ ଅକ୍ଷର ପଢ଼ିହୁଏ । ସେହି ଶିଳା ଖୋଦିତ ଅକ୍ଷରଗୁଡ଼ିକୁ ବିଭିନ୍ନ ଉପାୟରେ ସଂଗ୍ରହ କରାଯାଇ ଅଷ୍ଟଦୁର୍ଗ ରାଜମାଳାରେ ବର୍ଣ୍ଣନା କରାଯାଇଅଛି । ତାହାର ଯେଉଁ ଅଂଶ ଆଦୌ ଜଣାଯାଏ ନାହିଁ ତାହାକୁ × × × ଦ୍ୱାରା ଦର୍ଶାଇ ଦିଆଯାଇଅଛି ।

## ନାଗିଣ ପାହାଡ଼ ଖୋଦିତ ଶିଳାଲିପି ଧାଡ଼ି କ୍ରମରେ—

୧ । ଶ୍ରୀ ଗଣେଶାୟ ନମଃ, ମନୁଜ ମଣ୍ଡୁକ୍ୟ ଲିପି ।

୨ । ନମଃ ଶ୍ରୀ ପାଦଶାଶାସନେ ଓଡ୍ରୁ ତୈଲଙ୍ଗ ମଧ୍ୟ କ୍ଷିତିତଳେ ।

୩ । ଦୌରାନ ଦୁର୍ଗାଧିପଃ । ତଦ୍ଦୋର୍ଗ ବଧୂରଂ ଧରତ୍ରିଭୁ × × ।

୪ । ତେ ପ ସୈଦନ୍ଦ୍ୱସ୍ୟେ × × × ଶୂକରଲ୍ଲମୋହଣ ପରେତ –

୫ । ନମ୍ୟ ଧାସୀର୍ତ୍ତିଲଂ (୧) ଅବ ସିନ୍ଧୁ ଭଟା ନୃପମାର ଜାଙ୍ଗଲ ପଟ ତାଂ ।

୬ । ସର୍ବାକାନ୍ତଂ ମହିତେନେ ଶ୍ରୀମ ନୃସିଂହ ଭୂପଙ୍କଃ (୨) ଗଜପତି ଧରଣୀପ

୭ । କର୍ମତେ ସର୍ବାଦିଭୀମଃ । ସମର ବିଜୟ ଦଣ୍ଡଃ ସାର୍ଦ୍ଧ ଚନ୍ଦ୍ରାନୁଲଦ୍ଧଣଃ ।

୮ । ସକଳ ଗୁଣ ବଶିଷ୍ଟଃ ସର୍ବ ଲୋକା ଶ୍ରବମୁଖଃ । ଗଜପତି ନରସିଂହ ଦେବକେ ।

୯ । ବାବନାରଃ (୩) ଶ୍ରୀ ମହାବାହୁ ବଟଳେନ୍ଦ୍ର ଚନ୍ଦ୍ରାଙ୍କୁଳଜଃ ଶ୍ରୀ ସିଂହଭୂପ

୧୦ । ଲୋକେ ପୂଜ୍ୟା ରାଜମହେନ୍ଦ୍ର ମୁଖ୍ୟ ଧରଣୀ କଳିଙ୍ଗ ପୌରୁଷ୍ଟୈ

୧୧ । ସାମ୍ରାଜ୍ୟୋତ୍କଳ ଭୂଜୋ ଗଜପତେଃ ସିଂହାସନ ପାଳିତଃ ।

୧୨ । ଶ୍ରୀ ଶ୍ରୀ ଲଙ୍ଗଳବେଣୀ ପଶ୍ଚିମ ତଟେ ସ୍ଥିତା ତଟାକୋ କୃତ । (୪) ସିଂହସାଗର ନାମାୟଂ ତଟାକୋ ।

୧୩ । ଚନ୍ଦ୍ର ତାରକଂ ତଟାକୋ ଲଙ୍ଗଳବେଣ୍ୟାଂ ଚ ପଶ୍ଚିମ ସ୍ୟାସ୍ତିତେ ସ୍ଥିତଃ (୫) ଶାଳିବାହନ ।

୧୪ । ଭୂପସ୍ୟ ବିଳକ୍ଷନ୍ତେ ଶକସ୍ମମାଃ । ସହସ୍ରାର୍ଦ୍ଧଂ ପଞ୍ଚଶତ ସରାଙ୍ଗ ।

୧୫ । ଜ୍ୟେଷ୍ଠମୀ ଶରତ୍ (୬) ବିରୋଧି ଚୈତ୍ର ଉପ୍ତକ୍ଷ ଦଶ୍ୟାଂ ଗୁରୁ-ବାସରେ ଚତୁହଳ ।

୧୬ । ଲଂଗଳବେଣ୍ୟତ୍ର ତଟାକଂସିଂହ ଭୂପତିଃ (୭) ଶାଳେଚନ୍ଦ୍ରୋଦୟେ ଶୋଣଣୀ ।

୧୭ । ମମୁପଗତେ ଜାମ୍ବୁମାନୋ ବିରୋଧି । ମନେ ବାରେଃଶିତେହେସ ।

୧୮ । କଳଶୁଭ ପଦେ କ ଓିକେ ମାସି ସାହା ମହାମୁଦ ଲୁ୍ୟଲ ବାଦିହାବସ

୧୯ । ରନ୍ତୋସିଂହ ନାମ କ୍ଷିତିପତି ତିଳକଃ କୁବନ୍ନର୍ମିନ୍ନାଗ୍ନଃ ସରଜକୁଣ୍ଡ ।

୨୦ । ଦାମୋଦପନାଥଃ (୮) ଯୋ ଯୋ ଲଂଗଳବେଣୀ ଦୁର୍ଗ ସହରେସଶୋ

୨୧ । ପୁସ୍ପନ କର୍ଦ୍ଦମଂ, ଭସ୍ମବନ୍ତୁ ଶିକଂ କୋଡ଼ ଦୁର୍ଗ ନ ଉଜହା ସାସ ଭୂମୋ ।

୨୨ । ପଙ୍କ୍ତି । ଯୋ ଗୃହାନ୍ତ ବକଂ କ ଚ ଦୁର୍ଗେ ପଂକ୍ତିଳ ନୃସିଂହଦୁ—
୨୩ । ର୍ଣଂ ଭୂଣେ । ନମେ ଭକ୍ତଂ ସଦାତନୋ ବନ୍ଦସ୍ମ ରୁଚ କୁବନ୍ । 
୨୪ । ସ ାାହାସରଃ (୯) × × × ପଦ୍ଧରସ ବାର ଉତ୍ତର ଶକରେ ମହାମୁଦ ।
୨୫ । ଝୁଲ୍‌ପିପାଣ ସ ଧିନରେ ବାହୁ ବଳେନ୍ଦ୍ରକଂ ଅଙ୍କରେ ସମସ୍ତୋର ।
୬ । ଜାମା ନିଜିସ୍ପ କର ସାହ ମୁକୁନ୍ଦକାଡ ଘରେ,ବର ଚୋଳିଲେ ।

୧, ୯ ଓ ୧୦ ଶ୍ଳୋକରେ ଯେତେଗୋଟି ଅକ୍ଷର ଅଦୃଶ୍ୟ ହେଉ × ଚିହ୍ନ ଦିଆଯାଇଅଛି ।

ରଘୁନାଥ ହରିଚନ୍ଦନଙ୍କ ରାଜତ୍ୱ କାଳରେ ବାଣପୁର ଦୁର୍ଗରୁ ଜଣେ ବ୍ରାହ୍ମଣ ଅଷ୍ଟଦୁର୍ଗକୁ ଆସି ରାଜା ରଘୁନାଥଙ୍କ ନିକଟରେ ପହଞ୍ଚି ତାହାର ଦୁଃସହାୟତା ବର୍ଣ୍ଣନା କରିଥିଲେ । "ଜୀବନ ରକ୍ଷାର କୌଣସି ଉପାୟ ନପାଇ ତୁମ୍ଭଙ୍କ ରାଜ୍ୟରେ ପହଞ୍ଚିଲି ।" ଏହା ଶୁଣି ରାଜା ରଘୁନାଥ ମକର ସଂକ୍ରାନ୍ତି ଦିନ ଦଣ୍ଡେଶ୍ୱରଙ୍କ ଦର୍ଶନ ଇଚ୍ଛାକରି ସେହି ଆଗନ୍ତୁକ ବ୍ରାହ୍ମଣଙ୍କ ସହ ଦଣ୍ଡେଶ୍ୱରଙ୍କ ନିକଟକୁ ଯାତ୍ରାକଲେ । ଈଶ୍ୱରଙ୍କ ଦର୍ଶନ ଶେଷରେ ଦଣ୍ଡେଶ୍ୱରଙ୍କ ସେବା ପୂଜା ଓ ମାନ୍ତନଯୂନ ପାଳନ କରିବା ପାଇଁ ଏକ ବ୍ରାହ୍ମଣ ଶାସନ ବସାଇଥିଲେ । ବାଣପୁରରୁ ଆଗନ୍ତୁକ ବ୍ରାହ୍ମଣଙ୍କୁ ସେହି ଶାସନକୁ ଦାନ ଦେଇଥିଲେ । ତା ସହିତ ତାର ନିକଟରେ ଥିବା ନ ଠୋଳ ନାମକ ଗ୍ରାମକୁ ଦାନଦେଲେ । ସେହି ଶାସନର ନାମ ନାଠୋଳ ରଘୁନାଥ ପୁର ଶାସନ ନାମରେ ନାମିତ କରିଥିଲେ । ବାଣପୁର ଦୁର୍ଗରୁ ଆସିଥିବା ବ୍ରାହ୍ମଣ ସେହି ଶାସନରେ ଆନନ୍ଦରେ ରହି ଦଣ୍ଡେଶ୍ୱରଙ୍କ ସେବା ପୂଜାରେ ନିଜକୁ ନିୟୋଜିତ କରିଦେଲେ ।

ଶ୍ରୀକ୍ଷେତ୍ରରୁ ଜଣେ ପୂଜକ ତାମ୍ରପାତ୍ରରେ ନୃସିଂହ ମୂର୍ତ୍ତି ଓ ଶାଳଗ୍ରାମ ସଙ୍ଗରେ ନେଇ ଶ୍ରୀକ୍ଷେତ୍ରରୁ ଆସି ଅଷ୍ଟଦୁର୍ଗରେ ପହଞ୍ଚିଥିଲେ । ରାଜା ରଘୁନାଥ ଶ୍ରୀକ୍ଷେତ୍ରରୁ ବ୍ରାହ୍ମଣର ଆଗମନ ବାର୍ତ୍ତା ଶୁଣି ସିଂହାସନରୁ ଉଠିଆସି ସୁନ୍ଦର ଅସ୍ଥାନ ନିର୍ମାଣ କରି ନୃସିଂହ ବିଗ୍ରହ ସହ ତାମ୍ର ପାତ୍ରକୁ ଆସନ ଉପରେ

ରଖିବାକୁ ଆଦେଶ ଦେଲେ । ନୃପତିଙ୍କ ଭକ୍ତିଭାବ ଦେଖି ଦ୍ଵିଜବର ଆସ୍ଥାନ ଉପରେ ଠାକୁରଙ୍କୁ ବସାଇଲେ । ରାଜା ସାଷ୍ଟାଂଗ ପ୍ରଣିପାତ କଲାପରେ ବ୍ରାହ୍ମଣଙ୍କ ଆସିବାର ଅଭିପ୍ରାୟ ଜାଣିବାକୁ ଇଚ୍ଛା କରିଥିଲେ ।

ବ୍ରାହ୍ମଣ କହିଲେ, "ମହାରାଜ ମୋର ବାସସ୍ଥାନ ଶ୍ରୀକ୍ଷେତ୍ରଧାମ । ମୁଁ ଏହି ନୃସିଂହ ବିଗ୍ରହକୁ ମସ୍ତକରେ ଧାରଣ କରି ଆପଣଙ୍କ ସୁନାମ ଶୁଣି ଏଠାକୁ ଆସି ପହଞ୍ଚିଲି । ଏହା ଶୁଣି ରାଜା ସନ୍ତୋଷ ହେଲେ ଏବଂ ନିଜ ଉଆସ ମଧ୍ୟରେ ଗୋଟିଏ ମଣ୍ଡପ ନିର୍ମାଣ କରି ନୃସିଂହ ଠାକୁରଙ୍କୁ ସେହି ମଣ୍ଡପ ଉପରେ ସ୍ଥାପନ କଲେ । ଆଗନ୍ତୁକ ବ୍ରାହ୍ମଣଙ୍କୁ ସେହି ଠାକୁରଙ୍କ ପୂଜକ ରୂପେ ନିଯୁକ୍ତ କରିଥିଲେ । ରାଜ ନଅରରୁ ସକଳ ପ୍ରକାର ଜିନିଷ ଦୈନିକ ଭୋଗ ପାଇଁ ବାଣ୍ଟି ଦେଇଥିଲେ । ଏତଦ୍‌ବ୍ୟତୀତ ଛତ୍ର, ଚାମର, ଧ୍ଵଜା, କାହାଳୀ, ଝୁମ୍ପା, ଘଣ୍ଟା, ବଂଶୀ, ଆଲଟ ଇତ୍ୟାଦି ସକଳ ପ୍ରକାର ଆବଶ୍ୟକୀୟ ଉପକରଣ ଯୋଗାଇ ଦେଇଥିଲେ । ସମସ୍ତ ପ୍ରକାର ବ୍ୟବସ୍ଥା ଠାକୁରଙ୍କ ପାଇଁ ଯୋଗାଇ ନିଜେ ରାଜା ପ୍ରତିଦିନ ପ୍ରଭାତ ଓ ସନ୍ଧ୍ୟାରେ ଠାକୁରଙ୍କୁ ଦର୍ଶନ କରନ୍ତି । ତା ପରେ ପରେ ନୃସିଂହ ଠାକୁରଙ୍କ ସମସ୍ତ ପ୍ରକାର ଯାତମାନ୍ତି ପାଳନ କରିବା ପାଇଁ ବ୍ୟବସ୍ଥା କରି ଦେଇଥିଲେ । ନୃସିଂହ ଠାକୁରଙ୍କ କରୁଣାରୁ ରାଜା ଦୁଇଗୋଟି ପୁତ୍ର ସନ୍ତାନ ଓ ଗୋଟିଏ କନ୍ୟା ଲାଭ କରିଥିଲେ । ଜ୍ୟେଷ୍ଠ ପୁତ୍ରର ନାମ ରାମଚନ୍ଦ୍ର, କନିଷ୍ଠର ନାମ ଧନୁର୍ଜୟ । ଜ୍ୟେଷ୍ଠ ପୁତ୍ର ରାମଚନ୍ଦ୍ରଙ୍କୁ ଅନୁଗୁଳ ରାଜା ଶ୍ରୀ ଜଗଦେବଙ୍କ କନ୍ୟା ସାବିତ୍ରୀଙ୍କ ସହିତ ଓ କନିଷ୍ଠ ପୁତ୍ର ଧନୁର୍ଜୟଙ୍କୁ ବାଣପୁର ନରେଶ ଦୟାନିଧି ହରିଚନ୍ଦନଙ୍କ କନିଷ୍ଠା କନ୍ୟା ରୁକ୍ମଣୀ ଦେବୀ ସହିତ ବିବାହ କାର୍ଯ୍ୟ ସମାପନ କରିଥିଲେ । ୧୬୨୮ ଖ୍ରୀଷ୍ଟାବ୍ଦରେ ରଘୁନାଥ ହରିଚନ୍ଦନ ଦେଓଙ୍କ ପରଲୋକ ହୋଇଥିଲା ।

## ଚତୁର୍ଦ୍ଦଶ ରାଜା ବଡ଼ ରାମଚନ୍ଦ୍ର ହରିଚନ୍ଦନ ଦେଓ (୧୬୨୮-୧୬୭୩)—

ରଘୁନାଥ ହରିଚନ୍ଦନଙ୍କ ପରେ ତାଙ୍କର ଜ୍ୟେଷ୍ଠ ପୁତ୍ର ରାମଚନ୍ଦ୍ର ହରିଚନ୍ଦନ ଦେଓ ରାଣପୁର ଦେଣିଆ ଦୁର୍ଗର ରାଜା ହୋଇଥିଲେ । ସ୍ଥାନ ସ୍ଥାନ

ମହାଲିଙ୍ଗେଶ୍ୱରଙ୍କ ପୀଠରେ ତାଙ୍କର ଅଭିଷେକ କାର୍ଯ୍ୟ ସମାପନ କରାଯାଇ
ଥିଲା ଏବଂ ମହାଲିଂଗେଶ୍ୱରଙ୍କ କୃପାରୁ ରାଜ୍ୟ ଓ ପ୍ରଜାଙ୍କୁ ସୁନ୍ଦରଭାବେ
ପାଳନ କରିଥିଲେ । ରାମଚନ୍ଦ୍ର ଦେବ ଅତି ଚତୁର ବିବେକ ଓ ଶାନ୍ତଶିଷ୍ଟ
ଥିଲେ । ଦୁଷ୍ଟ ଦୁର୍ଜନମାନଙ୍କୁ ସଙ୍ଗେ ସଙ୍ଗେ ଦଣ୍ଡିତ କରୁଥିଲେ । ଏହାଙ୍କ
ରାଜତ୍ୱ କାଳରେ ଲଂଗଳ ବେଣିଆ ଦୁର୍ଗରେ ଆଦୌ ଶତ୍ରୁଭୟ ନଥିଲା ।
ଦୁର୍ଗର ଦକ୍ଷିଣ ଦିଗରେ ଖୋଳିତ ହୋଇଥିବା ସାଗରଟି ସଂକୀର୍ଣ୍ଣ ମନେକରି
ଅଧିକ ଅର୍ଥ ବ୍ୟୟକରି ପୁନର୍ବାର ତାହାକୁ ବିସ୍ତୀର୍ଣ୍ଣ କରି ଖୋଳାଇଥିଲେ ।
କୁଳିବାଦସା ପ୍ରଥମେ ସାଗର ଖୋଳାଇ ଥିବାରୁ ସାଗରକୁ ସାହାସର
କୁହାଯାଉଥିଲା । ସିଂହା ପୂର୍ବାଧିଶ୍ୱର ମୁକୁନ୍ଦ ଦେବଙ୍କ ଦ୍ୱାରା ଖୋଳିତ
ବୋଲି ବିଶ୍ୱାସରେ ସିଂହସାଗର ନାମରେ ନାମକରଣ କରା ଯାଇଥିଲା ।
ପୁନଶ୍ଚ ରାମଚନ୍ଦ୍ର ହରିଚନ୍ଦନ ସେହି ସାଗରକୁ ବିସ୍ତୀର୍ଣ୍ଣ କରି ଖୋଳାଇ-
ଥିବାରୁ ତାହାକୁ ରାମଚନ୍ଦ୍ର ସାଗର ନାମରେ ନାମିତ କରାଯାଇଥିଲା । ଏହା
ଦୁର୍ଗର ଦକ୍ଷିଣ ପଶ୍ଚିମ ଦିଗରେ ଗଡ଼ ଖାଇ ରୂପେ ରହିଥିଲା । ଏହାକୁ
ଲୋକେ ଭିତର ସାଗର ବୋଲି ନାମ କରଣ କରିଥିଲେ । ବର୍ତ୍ତମାନ ସୁଦ୍ଧା
ଏହାକୁ ଭିତର ସାଗର କୁହାଯାଉଅଛି ।

ରାମଚନ୍ଦ୍ର ହରିଚନ୍ଦନ ଦେଓଙ୍କ ସମୟରେ ଶିକୁଳା ନିକଟବର୍ତ୍ତୀ
ବାବରପୁର ଗ୍ରାମରେ କଳାକଣ୍ଠ ନାମକ ଏକ ଦୁଷ୍ଟ ବାଉରି ଅକାଠ ଭକ୍ଷଣ
କରି କାହାରିକୁ ଭୟ କରୁ ନଥିଲା । ସେ ପ୍ରଜାମାନଙ୍କୁ ମେଳକରି ରାଜାଙ୍କର
ସର୍ବଦା ବିରୋଧାଚରଣ କରୁଥିଲା । ରାଜା ରାମଚନ୍ଦ୍ର ହରିଚନ୍ଦନ ଦେଓ
ତାହାକୁ ଘାତକ ଦ୍ୱାରା ମରାଇ ସେହି ଗ୍ରାମକୁ ବାବରିଗଡ଼ ନାମରେ ନାମିତ
କରିଥିଲେ । ଏହି ରାଜାଙ୍କର ପୁତ୍ର ସନ୍ତାନ ନଥିଲା । ପୁତ୍ର ଆଶାରେ ସେ
ରାଜଗୁରୁଙ୍କ ନିର୍ଦ୍ଦେଶରେ ବୃଷବିବାହ କରାଇ ବ୍ରାହ୍ମଣମାନଙ୍କୁ ଏକ ପଲ୍ଲୀ
ଦାନ ଦେଇଥିଲେ । ୧୬୭୨ ଖ୍ରୀଷ୍ଟାବ୍ଦରେ ଏହି ପଲ୍ଲୀକୁ ଦାନ ଦେଇ ଏହାକୁ
ଖାର ରାମଚନ୍ଦ୍ରପୁର ଶାସନ ନାମରେ ନାମିତ କରିଥିଲେ । ତଥାପି ତାଙ୍କର
ପୁତ୍ର ଜାତ ହୋଇ ନଥିଲା । ସେ ଊର୍ଦ୍ଧ୍ୱ ୪୫ ବର୍ଷ ଲଂଗଳ ବେଣିଆ ଦୁର୍ଗରେ
ରାଜତ୍ୱ କରିଥିଲେ । ମୃତ୍ୟୁପରେ କନିଷ୍ଠ ଭାଇ ଧନୁର୍ଜୟ ୩୮ ବର୍ଷ ବୟସରେ
କୁଳାଚାର ପ୍ରକାରେ ରାଜ ସିଂହାସନ ଆରୋହଣ କରିଥିଲେ ।

## ପଞ୍ଚଦଶ ରାଜା-ଧନୁର୍ଜୟ ହରିଚନ୍ଦନ ଜଗଦ୍ଦେବ (୧୬୭୩-୧୬୭୯)—

ରାମଚନ୍ଦ୍ର ହରିଚନ୍ଦନଙ୍କ ମୃତ୍ୟୁ ପରେ ଧନୁର୍ଜୟ ରାଜ୍ୟଭାର ଗ୍ରହଣ କରିଥିଲେ । ଧନୁର୍ଜୟ ହରିଚନ୍ଦନ ଦେଓ ଶ୍ରୀକ୍ଷେତ୍ରକୁ ଯାଇ ତତ୍କାଳୀନ ଗଜପତି ଗୋପୀନାଥ ଦେବଙ୍କୁ ନିଜ ରାଜ୍ୟର ସମସ୍ତ ଘଟଣା ଅବଗତ କରାଇଥିଲେ । ଗଜପତି ଧନୁର୍ଜୟଙ୍କ ଠାରୁ ସମସ୍ତ ଘଟଣା ଜାଣିବା ପରେ ତାଙ୍କୁ ଅଷ୍ଟଦୁର୍ଗର ରାଜାରୂପେ ୧୬୭୬ ଖ୍ରୀଷ୍ଟାବ୍ଦରେ ଜଗଦ୍ଦେବ ପଦ ପ୍ରଦାନ କରି ସନନ୍ଦ ଓ ଶାଢ଼ୀ ବାନ୍ଧି ଦେଇଥିଲେ । ଏହି ରାଜା କୋଦଳା ନିକଟରେ ଥିବା ଦଣ୍ଡେଶ୍ୱରଙ୍କ ମନ୍ଦିର ନିର୍ମାଣ କରାଇଥିଲେ । ସକଳ ପ୍ରକାର ଦୁର୍ଦ୍ଦାନ୍ତ ଦଣ୍ଡଧରମାନଙ୍କ ଦଣ୍ଡକୁ ଅଚିରେ ଖଣ୍ଡନ କରି ଥିବାରୁ ଦଣ୍ଡେଶ୍ୱରଙ୍କ ପୀଠକୁ ରାଜ୍ୟର ସମସ୍ତ ଅଞ୍ଚଳରୁ ପ୍ରଜାମାନଙ୍କୁ ଆମନ୍ତ୍ରଣ କରି ସେଠାରେ ଯଜ୍ଞ ଓ ହୋମ କର୍ମମାନ କରି ଦଣ୍ଡେଶ୍ୱରଙ୍କ ମହିମା ସାରା ରାଜ୍ୟରେ ପ୍ରଚାର କରିଥିଲେ । ଦଣ୍ଡେଶ୍ୱରଙ୍କ ନିମନ୍ତେ ଉପଯୁକ୍ତ ପୂଜକ ଓ ଭୋଗ ନିମନ୍ତେ ସକଳ ପ୍ରକାର ବ୍ୟବସ୍ଥା କରି ଜମି ଖଞ୍ଜି ଦେଇଥିଲେ । ୧୬୭୯ ଖ୍ରୀଷ୍ଟାବ୍ଦରେ ଧନୁର୍ଜୟ ହରିଚନ୍ଦନ ଜଗଦ୍ଦେବଙ୍କ ବିୟୋଗ ହୋଇଥିଲା । ଏହାଙ୍କ ପରେ ପୁତ୍ର ମୁକୁନ୍ଦ ହରିଚନ୍ଦନ ଲଙ୍ଗଳ ବେଣିଆ ଦୁର୍ଗରେ ରାଜା ହୋଇଥିଲେ ।

## ଷୋଡ଼ଶ ରାଜା–ମୁକୁନ୍ଦ ହରିଚନ୍ଦନ ଜଗଦ୍ଦେବ (୧୬୭୯-୧୬୮୪)—

ମୁକୁନ୍ଦ ହରିଚନ୍ଦନ ରାଜ୍ୟଭାର ଗ୍ରହଣ କରି ରାଜ୍ୟର ଉନ୍ନତି ପାଇଁ ବିଭିନ୍ନ ପ୍ରକାର ପ୍ରଜାହିତକର କାର୍ଯ୍ୟ କରିବାକୁ ଅଗ୍ରାଧିକାର ଦେଇଥିଲେ । ଏହାଙ୍କ ସମୟରେ ରାଜ୍ୟରେ ଜଳସେଚନ ପାଇଁ ବିଭିନ୍ନ ସ୍ଥାନରେ ବଡ଼ବଡ଼ ପୋଖରୀ ଖୋଳା ଯାଇଥିଲା । ମୁକୁନ୍ଦ ହରିଚନ୍ଦନ ଜଗଦ୍ଦେବ ନିଜ ରାଜ୍ୟର ବୋହୁବଣୀ ବା ବୋଇରଣୀ ଅର୍ଥାତ୍ ବର୍ତ୍ତମାନର ଜବିପୁର୍ଯ୍ୟନଟର ସହର ନିକଟରେ ଏକ ବ୍ରାହ୍ମଣ ଶାସନ ବସାଇ ତାହାର ନାମ ଖଣ୍ଡିଆ ମୁକୁନ୍ଦପୁର ନାମରେ ନାମିତ କରିଥିଲେ ।

ରାଜା ମୁକୁନ୍ଦ ହରିଚନ୍ଦନ ଜଗଦ୍ଦେବ ଚୈତ୍ର ଦ୍ୱାଦଶୀ ସ୍ନାନ ଓ ଶ୍ରୀ ଜଗନ୍ନାଥ ଠାକୁରଙ୍କୁ ଦର୍ଶନ ଉଦ୍ଦେଶ୍ୟରେ ଶ୍ରୀକ୍ଷେତ୍ରକୁ ଯାତ୍ରା କରିଥିଲେ । ଶ୍ରୀକ୍ଷେତ୍ରରେ ପହଞ୍ଚି ସମୁଦ୍ରରେ ସ୍ନାନ ପରେ ଜଗନ୍ନାଥଙ୍କୁ ଦର୍ଶନ କରି ଫେରାଉକୁ ଆସିଥିଲେ । ରାଜାଙ୍କ ପରିଚୟ ପାଇ ବଜାରର ଜଣେ ବ୍ୟବସାୟୀ ତାଙ୍କ ପିତାଙ୍କର ବାକିଥିବା ଏକହଜାର ଟଙ୍କା ମାଗିଥିଲା । ରାଜା ମୁକୁନ୍ଦ ହରିଚନ୍ଦନ ଜଗଦ୍ଦେବ ସେହି ବ୍ୟବସାୟୀ ଦେଇଥିବା ଟଙ୍କାର ପ୍ରମାଣପତ୍ର ଖଣ୍ଡିକ ଦେଖିବାକୁ ଚାହିଁବାରୁ ବ୍ୟବସାୟୀ କେତେଜଣ ଖଲଲୋକଙ୍କୁ ମେଳକରି ରାଜାଙ୍କୁ ଅପମାନିତ କରିଥିଲା । ସେହି ଅପମାନରେ ରାଜା ଚିନ୍ତିତ ହୋଇ ପଡ଼ିଥିଲେ । ତାଙ୍କୁ ଶନ୍ନାଜ୍ୱର ଗ୍ରାସ କଲା । ରାଜା ମୁକୁନ୍ଦ ହରିଚନ୍ଦନ ଜଗଦ୍ଦେବ ବୈଶାଖ ମାସ ଶୁକ୍ଳପକ୍ଷ ପଞ୍ଚମୀ ଶୁକ୍ରବାର ଦିନ ଶ୍ରୀକ୍ଷେତ୍ରରେ ମୃତ୍ୟୁ ହୋଇଥିଲେ । ତାଙ୍କ ସଙ୍ଗରେ ଥିବା ପରିଜନମାନେ ରାଜାଙ୍କ ସତ୍କାର କାର୍ଯ୍ୟ ସମାପନ କରି ରାଜ୍ୟରେ ଖବର ଦେଇଥିଲେ । ମୁକୁନ୍ଦ ହରିଚନ୍ଦନ ଜଗଦ୍ଦେବଙ୍କ ମାଆ ପୁତ୍ରର ମୃତ୍ୟୁ ଖବର ପାଇ ଦୁଃଖରେ ଭାଙ୍ଗି ପଡ଼ିଲେ । ୧୬୮୪ ଖ୍ରୀଷ୍ଟାବ୍ଦରେ ରାଜାଙ୍କ ମୃତ୍ୟୁ ହୋଇଥିଲା । ତାଙ୍କ ପରେ ରାଣୀମା ରାଜମାତା ରାଜ୍ୟ ପରିଚାଳନା ଭାର ବୁଝିଥିଲେ ।

## ରାଜମାତାଙ୍କ ରାଜତ୍ୱ (୧୬୮୪-୧୬୮୭)—

ମୁକୁନ୍ଦ ହରିଚନ୍ଦନ ଜଗଦ୍ଦେବ ଅବିବାହିତ ଥିଲେ । ଏହାଙ୍କ ପରେ ରାଜମାତା ରାଜକାର୍ଯ୍ୟ ପରିଚାଳନା କରିଥିଲେ । ଏଥିରେ ବିରୋଧ କରି ତତ୍କାଳୀନ ପାତ୍ର ଜଳାକୃଷ୍ଣ ଚମ୍ପତିରାୟ ପ୍ରଜାଙ୍କୁ ମେଳକରି ରାଜ୍ୟରେ ବିଭ୍ରାନ୍ତ ସୃଷ୍ଟି କରିଥିଲେ । ରାଣୀମାତା ଓ ମନ୍ତ୍ରୀଙ୍କ ଆଦେଶରେ ତାଙ୍କୁ ହତ୍ୟା କରାଗଲା । ଜଳାକୃଷ୍ଣ ଚମ୍ପତିରାୟ ପାତ୍ରଙ୍କୁ ହତ୍ୟା କରିବାରୁ ତାଙ୍କର କନିଷ୍ଠ ଭାଇ ରାଜାଙ୍କ ସର୍ଦ୍ଦାର ବାଘେଲ ବଂଶଜ ରାମଚନ୍ଦ୍ର ମାଝୀ ସାମନ୍ତଙ୍କୁ ଏ ବିଷୟ ଜଣାଇଲେ । ରାମଚନ୍ଦ୍ର ମାଝୀ ବଡ଼ ପରାକ୍ରମୀ ଓ ବୁଦ୍ଧିଶାଳୀ ଥିଲେ । ତାଙ୍କର ଜ୍ୟେଷ୍ଠ ଭାଇ ନରେନ୍ଦ୍ର ସାମନ୍ତଙ୍କ କଥାରେ ରାଜା ନହୋଇ ରାଜ୍ୟରେ ରାଜା ହେବାପାଇଁ ସାହସ କରିଥିଲେ । ତାଙ୍କ ମତରେ ରାଜ ବଂଶର ପୁତ୍ର ଆମେ ଥାଉ ଥାଉ ଅନ୍ୟମାନେ ରାଜ୍ୟ ପରିଚାଳନା କରିବେ । ଏଣୁ ଆମେ ଥିଲେ ବା ମଲେ କିଛି କ୍ଷତି ନାହିଁ । ସେ

ପ୍ରଜାଙ୍କୁ ମେଳକରି ରାଣୀମାତାଙ୍କ ବିରୋଧ କରିଥିଲେ । ରାଣୀମାତାଙ୍କ ନିର୍ଦ୍ଦେଶରେ ତାଙ୍କୁ ରାଜ୍ୟରୁ ବିତାଡ଼ିତ କରାଗଲା । ମୁକୁନ୍ଦ ହରିଚନ୍ଦନଙ୍କ ପରେ ୧୬୮୪ ଠାରୁ ୧୬୮୭ ପର୍ଯ୍ୟନ୍ତ ରାଣୀମାତା ରାଜକାର୍ଯ୍ୟ ପରିଚାଳନା କରିଥିଲେ । ତପସ୍ୱୀ ବଂଶ ମଧ୍ୟରେ ସ୍ତ୍ରୀ ପୁରୁଷ ଅଷ୍ଟଦୁର୍ଗରେ ରାଜା ହୋଇ ରାଜ୍ୟ ପରିଚାଳନା କରିଥିଲେ । ଏମାନେ ପ୍ରାୟ ୬୯୫ ବର୍ଷ ରାଜତ୍ୱ କରି ରାଜ୍ୟରେ ବିଭିନ୍ନ ପ୍ରକାର କାର୍ଯ୍ୟ କରିଥିଲେ । ତା ପରେ ତପସ୍ୱୀ ବଂଶ ଲୋପ ହୋଇଥିଲା ।

## ସପ୍ତଦଶ ରାଜା-ଖଣ୍ଡୁଆଳ ବାଘେଲ ରାମଚନ୍ଦ୍ର ମାଝୀ ବା ଲୁହାପିଠା ରାମଚନ୍ଦ୍ର ହରିଚନ୍ଦନ ଜଗଦ୍ଦେବ (୧୬୮୭-୧୭୦୭)

ରାଜ୍ୟର ଦୁର୍ଦ୍ଦିନରେ ବାଘେଲ ବଂଶୀୟ ଖଣ୍ଡୁଆଳ ରାମଚନ୍ଦ୍ର ମାଝୀ କେତେକ ଦୁଷ୍ଟ ଲୋକଙ୍କୁ ଏକତ୍ର କରି ରାଜ୍ୟରେ ବିଦ୍ରୋହ ସୃଷ୍ଟି କରିଥିଲେ । ରାଣୀମା ରାମଚନ୍ଦ୍ର ମାଝୀଙ୍କୁ ରାଜ୍ୟରୁ ବିତାଡ଼ିତ କରିଦେବାକୁ ଆଦେଶ ଦେଇଥିଲେ । ରାଣୀ ମାଆଙ୍କ ଆଦେଶ ପ୍ରକାରେ ସିପାହୀମାନେ ରାମଚନ୍ଦ୍ର ମାଝୀ ଓ ତାଙ୍କର ପରିବାରବର୍ଗଙ୍କୁ ରାଜ୍ୟରୁ ବିତାଡ଼ିତ କରି ଦେଇଥିଲେ । ରାମଚନ୍ଦ୍ର ମାଝୀ ସପରିବାର ରାଜ୍ୟରୁ ବାହାରିଯାଇ ରାମଚନ୍ଦ୍ରପୁର ବ୍ରାହ୍ମଣ ଶାସନରେ ପହଞ୍ଚିଥିଲେ । କ୍ଷୁଧାତୁର ଅବସ୍ଥାରେ ରାମଚନ୍ଦ୍ର ମାଝୀ ବ୍ରାହ୍ମଣମାନଙ୍କୁ ଖାଦ୍ୟପାଇଁ ଅନୁରୋଧ କରିଥିଲେ । ରାଜଦ୍ରୋହୀ ମନେକରି ବ୍ରାହ୍ମଣମାନେ ତାଙ୍କୁ କିଛି ଦେଇ ନଥିଲେ । ଶେଷରେ ନିରାଶ ହୋଇ ରାମଚନ୍ଦ୍ର ମାଝୀ ଚାଲି ଚାଲି ଯାଇ ବେଲପଡ଼ା ଗ୍ରାମରେ ପ୍ରବେଶ କଲେ । ବେଲପଡା ଗ୍ରାମରେ ଏକ ବ୍ରାହ୍ମଣୀ ରାମଚନ୍ଦ୍ର ମାଝୀ ଓ ତାଙ୍କ ପରିବାରଙ୍କୁ କ୍ଷୁଧାର୍ତ୍ତ ଦେଖି ବିସ୍ମିତ ହୋଇ ପଡ଼ିଥିଲେ । କୌଣସି କଥାକୁ ଭୟ ନକରି ସେ ସମସ୍ତଙ୍କୁ ଡାକିନେଇ ଦୁଆରେ ବସାଇଥିଲେ । ରାମଚନ୍ଦ୍ର ମାଝୀଙ୍କ ଠାରୁ ସମସ୍ତ ଘଟଣା ଜାଣିବା ପରେ ବ୍ରାହ୍ମଣୀ ତାଙ୍କୁ ଖାଇବାକୁ ଦେଇ ବିଦାୟ ଦେଇଥିଲେ । ଗ୍ରାମର ଲୋକେ ବ୍ରାହ୍ମଣୀଙ୍କୁ ଭୟ ଦେଖାଇ ଥିଲେହେଁ ସେ ନିର୍ଭୟରେ ଖାଇବାକୁ ଦେଇଥିଲେ । ରାମଚନ୍ଦ୍ର ମାଝୀ ଯାଇ ମଧ୍ୟମେଖ ଗଡ଼ରେ ରାତ୍ରି

ବିତାଡ଼ିଲେ । ମଦନେଖ ଗ୍ରାମର ଜଣେ ଲୋହରା ପାଖରେ ମାସିକ ଗୁଣ୍ଡ ଠଙ୍କା ମୂଲ ଖାଇ କିଛିଦିନ ରହିଥିଲେ । ସେ ଛଣପଥର ଗ୍ରାମରେ ବସତି ସ୍ଥାପନ କରି ରହିଲେ । ତାଙ୍କ ସହିତ ତାଙ୍କର ଜ୍ଞାତିବର୍ଗ ମଧ୍ୟ ଯାଇ ସେହି ଗ୍ରାମରେ ଘର ତିଆରି କରି ରହିଥିଲେ । ଏହିପରି ପ୍ରାୟ ୧୩ ଗୋଟି ପରିବାର ରାଜ୍ୟରୁ ବିତାଡ଼ିତ ହୋଇ ଖଲିକୋଟ ଗଡ଼ ଅନ୍ତର୍ଭୁକ୍ତ ଛଣପଥର ଗ୍ରାମରେ ରହିଥିଲେ ।

ରାମଚନ୍ଦ୍ର ମାଝୀ ଲୋହରା ପାଖରେ କାମକରି ଟଣ୍ଡା, ଫାରସା, ତେଲ, ତ୍ରିଶୂଳ, କଟାରୀ ଇତ୍ୟାଦି ତିଆରି କରି ରଖିବାକୁ ଲାଗିଲେ । ଲୋହରା ଶାଳରେ ଲୁହା ପିଟି ମଜୁରି ପାଇ ବଞ୍ଚୁଥିଲେ । ତେଣୁ ଲୋକେ ତାଙ୍କୁ ଲୁହାପିଟା ରାମଚନ୍ଦ୍ର ମାଝୀ ସାମନ୍ତ ବୋଲି କହୁଥିଲେ । ରାମଚନ୍ଦ୍ର ମାଝୀ ଲୁହାକାମ କଲେ ମଧ୍ୟ ସମସ୍ତଙ୍କ ସହିତ ଉତ୍ତମ ବ୍ୟବହାର ଦେଖାଇ ସମସ୍ତଙ୍କର ପ୍ରୀତିପାତ୍ର ହୋଇ ପାରିଥିଲେ ।

ଏହିପରି କିଛିଦିନ ବିତିଗଲା ପରେ ଖଲିକୋଟ ରାଜା ମର୍ଦ୍ଧରାଜ ଲୋକଙ୍କ ମୁଖରୁ ରାମଚନ୍ଦ୍ର ମାଝୀ ନାମକ ବ୍ୟକ୍ତି ଅଷ୍ଟଦୁର୍ଗରୁ ଆସି ଛଣପଥର ଗ୍ରାମରେ ଲୁହାପିଟା କାମକରି ରହିଥିବାର ଜାଣିପାରିଲେ । ମର୍ଦ୍ଧରାଜ ଦିନେ ରାମଚନ୍ଦ୍ର ମାଝୀଙ୍କୁ ନିଜ ରାଜ ଉଆସକୁ ଡକାଇଥିଲେ । ରାମଚନ୍ଦ୍ର ମାଝୀ ନିଜ ତିଆରି ଅସ୍ତ୍ରଶସ୍ତ୍ର ରାଜାଙ୍କ ପାଇଁ ଭେଟିଧରି ଉଆସରେ ପହଞ୍ଚିଥିଲେ ।

ଖଲିକୋଟ ମର୍ଦ୍ଧରାଜ ରାମଚନ୍ଦ୍ର ମାଝୀଙ୍କ ଦ୍ୱାରା ତିଆରି ଅସ୍ତ୍ରଶସ୍ତ୍ର ଦେଖି ତାହାଙ୍କୁ ଆଦର କରିଥିଲେ । ରାମଚନ୍ଦ୍ର ମାଝୀ ଅଷ୍ଟଦୁର୍ଗରୁ ବିତାଡ଼ିତ ହେବାର ସମସ୍ତ ଘଟଣା ରାଜାଙ୍କୁ ଜଣାଇଥିଲେ । ରାମଚନ୍ଦ୍ର ମାଝୀ ମୁଖରୁ ସମସ୍ତ ଘଟଣା ଶୁଣି ମର୍ଦ୍ଧରାଜ ତାଙ୍କୁ ସାହାଯ୍ୟ କରିବା ପାଇଁ ଇଚ୍ଛା କରିଥିଲେ । ରାମଚନ୍ଦ୍ର ମାଝୀ ଖଲିକୋଟ ରାଜାଙ୍କୁ ଅନୁରୋଧ କରିଥିଲେ ଯେ ସେ ଯୁଦ୍ଧକରି ଅଷ୍ଟଦୁର୍ଗ ଅଧିକାର କରିବା ପାଇଁ ସାହାଯ୍ୟ କଲେ ରାଜାଙ୍କ ଅଷ୍ଟଦୁର୍ଗର ଟଳଡ଼ି ମୁଠା ଦୁର୍ଗକୁ ଖଲିକୋଟ ରାଜାଙ୍କୁ

ଦେଇଥିବେ । ମର୍ଦ୍ଦରାଜ ରାମଚନ୍ଦ୍ର ମାଝୀଙ୍କୁ ସାହାଯ୍ୟ କରିବା ପାଇଁ ପ୍ରତିଶ୍ରୁତି ଦେଇଥିଲେ ଏବଂ ଯୁଦ୍ଧରେ ଜୟୀ ହେଲେ ଖଲଡ଼ ମୁଠା ଦୁର୍ଗ ପାଇଁ ଚୁକ୍ତି ପତ୍ର ଲେଖି ଇଥିଲେ ।

କିଛିଦିନ ବିତିଗଲା ପରେ ରାମଚନ୍ଦ୍ର ମାଝୀଙ୍କ ସହଧର୍ମିଣୀ ଚନ୍ଦ୍ରମାଳା ଗର୍ଭରୁ ଏକ ପୁତ୍ର ସନ୍ତାନ ଜାତ ହୋଇଥିଲା । ଆନନ୍ଦରେ ରାମଚନ୍ଦ୍ର ମାଝୀ ଜ୍ୟୋତିଷଙ୍କ ଦ୍ୱାରା ଗଣନା କରାଇ ପୁତ୍ରର ନାମ ଗୋପୀନାଥ ନାମରେ ନାମ କରଣ କରିଥିଲେ । ପାହାଡ଼ଗିରି ତଳେ ପୁତ୍ର ଜାତ ହୋଇଥିବାରୁ ଜନନୀ ଚନ୍ଦ୍ରମାଳା ସେହି ପୁତ୍ରର ନାମ ଗିରିଧର ବୋଲି କହିଥିଲେ ।

କିଛିଦିନ ପରେ ଅଷ୍ଟଦୁର୍ଗର ରାଣୀମା ସାମନ୍ତାଣୀଙ୍କର ପରଲୋକ ହୋଇ ଯାଇଥିଲା । ଫଳରେ ଅଷ୍ଟଦୁର୍ଗ ରାଜା ବିହୀନ ହେବା ଯୋଗୁଁ ରାଜ୍ୟରେ ବିଶୃଙ୍ଖଳା ଦେଖାଦେଲା । ଏହି ସୁଯୋଗ ନେଇ ରାମଚନ୍ଦ୍ର ମାଝୀଙ୍କ ବିଶ୍ୱସ୍ତ କେତେକ ପ୍ରଜା ତାଙ୍କୁ ଅଷ୍ଟଦୁର୍ଗକୁ ଫେରି ଆସିବାକୁ ଅନୁରୋଧ କରିଥିଲେ । ପ୍ରଜାମାନଙ୍କ ଅନୁରୋଧ କ୍ରମେ ରାମଚନ୍ଦ୍ର ମାଝୀ ଆସି ଲଙ୍ଗଳ ଦେଣିଆ ଦୁର୍ଗରେ ରାଜା ହୋଇଥିଲେ । ୧୬୯୦ ଖ୍ରୀଷ୍ଟାବ୍ଦରେ ରାମଚନ୍ଦ୍ର ମାଝୀ ସପରିବାର ଖଲିକୋଟରୁ ଅଷ୍ଟଦୁର୍ଗକୁ ପୁନରାଗମନ କରିଥିଲେ । ସେ ଖଲିକୋଟକୁ ଦୂତ ପଠାଇ ସେଠାରୁ ମର୍ଦ୍ଦରାଜ ଦେବଙ୍କୁ ଆମନ୍ତ୍ରଣ କରି ଆଗରୁ ତାଙ୍କ ନିକଟରେ ଯେଉଁ ଚୁକ୍ତି କରିଥିଲେ ତାହା ପୂରଣ କରି ଲିଖିତ ଚୁକ୍ତିନାମା ଫେରି ପାଇବାକୁ ଅନୁରୋଧ କରିଥିଲେ । ଏପରି ଶୁଣି ମର୍ଦ୍ଦରାଜ ଦେବ କହିଲେ, "ମୁଁ ତ ଆପଣଙ୍କ ପାଇଁ କୌଣସି ପ୍ରକାର ସାହାଯ୍ୟ କରିନାହିଁ, ଆପଣ କାହିଁକି ଖଲଡ଼ ମୁଠା ମୋତେ ଦେବେ । ଆପଣ ଆପଣଙ୍କର ଚୁକ୍ତିପତ୍ର ଫେରାଇ ନିଅନ୍ତୁ ।" ରାମଚନ୍ଦ୍ର ମାଝୀ ଚୁକ୍ତି ପତ୍ର ଫେରିପ୍ତ ପାଇ ବହୁତ ରାଜ୍ୟଶ୍ରୀବେ ମର୍ଦ୍ଦରାଜ ଦେବଙ୍କୁ ଉଚିତ ସତ୍କାର କରି ସମ୍ମାନ ଦେଇଥିଲେ । ଖଲିକୋଟ ମର୍ଦ୍ଦରାଜ ଦେବ ନିଜର କନ୍ୟାକୁ ରାମଚନ୍ଦ୍ର ମାଝୀ ସାମନ୍ତଙ୍କୁ ପ୍ରଦାନ କରିବାକୁ ପ୍ରସ୍ତାବ ଆଗତ କରିଥିଲେ । ୧୬୯୧ ଖ୍ରୀଷ୍ଟାବ୍ଦରେ ଶୁଭଲଗ୍ନ ଗଣନା କରି ମର୍ଦ୍ଦରାଜ ଦେବ ରାମଚନ୍ଦ୍ର ମାଝୀ ସାମନ୍ତଙ୍କୁ ନିଜର କନ୍ୟାକୁ ପ୍ରଦାନ କରିଥିଲେ ।

୧୭୯୧ ଖ୍ରୀଷ୍ଟାବ୍ଦରେ ରାମଚନ୍ଦ୍ର ମାଢ଼ୀଙ୍କ ଜ୍ୟେଷ୍ଠ ସହଧର୍ମିଣୀ ଚନ୍ଦ୍ରମାଳା ଦ୍ୱିତୀୟ ପୁତ୍ର ଲାଭ କରିଥିଲେ । ଗଣନା କରି ସେହି ପୁତ୍ରର ନାମ ରଘୁନାଥ ବୋଲି ନାମକରଣ କରାଗଲା । ରାମଚନ୍ଦ୍ର ମାଢ଼ୀ ସାମନ୍ତଙ୍କ ରାଜତ୍ୱ ସମୟରେ କୁମ୍ଭାରପଲ୍ଲୀ ଠାରୁ ଏକ ବ୍ରାହ୍ମଣ ଆସି ନୃପତିଙ୍କୁ ନିଜ ଦେଶରେ ଆଶ୍ରୟ ଦେବାକୁ ଅନୁରୋଧ କରିଥିଲେ । ରାଜା ରାମଚନ୍ଦ୍ର ମାଢ଼ୀ ସାମନ୍ତ ନିଜ ରାଜ୍ୟର ଝରିଡ଼ା ନାମକ ଗ୍ରାମରେ ଏହାଙ୍କୁ ରଖି ଲ ମହାପାତ୍ର ଉପାଧି ପ୍ରଦାନକରି ଶାଢ଼ୀ ବାନ୍ଧି ଦେଇଥିଲେ ।

ରାମଚନ୍ଦ୍ର ମାଢ଼ୀ ସାମନ୍ତ ଏକଦା ନିଜର ଅଭିଜ୍ଞ ଅଷ୍ଟଦୁର୍ଗରୁ ବିତାଡ଼ିତ କଥା ମନେ ପକାଇଥିଲେ । ସେ ଅଷ୍ଟଦୁର୍ଗରୁ ବାହାରି ଯିବା ସମୟରେ ପ୍ରଚଣ୍ଡ ସୂର୍ଯ୍ୟତାପରେ ଦେହ ଓ ପାଦ ଜଳି ଉଠୁଥିଲା, ଏଣେ କ୍ଷୁଧାରେ ଉଦର ଜଳୁଥିଲା । ସେ ରାମଚନ୍ଦ୍ରପୁର ଶାସନରେ ପହଞ୍ଚିବାରୁ ସେଠାକାର ବ୍ରାହ୍ମଣମାନେ ତାଙ୍କୁ ରାଜଦ୍ରୋହୀ ମନେକରି କେହି କିଛି ନଦେବା କଥା-ତାଙ୍କୁ ବହୁତ ଦୁଃଖଦାୟକ ହୋଇ ପଡ଼ିଥିଲା । ରାମଚନ୍ଦ୍ର ମାଢ଼ୀ ସାମନ୍ତ ଦୂତ ପଠାଇ ରାମଚନ୍ଦ୍ରପୁର ଶାସନର ସମସ୍ତ ବ୍ରାହ୍ମଣଙ୍କୁ ଲଙ୍ଗଳବେଣୀ ଦୁର୍ଗକୁ ଡକାଇ ଆଣିଥିଲେ । ପ୍ରତ୍ୟେକ ବ୍ରାହ୍ମଣଙ୍କୁ ଆପଣମାନଙ୍କର କର୍ମ କ'ଣ ବୋଲି ପ୍ରଶ୍ନ କରିଥିଲେ । ବ୍ରାହ୍ମଣମାନେ ବିଭିନ୍ନ କଥା କହିଥିଲେ । ରାଜା ରାମଚନ୍ଦ୍ର ଶେଷରେ କହିଲେ ଯେ ତୁମେତ ମୋ ରାଜ୍ୟର ଶ୍ରେଷ୍ଠ ଜାତି, ତୁମଙ୍କୁ ତ ଅତିଥି ସେବା ଜଣାନାହିଁ ତୁମେ କାହିଁକି ମୋ ରାଜ୍ୟରେ ଦାନପାଇ ଶାସନ ଗଢ଼ିଛ । ଆଜିଠାରୁ ତୁମ ଗ୍ରାମର ସକଳ ପ୍ରକାର ଦାନ କଟାଗଲା ଏବଂ ତୁମ ଶାସନର ନାମ ରାମଚନ୍ଦ୍ରପୁର ଶାସନ ପରିବର୍ତ୍ତେ ଶୂନ୍ୟ ରାମଚନ୍ଦ୍ରପୁର ଶାସନରେ ନାମିତ କରାଗଲା । କେବଳ ବୃଦ୍ଧ ଓ ଶ୍ମଶାନ ପାଇଁ ଜମିଗୁଡ଼ିକ ଅବଶିଷ୍ଟ ସମସ୍ତ ଦାନ କାଟି ଦେଇଥିଲେ ।

ରାମଚନ୍ଦ୍ର ମାଢ଼ୀ ସାମନ୍ତ ବେଲପଡ଼ା ବିଧବା ବ୍ରାହ୍ମଣୀଙ୍କ କଥା ମନେପକାଇ ତାଙ୍କ ରାଜନଗରକୁ ଡକାଇ ଆଣି ବ୍ରାହ୍ମଣୀ ଅସମୟରେ ସାହାଯ୍ୟ କରିଥିବାରୁ ତାଙ୍କୁ ବିଶେଷ ପ୍ରଶଂସା କରିଥିଲେ ଏବଂ ବ୍ରାହ୍ମଣୀଙ୍କୁ କହିଲେ, "ରାଜଦ୍ରୋହୀ ବୋଲି କୌଣସି କଥାକୁ ଭାବି ନକରି ମୋତେ

ତୁମ ଘରେ ବସାଇ ନିର୍ଭୟରେ ଖାଇବାକୁ ଦେଇଥିଲ । ଆଜି ତୁମେ ମୋ ନିକଟରୁ କ'ଣ ପାଇବାକୁ ଚାହୁଁଅଛ ପ୍ରକାଶ କର । ବ୍ରାହ୍ମଣୀ ବୁଢ଼ୀ କହିଲେ, "ଛୁମୁଁ ! ମୋର ତ କେହି ନାହାନ୍ତି । ମୁଁ ବା ତୁମ ନିକଟରୁ ଅଧିକ ନେଇ କ'ଣ କରିବି । ଦୂରରେ ଜମିବାଡ଼ି ମାଗିନେଲେ ମୋର ଦେଖାଚାହାଁ କରିବାକୁ କେହି ନାହିଁ । ଏଣୁ ଆପଣ ଯଦି ମୋତେ କିଛି ଦାନ ଦେବାକୁ ଚାହୁଁଛନ୍ତି ତେବେ ମୋତେ ଏପରି ଜମିଦେବେ ଯେ ମୁଁ ମୋ ବାଡ଼ିରେ ବସି ଦେଖିଲେ ଜମି ଦେଖା ଯାଉଥିବ । ଏଥିରେ ରାଜା ସ୍ୱୀକାର କରି ଜଣେ କର୍ମଚାରୀଙ୍କୁ ଆଦେଶ ଦେଲେ, ବୁଢ଼ୀ ତାଙ୍କର ବାଡ଼ିରେ ବସିଥିବେ ତୁମେ ସେଠାରୁ ଦୂରକୁ ଯିବ ସେ ଯେଉଁ ପର୍ଯ୍ୟନ୍ତ ଦେଖିପାରିବେ ତାଙ୍କୁ ସେତିକି ଜମି ଦିଆଯିବ । ଏହି ପ୍ରକାର ବ୍ରାହ୍ମଣୀ ବୁଢ଼ୀଙ୍କୁ ୨୦୦ ଭରଣ ଜମି ଦାନ ଦିଆଯାଇଥିଲା । ଜମି ସହିତ ବୁଢ଼ୀଙ୍କୁ କିଛି ଧନ ଓ ବସ୍ତ୍ର ପ୍ରଦାନ କରି ବିଦାୟ କରିଥିଲେ ।

ରାମଚନ୍ଦ୍ର ମାଝୀ ସାମନ୍ତ ନିଜ ଦୁର୍ଗସ୍ଥିତ ଭରାଣ୍ଡୀ ଟୁଙ୍ଗିଆର ପୂର୍ବ ଦିଗରେ ନିଜର କାଣ୍ଡ ଓ ଶର ସବୁ ଲୁଚାଇ ରଖିବା ପାଇଁ ଗୋଟିଏ ସ୍ଥାନକୁ ସ୍ଥିରକରି ସେହି ସ୍ଥାନରେ ବିଭିନ୍ନ ପ୍ରକାର ଫଳଗଛ ଯଥା ଆମ୍ବ, ପଣସ, ଜାମୁ, କମଳା, ଡାଳିମ୍ବ ଇତ୍ୟାଦି ରୋପଣ କରି ଗୋଟିଏ ସୁନ୍ଦର ଉପବନ ସୃଷ୍ଟି କରିଥିଲେ । କାଣ୍ଡ ଓ ଶର ସମସ୍ତ ଜିନିଷ ଗୁପ୍ତରେ ଲୁଚାଇ ରଖା ଯାଉଥିବାରୁ ସେହି ଦୁଇଖଣ୍ଡ ଉପବନକୁ ବଡ଼କାଣ୍ଡପର ଓ ସାନକାଣ୍ଡପର ନାମରେ ନାମିତ କରିଥିଲେ । ବର୍ତ୍ତମାନ ସୁଦ୍ଧା ସେହି କାଣ୍ଡପର ଉପତ୍ୟକାଟି ଆମ୍ବ, ପଣସ ପ୍ରଭୃତି ବିଭିନ୍ନ ଫଳ ଗଛରେ ଭରପୂର ।

ରାମଚନ୍ଦ୍ର ମାଝୀ ସାମନ୍ତଙ୍କ ଦ୍ୱିତୀୟ ପତ୍ନୀ ଗର୍ଭରୁ ତିନିଗୋଟି ପୁତ୍ର ସନ୍ତାନ ଜାତ ହୋଇଥିଲେ । ସେମାନଙ୍କର ନାମ ଯଥାକ୍ରମେ ବାସୁଦେବ, ନରସିଂହ ଓ ମର୍ଦ୍ଦରାଜ ଥିଲା । ରାଜା ରାମଚନ୍ଦ୍ର ନୂତନ କର୍ମଚାରୀ ନିଯୁକ୍ତ କରି ପ୍ରଜାଙ୍କର ପ୍ରୀତିପାତ୍ର ହୋଇ ସୁଖରେ ରାଜକାର୍ଯ୍ୟ ପରିଚାଳନା କରିଥିଲେ ।

# ଶ୍ରୀ ନୀଳକଣ୍ଠେଶ୍ୱରଙ୍କ ଆବିର୍ଭାବ—

ଲଙ୍ଗଳ ବେଣିଆ ଦୁର୍ଗର ପଶ୍ଚିମ ଦିଗରେ ରାମଚନ୍ଦ୍ର ସାଗର ଅବସ୍ଥିତ । ତାହା ଜଳପୂର୍ଣ୍ଣ ହେବାରୁ ହିଡ଼ ଭାଙ୍ଗିଯାଇ ନଦୀସ୍ରୋତ ପରି ଜଳ ପ୍ରବାହିତ ହୋଇଥିଲା । ରାମଚନ୍ଦ୍ର ମାଂଧାତା ସାମନ୍ତ ସେହି ସାଗରକୁ ବିସ୍ତୀର୍ଣ୍ଣ କରି ଖୋଳାଇବାକୁ ଇଚ୍ଛାକରି ହିଡ଼ଗୁଡ଼ିକୁ ସ୍ଥାନାନ୍ତରିତ କରି ବଡ଼ ବଡ଼ ହିଡ଼ ତିଆରି କରିବାକୁ ପ୍ରଜାଙ୍କୁ ଆଦେଶ ଦେଇଥିଲେ । ରାଜାଙ୍କ ଆଦେଶରେ ପ୍ରଜାମାନେ ସେହି ସାଗରକୁ ଖୋଳିବାକୁ ଲାଗିଲେ । ଖୋଳୁ ଖୋଳୁ ଉକ୍ତ ସାଗରର ପଶ୍ଚିମ ଦିଗରେ ଏକ ଅଦ୍ଭୁତ ଶିବଲିଙ୍ଗ ଲୋକଙ୍କର ଦୃଷ୍ଟିଗୋଚର ହୋଇଥିଲା । ଏହି ଖବର ରାଜାଙ୍କୁ ଜଣାଇ ଦିଆଗଲା । ଲୋକଙ୍କ ମୁଖରୁ ଶିବଲିଙ୍ଗ ବାହାରିବା କଥା ଶୁଣି ରାଜା ବିଶେଷ ଆନନ୍ଦିତ ହୋଇଥିଲେ । ଶଙ୍ଖ, ମୃଦଙ୍ଗ, ବାଦ୍ୟ, କାହାଳୀ, ଘଣ୍ଟା ବାଦନ କରି ସ୍ୱୟଂ ରାଜା ଲୋକମାନଙ୍କ ଗହଣରେ ସେହି ସ୍ଥାନରେ ପହଞ୍ଚିଥିଲେ । ଶିବ ଲିଙ୍ଗକୁ ଦର୍ଶନ କରି ରାଜା ପରମ ଆନନ୍ଦ ଲାଭକଲେ । ସେଠାରେ ରାଜା ଉପସ୍ଥିତ ରହି ସେହି ସ୍ଥାନଟିକୁ ଖୋଳାଇଥିଲେ । ମୃତ୍ତିକା ଖୋଳାଯିବା ପରେ ସେଠାରୁ ଶକ୍ତିଯୁକ୍ତ ଶିବ ଲିଙ୍ଗ ଦେଖିବାକୁ ପାଇଥିଲେ । ସମସ୍ତେ ହରିଧ୍ୱନି ଓ ହୁଳହୁଳି ଶବ୍ଦରେ ଚତୁର୍ଦ୍ଦିଗ ପୂର୍ଣ୍ଣ କରିଦେଲେ । ଅପୂଜ୍ୟ ଶିବ ଲିଙ୍ଗଙ୍କୁ ପୂଜା କଲେ ସକଳ ପ୍ରକାର ପାପ ଦୂରହୁଏ ଭାବି ବେଗେ ବେଗେ ବ୍ରାହ୍ମଣମାନଙ୍କୁ ପୂଜା ସାମଗ୍ରୀ ସହ ସେଠାକୁ ପଠାଇ ପଞ୍ଚାମୃତାଭିଷେକ କରାଇଲେ । ପୂଜାବିଧି ଶେଷରେ ରାଜଗୁରୁଙ୍କ ପରାମର୍ଶ ଠାକୁରଙ୍କ ନାମ ଶ୍ରୀ ନୀଳକଣ୍ଠେଶ୍ୱର ନାମରେ ନାମିତ କରାଇଲେ । ସେହିଦିନ ଠାରୁ ଶ୍ରୀ ନୀଳକଣ୍ଠେଶ୍ୱରଙ୍କ ନାମ ଓ ମହିମା ସାରା ରାଜ୍ୟରେ ସର୍ବତ୍ର ପ୍ରଚାରିତ ହେବାକୁ ଲାଗିଲା । ୧୬୯୩ ଖ୍ରୀଷ୍ଟାବ୍ଦରେ ଶ୍ରୀ ନୀଳକଣ୍ଠେଶ୍ୱର ଆବିର୍ଭାବ ହୋଇଥିଲେ । ନଗରର ବାହାରେ ଥିବାରୁ ସେହି ସାଗରଟିକୁ ବାହାର ସାଗର ରୂପେ ନାମିତ କରାଗଲା । ସେହି ବର୍ଷ ବାହାର ସାଗରକୁ ବିରାଟ ରୂପେ ହିଡ଼ ତିଆରି କରି ଖୋଳା ଯାଇ ପ୍ରତ୍ୟେକ ହିଡ଼ରେ ରାଜାଙ୍କ ଆଦେଶରେ କୃଷ୍ଣଚୂଡ଼ ଗଛ ରୋପଣ କରାଯାଇଥିଲା । ତାର ପରବର୍ଷ ୧୬୯୪ ଖ୍ରୀଷ୍ଟାବ୍ଦରେ ଶ୍ରୀ ନୀଳକଣ୍ଠେଶ୍ୱରଙ୍କ ମନ୍ଦିର ନିର୍ମାଣ କରାଯାଇଥିଲା ।

ମେଷ ଶୁକ୍ଳ ପଞ୍ଚମୀ ଭୃଗୁବାସରେ ଠାକୁରଙ୍କ ମନ୍ଦିର ପ୍ରତିଷ୍ଠା କରାଯାଇ ମନ୍ଦିରର ସୁରକ୍ଷା ଓ ସେବା ପୂଜା ପାଇଁ ଆବଶ୍ୟକୀୟ ଜମି ଦିଆଯାଇଥିଲା ।

ବୋଡ଼ଗଡ଼ାଣୀ ବା ବୋଇରାଣୀର ଉତ୍ତର ପଟରେ ଥିବା ସ୍ଥାନକୁ ଉତ୍ତମ ମନେକରି ଆନ୍ଧ୍ର ପ୍ରଦେଶରୁ ଆଗତ ଏକ ବିପ୍ରଙ୍କୁ ସେଠାରେ ଅବସ୍ଥାପିତ କରାଇ ତାହାକୁ ଏକ ଶାସନରେ ପରିଣତ କରିଥିଲେ । ସେହି ଶାସନକୁ କମା ରାମଚନ୍ଦ୍ରପୁର ଶାସନ ନାମରେ ନାମ କରଣ କରିଥିଲେ । କଳସ୍ଥର ଇନାମ ଭୂମି ସେହି ଆନ୍ଧ୍ର ଆଗନ୍ତୁକ କମା ବ୍ରାହ୍ମଣଙ୍କୁ ଦାନ ଦେଇ ତାଙ୍କ ନାମାନୁସାରେ ନାମ କରଣ କରିଥିଲେ ।

ରାମଚନ୍ଦ୍ର ମାର୍ଝୀ ସାମନ୍ତଙ୍କ ରାଜତ୍ୱ ସମୟରେ ଶ୍ରୀକ୍ଷେତ୍ରରୁ ହରି ମହାପାତ୍ର ନାମକ ଏକ ପୂଜକ ଶ୍ରୀ ଜଗନ୍ନାଥଙ୍କ ଦଧିବାମନ ମୂର୍ତ୍ତିରେ ପାଟ ଡୋରି ଗୁଡ଼ାଇ ମସ୍ତକରେ ଧାରଣକରି ଲଙ୍ଗଳ ଦେଣିଆ ଦୁର୍ଗରେ ଆସି ପହଞ୍ଚିଲେ । ରାଜା ଉକ୍ତ ବ୍ରାହ୍ମଣର ଆସିବା ଖବର ପାଇ ସଙ୍ଗେ ସଙ୍ଗେ ଆସନରୁ ଉଠି ଠାକୁରଙ୍କ ପାଇଁ ଉପଯୁକ୍ତ ଆସନ ଅଣାଇଲେ । ସେହି ଆସନ ଉପରେ ଗୋଟିଏ ନୂତନ ବସ୍ତ୍ର ବିଛାଇ ଆଗନ୍ତୁକ ବ୍ରାହ୍ମଣଙ୍କୁ ସେହି ଦଧିବାମନ ମୂର୍ତ୍ତିକୁ ଆସନରେ ବସାଇବାକୁ ଆଦେଶ ଦେଇଥିଲେ । ହରି ମହାପାତ୍ର ଗୁଡ଼ାଯାଇଥିବା ପାଟ ଡୋରି ଫିଟାଇ ଦେଇ ଠାକୁର ମୂର୍ତ୍ତିକୁ ଆସନ ଉପରେ ସ୍ଥାପନ କଲେ । ରାଜା ରାମଚନ୍ଦ୍ର ଭକ୍ତି ସହକାରେ ସେହି ଦଧିବାମନ ମୂର୍ତ୍ତିଙ୍କୁ ପ୍ରଣାମ କରି ମୂର୍ତ୍ତି ନିମନ୍ତେ ଏକ ମଣ୍ଡପ ନିର୍ମାଣ କରିବା ପାଇଁ ଆଦେଶ ଦେଲେ । ମଣ୍ଡପ ତିଆର ହେବା ପରେ ତାହାକୁ ସଂସ୍କାର କରି ଦଧିବାମନ ମୂର୍ତ୍ତିକୁ ବିଜେ କରାଇଥିଲେ ଏବଂ ହରି ମହାପାତ୍ରଙ୍କୁ ଠାକୁରଙ୍କ ପୂଜକପଣେ ନିଯୁକ୍ତ କରିଥିଲେ । ଦୈନିକ ଭୋଗ ନିମନ୍ତେ ଗୃହଶତ ଟଙ୍କା ଖଞ୍ଜି ଦେଇଥିଲେ । ଠାକୁରଙ୍କ ସେବା ପୂଜା ପରିଚାଳନା ପାଇଁ ପରୀକ୍ଷା ଓ ସୁପକାର ଇତ୍ୟାଦି ନିଯୁକ୍ତ କରିଥିଲେ । ରାମଚନ୍ଦ୍ର ମାର୍ଝୀ ସାମନ୍ତଙ୍କ ରାଜତ୍ୱ କାଳରେ ପ୍ରଜାମାନେ ସୁଖରେ କାଳାତିପାତ କରୁଥିଲେ । ରାଜ୍ୟରେ କୌଣସି ପ୍ରକାର ଶତ୍ରୁଭୟ ନଥିଲା । ସେ ସୁଦୀର୍ଘ ୫୪ ବର୍ଷ ରାଜତ୍ୱ କରି ୧୭୦୭ ଖ୍ରୀଷ୍ଟାବ୍ଦରେ ମୃତ୍ୟୁବରଣ କରିଥିଲେ । ତାଙ୍କର ଗୋପୀନାଥ ଓ ରଘୁନାଥ ନାମରେ ଦୁଇଟି ପୁତ୍ର ଜାତ ହୋଇଥିଲେ ।

## ଅଷ୍ଟାଦଶ ରାଜା-ଗୋପୀନାଥ ହରିଚନ୍ଦନ ଜଗଦେବ (୧୭୦୭-୧୭୧୨)—

ରାମଚନ୍ଦ୍ର ମାଙ୍ଗୀ ସାମନ୍ତଙ୍କ ବିୟୋଗ ବେଳକୁ ଗୋପୀନାଥଙ୍କୁ ୨୦ବର୍ଷ ଓ ରଘୁନାଥଙ୍କୁ ୧୭ ବର୍ଷ ବୟସ ହୋଇଥିଲା । ଗୋପୀନାଥ ମହାଲିଙ୍ଗେଶ୍ୱର ଠାକୁରଙ୍କ ନିକଟକୁ ଯାଇ ସେଠାକାର ମଣ୍ଡପ ଉପରେ ପୂଜା ଆରାଧନା ପୂର୍ବକ ଈଶ୍ୱରଙ୍କ ଆଶୀଷ ନେଇ ୧୭୦୭ ଖ୍ରୀଷ୍ଟାବ୍ଦରେ ଲଙ୍ଗଳ ବେଣିଆ ଦୁର୍ଗରେ ରାଜା ହୋଇଥିଲେ । ସେ ଦୁର୍ଗରେ ୧୪ ଗୋଟି କ୍ରୀଡ଼ା ନିକେତନ ନିର୍ମାଣ କରି ରାଜ୍ୟରୁ ଯୋଦ୍ଧା ଓ ମଲ୍ଲମାନଙ୍କୁ ସେଠାକୁ ଡକାଇ ବିଭିନ୍ନ ପ୍ରକାର ସମର କୌଶଳ ଓ କ୍ରୀଡ଼ା କୌଶଳ ଶିକ୍ଷା ଦେବାର ବ୍ୟବସ୍ଥା କରିଥିଲେ । ରାଜତ୍ୱର ଏକବର୍ଷ ପରେ ଚିକିଟି ରାଜା ରାମଚନ୍ଦ୍ର ଦେଓଙ୍କ କନ୍ୟାଙ୍କୁ ବିବାହ କରିଥିଲେ । ଗୋପୀନାଥ ପ୍ରଜାବତ୍ସଳ ଥିଲେ ଓ ସୁଖରେ ରାଜ୍ୟ ପରିଚାଳନା କରିଥିଲେ ।

ଏହାଙ୍କ ସମୟରେ ମିରଜା ଆସ୍ପବେଗ ବାହାଦର ଖାଁ ନାମକ ନବାବ ସାହେବ ସୈନ୍ୟ ସାମନ୍ତ ସହ ଲଙ୍ଗଳ ବେଣିଆ ଦୁର୍ଗ ପ୍ରାନ୍ତରେ ରହି ମୁଦ ରଚି ଦେଇ ସିକନ୍ଧି ଟଙ୍କା ଦେବାପାଇଁ ଗୋପୀନାଥଙ୍କ ପାଖକୁ ଦୂତ ପଠାଇଲେ । ଦୂତ ଦୁର୍ଗରେ ପହଞ୍ଚି ଗୋପୀନାଥଙ୍କୁ ଗର୍ବ ଦେଖାଇ "ସିକନ୍ଧି ଟଙ୍କା ଚୁକିଲ ଦିଅ ନଚେତ୍ ଯୁଦ୍ଧକୁ ପ୍ରସ୍ତୁତ ହୁଅ ।" ଗୋପୀନାଥ ଦୂତ ମୁଖରୁ ଏପରି ଶୁଣି ଦୂତକୁ ଅପମାନିତ ଦେଇଥିଲେ । ଦୂତ ଫେରିଯାଇ ନବାବଙ୍କ ନିକଟରେ ନିଜକୁ ଅପମାନିତ କରିବା କଥା ପ୍ରକାଶ କଲା । ନବାବ କୌଣସି କଥା ଚିନ୍ତା ନକରି ସୈନ୍ୟ ସାମନ୍ତ ସହ ଯୁଦ୍ଧ କରିବା ପାଇଁ ଅଷ୍ଟଦୁର୍ଗ ମଧ୍ୟରେ ପ୍ରବେଶ କଲେ । ଗୋପୀନାଥ ହରିଚନ୍ଦନ ସିକନ୍ଧି ଟଙ୍କା ଦେବାକୁ ପ୍ରସ୍ତୁତ ହେଉଥିଲେ କିନ୍ତୁ ନବାବଙ୍କ ଯୁଦ୍ଧ ଡାକରା ଯୋଗୁଁ ସେ ମଧ୍ୟ ଯୁଦ୍ଧପାଇଁ ପ୍ରସ୍ତୁତ ହୋଇଥିଲେ । ଦୁର୍ଗରେ ଥିବା ଚଉଦ ଗୋଟି କ୍ରୀଡ଼ା ଘରକୁ ଖବର ପଠାଇ ଯୋଦ୍ଧା ଓ ମଲ୍ଲମାନଙ୍କୁ ଡକାଇ ଆଣି ଯୁଦ୍ଧ ପାଇଁ ପ୍ରସ୍ତୁତ ହୋଇଥିଲେ । ଉଭୟ ସୈନ୍ୟଙ୍କ ମଧ୍ୟରେ ଭୀଷଣ ଯୁଦ୍ଧ ହୋଇଥିଲା । ଦୁହିଁଙ୍କ ସୈନ୍ୟ ମଧ୍ୟରୁ ପ୍ରଥମ ଦିନ ଯୁଦ୍ଧରେ ୫୮ ଜଣ ସୈନ୍ୟ

ସ୍ଥାଣ ହରାଇଥିଲେ ଓ ୨୭ ଜଣ ସୈନ୍ୟ ଖଣ୍ଡିଆ ଖାବରା ହୋଇଥିଲେ । ବିଶିଷ୍ଟ ଦିନ ନବାବ ଯୁଦ୍ଧରୁ ବିରତହୋଇ ପୁଣି ଗୋପୀନାଥ ହରିଚନ୍ଦନଙ୍କ ନିକଟକୁ ଦୂତ ପଠାଇଲେ । ଦୂତ ଯାଇ ନବାବଙ୍କ ସହିତ ସାକ୍ଷାତ କରିବାକୁ ଗୋପୀନାଥଙ୍କୁ ଅନୁରୋଧ କରିଥିଲା । ପରଦିନ ରାଜା ଗୋପୀନାଥ ସୈନ୍ୟ ସାମନ୍ତଙ୍କ ସହ ନବାବଙ୍କ ନିକଟରେ ପହଞ୍ଚିଥିଲେ । ରାଜା ଗୋପୀନାଥଙ୍କୁ ଦେଖି ନବାବ ପରମ ସନ୍ତୋଷ ହୋଇଥିଲେ । ରାଜା ଗୋପୀନାଥ ସିକନ୍ଧ ଟଙ୍କା ଦେଇଥିଲେ ଓ ନବାବଙ୍କୁ ଗୋଟିଏ ହାତୀ ଓ ଦୁଇଗୋଟି ଘୋଡ଼ା ଉପହାର ଦେଇଥିଲେ ।

ଏହାର କିଛିଦିନ ପରେ ରାଜା ଗୋପୀନାଥ ହରିଚନ୍ଦନ ରାଜ୍ୟ ପରିଭ୍ରମଣ କରିବାକୁ ଇଚ୍ଛାକରି ଦୁର୍ଗର ଉତ୍ତର ଦିଗସ୍ଥ ଅଞ୍ଚଳକୁ ଯାଇଥିଲେ । ସେଠାରେ ଥିବା ଲୁଣାଘାଟି ନାମକ ଏକ ପଲ୍ଲୀକୁ ଗୋପୀନାଥପୁର ଶାସନ ନାମରେ ନାମିତ କରି ବ୍ରାହ୍ମଣମାନଙ୍କୁ ଦାନ ଦେଇଥିଲେ । ଗୋପୀନାଥ ଦୁର୍ଗ ମଧ୍ୟରେ ଥିବା ସ୍ଥଳ ଜମିରେ ବିଭିନ୍ନ ପ୍ରକାର ଫଳଗଛ ରୋପଣ କରିଥିଲେ । ଏତଦ୍ ବ୍ୟତୀତ ଗୋପୀନାଥ ହରିଚନ୍ଦନ ନାଗେଶ୍ୱର, ଚମ୍ପା, କେତକୀ ପ୍ରଭୃତି ଫୁଲ ଉଦ୍ୟାନମାନ ତିଆର କରିଥିଲେ । ଏହି ରାଜାଙ୍କ ଶାସନ କାଳରେ ଜଙ୍ଗଲ ବେଷ୍ଟିଆ ଦୁର୍ଗର ପ୍ରାକୃତିକ ଶୋଭା ଅତୀବ ମନୋହର ହୋଇ ପଡ଼ିଥିଲା ।

ଗୋପୀନାଥ ହରିଚନ୍ଦନ ଶ୍ରୀକ୍ଷେତ୍ର ପୁରୁଷୋତ୍ତମ ଯାଇ ଦାରୁବ୍ରହ୍ମ ମୂର୍ତ୍ତି ଓ ଉତ୍କଳ ଗଜପତିଙ୍କୁ ଦର୍ଶନ କରିବାକୁ ଇଚ୍ଛାକରି ଶୁଭଦିନ ଦେଖି ଶ୍ରୀକ୍ଷେତ୍ରକୁ ଯାତ୍ରା କରିଥିଲେ । ଶ୍ରୀ ଜଗନ୍ନାଥଙ୍କ ଦର୍ଶନ ପରେ ଗଜପତିଙ୍କୁ ଦେଖା କରିବାକୁ ଯାଇଥିଲେ । ଗଜପତି ଅଷ୍ଟଦୁର୍ଗ ରାଜାଙ୍କ ଆଗମନ ବାର୍ତ୍ତା ପାଇ ଦେବାନଙ୍କୁ ପଠାଇ ବାଟରୁ ପାଛୋଟି ନେଇଥିଲେ । ଗୋପୀନାଥଙ୍କ ଠାରୁ ଅଷ୍ଟଦୁର୍ଗର ସମସ୍ତ ଘଟଣା ଶୁଣି ଗଜପତି ରାଜା ଦୁଃଖ ପ୍ରକାଶ କରିଥିଲେ । ଗୋପୀନାଥଙ୍କ ବ୍ୟବହାରରେ ପ୍ରୀତହୋଇ ଗଜପତି ବାଘେଇ ବାଦଶା ହରିଚନ୍ଦନ ଜଗଦ୍ଦେବ ପଦରେ ଭୂଷିତ କରି ଶାଢ଼ୀ ଓ ଶିରୋପା ପ୍ରଦାନ କରିଥିଲେ । ଗୋପୀନାଥ ଗଜପତିଙ୍କ ଅନୁରୋଧ ରକ୍ଷାକରି ଶ୍ରୀକ୍ଷେତ୍ରରେ କିଛିଦିନ ରହି ରାଜ୍ୟକୁ ଫେରିଥିଲେ ।

ଗୋପୀନାଥ ହରିଚନ୍ଦନ ଜଗଦ୍ଦେବ ଶ୍ରୀକ୍ଷେତ୍ରରୁ ଫେରି ଦେଖିଲେ ଯେ ନିଜ ରାଜ୍ୟ ଅନ୍ତର୍ଭୁକ୍ତ ଚୂଡ଼ିଗୋଟି ଗ୍ରାମକୁ ବଳପୂର୍ବକ ଖଲ୍ଲିକୋଟ ରାଜା ବାଲୁକେଶ୍ୱର ମର୍ଦ୍ଦରାଜ ନିଜ ରାଜ୍ୟରେ ମିଶାଇ ଦେଇ ଗୋପୀନାଥଙ୍କୁ ଦୂତ ଦ୍ୱାରା ଜଣାଇ ଦେଇଥିଲେ । ଦୂତଠାରୁ ଏହି ଖବର ପାଇ ଗୋପୀନାଥ ହରିଚନ୍ଦନ ପାତ୍ର ମନ୍ତ୍ରୀମାନଙ୍କ ସଙ୍ଗେ ପରାମର୍ଶକରି ଖଲ୍ଲିକୋଟ ମର୍ଦ୍ଦରାଜଙ୍କ ନିକଟକୁ ପାତ୍ରଙ୍କୁ ପଠାଇ ମରଦମେଟ୍ଟା, ଘୋଡ଼ାପଡ଼ା ଅଞ୍ଚଳର ଚୂଡ଼ିଗୋଟି ଗ୍ରାମ ନିଜ ରାଜ୍ୟରେ ମିଶାଇବାର କାରଣ ଜାଣିବାକୁ ଚାହିଁଥିଲେ । ମର୍ଦ୍ଦରାଜ ବାଲୁକେଶ୍ୱର କହିଥିଲେ, "ଆମେ ତୁମ ବାପାଙ୍କୁ ସାହାଯ୍ୟ କରିଥିଲୁ ସେ ଖଲ୍ଲଡ଼ି ମୁଠା ଆମ୍ଭଙ୍କୁ ଦେବାକୁ ଚୁକ୍ତି କରିଥିଲେ । କିନ୍ତୁ ସେ ତାଙ୍କର ଚୁକ୍ତିରେ ଅବମାନନା କରିଥିବାରୁ ଆମେ ବଳ ପୂର୍ବକ ସେହି ଚୂଡ଼ିଖଣ୍ଡି ଗ୍ରାମକୁ ଆମ ରାଜ୍ୟର ଅନ୍ତର୍ଭୁକ୍ତ କରିଦେଲୁ । ଏକଥା ତୁମେ କ'ଣ ଭୁଲିଗଲ କି ?" ପାତ୍ର ଖଲ୍ଲିକୋଟରୁ ଫେରିଆସି ମର୍ଦ୍ଦରାଜ କହିଥିବା ସମସ୍ତ କଥା ଗୋପୀନାଥଙ୍କୁ ଜଣାଇଲେ । ଗୋପୀନାଥ ପାତ୍ର ମୁହଁରୁ ଏପରି ଶୁଣି କ୍ରୋଧରେ ଯୁଦ୍ଧ ପାଇଁ ପ୍ରସ୍ତୁତ ହୋଇ ଚଉଦ ଆଖଡ଼ାକୁ ଖବର ଦେଇ ସୈନ୍ୟ ସାମନ୍ତ ସହ ମର୍ଦ୍ଦମେଟ୍ଟ ଅଭିମୁଖେ ଯାତ୍ରା କରିଥିଲେ । ଖଲ୍ଲିକୋଟ ମର୍ଦ୍ଦରାଜ ମଧ୍ୟ ଏ ଖବର ପାଇ ନିଜର ସୈନ୍ୟ ସାମନ୍ତ ସହ ସେଠାରେ ଉପସ୍ଥିତ ହୋଇଥିଲେ । ଉଭୟ ସୈନ୍ୟଙ୍କ ମଧ୍ୟରେ ଯୁଦ୍ଧ ଲାଗିଲା । ଯୁଦ୍ଧଭୂମି ତୋପ, ଗୁଳିଗୋଳା ଶବ୍ଦରେ ଅନ୍ଧକାର ହୋଇଗଲା । ଉଭୟ ପକ୍ଷ ସୈନ୍ୟ ନିହତ ହେବାକୁ ଲାଗିଲେ । କିଛି ସମୟ ପରେ ଖଲ୍ଲିକୋଟ ସୈନ୍ୟମାନେ ଭୟରେ ଯୁଦ୍ଧ କ୍ଷେତ୍ରରୁ ପଛଘୁଞ୍ଚା ଦେଇଥିଲେ । ଅଷ୍ଟଦୁର୍ଗ ସୈନ୍ୟମାନେ ତାଙ୍କୁ ପଛରୁ ଗୋଡ଼ାଇ ମାରିଥିଲେ । ସୈନ୍ୟମାନଙ୍କର ପଛଘୁଞ୍ଚା ଦେଖି ବାଲୁକେଶ୍ୱର ମର୍ଦ୍ଦରାଜ ସୈନ୍ୟମାନଙ୍କୁ ଅଟକାଇ ଯୁଦ୍ଧ କରିବାକୁ ମନା କରିଥିଲେ । ଖରୁଣ୍ଡୀ ଠାକୁରାଣୀଙ୍କ ଆଶୀଷରୁ ଗୋପୀନାଥ ହରିଚନ୍ଦନ ଜଗଦ୍ଦେବ ଯୁଦ୍ଧରେ ଜୟୀ ହୋଇ ଖଲ୍ଲିକୋଟ ରାଜା ବାଲୁକେଶ୍ୱର ମର୍ଦ୍ଦରାଜଙ୍କୁ ଅପମାନିତ କରିଥିଲେ ଓ ନିଜ ରାଜ୍ୟର ଚୂଡ଼ିଖଣ୍ଡି ଗ୍ରାମ ଫେରି ପାଇଥିଲେ । ଶେଷରେ ମାଙ୍କୁଳି ବାଲୁକେଶ୍ୱରଙ୍କୁ ନିଜ ରାଜ୍ୟକୁ ଆମନ୍ତ୍ରଣ କରି ଆଣିଥିଲେ । ଗୋପୀନାଥ ଓ ବାଲୁକେଶ୍ୱର ଅଷ୍ଟଦୁର୍ଗକୁ ଆସିଥିଲେ । ମର୍ଦ୍ଦରାଜ କିଛିଦିନ ଅଷ୍ଟଦୁର୍ଗରେ ରହି ନିଜ ରାଜ୍ୟକୁ ଫେରିଥିଲେ ।

ଗୋପୀନାଥ ହରିଚନ୍ଦନ ଜଗଦ୍ଦେବ ମହେନ୍ଦ୍ରଗିରି ଠାରେ ଦୁର୍ଗାପ୍ରସାଦ ନାମକ ଏକ କାରିଗରଙ୍କୁ ଡ଼କାଇ ସେଠାରେ ଏକ ଗଡ଼ ନିର୍ମାଣ କରିବାକୁ ଆଦେଶ ଦେଇଥିଲେ । କାରିଗର ଦୁର୍ଗାପ୍ରସାଦ ସେଠାରେ ମାଟି ଓ ପଥରରେ ଗୋଟିଏ ଗଡ଼ ନିର୍ମାଣ କରିଥିଲେ । ସେହି ଗଡର ନାମ ମାଟିଗଡ଼ ରଖାଗଲା । ଗଡ଼ ମଧ୍ୟକୁ ଝୋଷରା ପଞ୍ଚ ନିର୍ମାର କରାଯାଇଥିଲା । ପରେ ପରେ ତାହାକୁ ଘୋଡ଼ାପଡ଼ା ଗଡ଼ରେ ନାମିତ କରାଗଲା । ଏହି ଗଡ଼ର ପରିଚାଳନା ପାଇଁ ବଳଭଦ୍ର ପଟ୍ଟନାୟକଙ୍କୁ ନିଯୁକ୍ତ କରାଗଲା । ବଳଭଦ୍ର ପଟ୍ଟନାୟକଙ୍କ ପୁତ୍ର ମଦନ ପଟ୍ଟନାୟକଙ୍କୁ ଆଡ଼େଣୀ କାର୍ଯ୍ୟ ନୋଇବାକୁ ଓ ସ୍ଥାନ ରକ୍ଷା ନିମନ୍ତେ ପାଞ୍ଚଜଣ ସିପାହୀଙ୍କୁ ଇନାମ ଭୂମି ଦେଇ ସେଠାରେ ନିଯୁକ୍ତ କରାଗଲା । ଏହା ବ୍ୟତୀତ ଚଅଁର ବେହେରା, ପାଞ୍ଜିଆ, ସର୍ବାଧିକାରୀ ଦଳବେହେରା, ଢ଼ୋଲିଆ, ପରୀକ୍ଷା ବିଷୋୟୀ ଏ ରୂପେ ଅନ୍ୟମାନଙ୍କୁ ନିଯୁକ୍ତ କରାଯାଇଥିଲା । ଦୁଃଖର କଥା ଏହି ରାଜାଙ୍କର କୌଣସି ସନ୍ତାନ ନଥିଲେ । ସେଥିପାଇଁ ରାଜା ସର୍ବଦା ଦୁଃଖିତ ରହୁଥିଲେ । ଗୋପୀନାଥ ହରିଚନ୍ଦନ ଜଗଦ୍ଦେବ ଛଅବର୍ଷ ଛଅମାସ ରାଜତ୍ୱ କରିଥିଲେ । ୧୭୧୨ ଖ୍ରୀଷ୍ଟାବ୍ଦରେ ଏହାଙ୍କର ବିୟୋଗ ହୋଇଥିଲା ।

## ଊନବିଂଶ ରାଜା–ଭ୍ରମରବର ରଘୁନାଥ ହରିଚନ୍ଦନ ଜଗଦ୍ଦେବ (୧୭୧୨–୧୭୩୩)—

ଗୋପୀନାଥ ହରିଚନ୍ଦନ ଜଗଦ୍ଦେବ ୨୬ ବର୍ଷ ବୟସରେ ମୃତ୍ୟୁବରଣ କରିଥିଲେ । ସେତେବେଳକୁ ସାନଭାଇ ରଘୁନାଥଙ୍କୁ ୨୪ ବର୍ଷ ହୋଇଥିଲା । ଗୋପୀନାଥଙ୍କ ପରେ ରଘୁନାଥ ୧୭୧୨ ଖ୍ରୀଷ୍ଟାବ୍ଦରେ ଅଷ୍ଟଦୁର୍ଗର ରାଜ ସିଂହାସନ ଆରୋହଣ କରିଥିଲେ । ରଘୁନାଥ ଅତ୍ୟନ୍ତ ଗୁଣବନ୍ତ, ସୁଚତୁର, ପ୍ରଗାଢ଼ ବୁଦ୍ଧିମତା, ଦୂରଦର୍ଶୀ, ଅଦ୍ୱିତୀୟ ପରାକ୍ରମୀ, ସାହାସୀ, ଧାର୍ମିକ, ଜ୍ଞାନଶୀଳ ଓ ପ୍ରଜାବତ୍ସଳ ପ୍ରଭୃତି ସକଳ ଜ୍ଞାନର ଅଧିକାରୀ ହୋଇଥିଲେ । ବିଗ୍ରହ ମନ୍ତ୍ରଣାରେ ତାଙ୍କର ଅସାଧାରଣ ଶକ୍ତିଥିଲା । ଏପରି ସକଳ ଗୁଣରେ ପରିପୂର୍ଣ୍ଣ ଯୋଗୁଁ ସେ ଅଳ୍ପଦିନରେ ରାଜ୍ୟରେ ସୁନାମ ଅର୍ଜନ କରିଥିଲେ । ରଘୁନାଥ ଧରାକୋଟ ରାଜା ଜୟସିଂହଙ୍କ ଦୁହିତା ପ୍ରାଣଦେବୀଙ୍କୁ ବିବାହ କରିଥିଲେ । ପ୍ରାଣଦେବୀ ମଧ୍ୟ ମେଧାବୀ ଓ ଗୁଣବତୀ ଥିଲେ ।

ରଘୁନାଥ ହରିଚନ୍ଦନ ଜଗଦ୍ଦେବ ଲଙ୍ଗଳବେଣୀ ଦୁର୍ଗର ରାଜତ୍ୱ ଭାର ବହନ କରି ପ୍ରଥମେ ଦାନ ଓ ଦେବତ୍ୱ କର୍ମରେ ମନ ବଳାଇଥିଲେ । ବୃଦ୍ଧ ଓ ବୃଦ୍ଧାମାନଙ୍କ ସେବା କରିବା ପାଇଁ ସର୍ବଦା ଚେଷ୍ଟା କରିଥିଲେ । ଅଧିକାଂଶ ସମୟ ପୁରାଣ ଶାସ୍ତ୍ର ଅଧ୍ୟୟନରେ ନିଯୁକ୍ତ ରହୁଥିଲେ । ରାଜ୍ୟର ପଲ୍ଲୀଗ୍ରାମ ବାଳକ ବାଳିକାମାନଙ୍କୁ ଶିକ୍ଷାଦେବା ପାଇଁ ପାଠଶାଳା ନିର୍ମାଣ କରାଇଥିଲେ । ଶିକ୍ଷା ପ୍ରତି ବାଳକ ବାଳିକାମାନେ ଆକୃଷ୍ଟ ହେବାପାଇଁ ପୁରସ୍କାର ପ୍ରଦାନ କରିବାର ବ୍ୟବସ୍ଥା କରିଥିଲେ ।

ରାଜା ରଘୁନାଥ ଶ୍ରୀକ୍ଷେତ୍ର ଯାଇ ଜଗନ୍ନାଥ ଦର୍ଶନ ଓ ପୁରୀ ଗଜପତିଙ୍କୁ ସାକ୍ଷାତ କରି ରାଜ୍ୟର ଖବର ଜଣାଇବା ନିମନ୍ତେ ଶୁଭବେଳା ଦେଖି ରାଜ୍ୟ ଭାର ପତିଙ୍କୁ ସମର୍ପଣ କରି ଧନରତ୍ନ ସହ ପୁରୀ ଯାତ୍ରା କରିଥିଲେ । ସେହି ସମୟରେ ଉତ୍କଳର ଗଜପତି ଶ୍ରୀ ମୁକୁନ୍ଦଦେବ ଥିଲେ । ରଘୁନାଥ ଜଗନ୍ନାଥ ମହାପ୍ରଭୁଙ୍କ ଦର୍ଶନ ପରେ ଗଜପତିଙ୍କ ନିକଟରେ ପହଞ୍ଚିଥିଲେ । ଗଜପତି ମୁକୁନ୍ଦ ଦେବ ରାଜା ରଘୁନାଥଙ୍କୁ ସମାଦରରେ ରାଜ୍ୟର କୁଶଳବାର୍ତ୍ତା ପଚାରି ବୁଝିଥିଲେ । ଗଜପତି ରଘୁନାଥଙ୍କ ଗୁଣାବଳୀରେ ସନ୍ତୋଷ ହୋଇ ତାଙ୍କୁ ଭ୍ରମରବର ହରିଚନ୍ଦନ ଜଗଦ୍ଦେବ ଉପାଧିରେ ଭୂଷିତ କରି ସନନ୍ଦ ପ୍ରଦାନ କରିଥିଲେ ଏବଂ ରଘୁନାଥଙ୍କୁ ଶ୍ରୀକ୍ଷେତ୍ରରେ କିଛିଦିନ ରହି ଜଗନ୍ନାଥଙ୍କ ରଥଯାତ୍ରା ଉତ୍ସବରେ ଭାଗନେବାକୁ ଅନୁରୋଧ କରିଥିଲେ । ରଘୁନାଥ ହରିଚନ୍ଦନ ଗଜପତିଙ୍କ ଅନୁରୋଧ ରକ୍ଷାକରି ପାଇଁ ଏକମାସ ପୁରୀରେ କଟାଇଥିଲେ । ରାଜା ରଘୁନାଥ ମନସ୍ଥ କରିଥିଲେ ନିଜ ରାଜ୍ୟ ଅଷ୍ଟଦୁର୍ଗରେ ଗୋଟିଏ ମନ୍ଦିର ନିର୍ମାଣ କରି ଠାକୁରଙ୍କୁ ପ୍ରତିଷ୍ଠା କରି ସକଳ ପ୍ରକାର ଯାତମାନ୍ତି ପାଳନ କରିବାକୁ ।

ରଘୁନାଥ ଶ୍ରୀକ୍ଷେତ୍ରରୁ ଉପଯୁକ୍ତ ସମ୍ମାନ ପାଇ ରାଜ୍ୟକୁ ଶୁଭରେ ଫେରିଥିଲେ । ରଘୁନାଥଙ୍କ ଗୁଣଗ୍ରାମରେ ମୁଗ୍ଧ ହୋଇ ନରପୁରେଶ୍ବର ପଦ୍ମନାଭ ଅନଙ୍ଗ ଭୀମ୍‌ଦେବ ନିଜକନ୍ୟା ଚନ୍ଦ୍ରମାମଣୀ ଜେମାଙ୍କୁ ରଘୁନାଥଙ୍କ ସହିତ ବିବାହ ଦେବାକୁ ସ୍ଥିରକରି ମଧ୍ୟସ୍ଥି ପଠାଇଥିଲେ । ରଘୁନାଥ ଉକ୍ତ ପ୍ରସ୍ତାବରେ ସମ୍ମତି ପ୍ରକାଶ କରି ଦ୍ୱିତୀୟ ବିବାହ କରିଥିଲେ । ନୂଆଁ ଗଡ଼

ରାମଚନ୍ଦ୍ର ମାନଧାତା ନିଜ ଭଗ୍ନିଙ୍କୁ ରଘୁନାଥ ହରିଚନ୍ଦନଙ୍କୁ ଆଗ୍ରହର ସହିତ ପ୍ରଦାନ କରିବାରୁ ରଘୁନାଥ ଭୃଙ୍ଗପୁରର ପାଇଁ ବିବାହ କରିଥିଲେ ।

ପରେ ରଘୁନାଥ ହରିଚନ୍ଦନ ଶ୍ରୀକ୍ଷେତ୍ର ଠାକୁରଙ୍କ ଯାତ୍ରା କଥାମାନ ସ୍ମରଣ କରି ନିଜ ରାଜ୍ୟରେ ମନ୍ଦିର ନିର୍ମାଣ କରି ଦାରୁମୂର୍ତ୍ତି ସ୍ଥାପନ କରିବାକୁ ଇଚ୍ଛାକଲେ । ଏହି ବିଷୟ ପାଇଁକି ରାଜଗୁରୁଙ୍କୁ ଡ଼କାଇ ଦେଉଳ ତିଆର ନିମନ୍ତେ ପୁଚ୍ଛାକଲେ । ରାଜଗୁରୁ ପାଞ୍ଜିଆଙ୍କୁ ଡ଼କାଇ ବୈଶାଖ ଶୁକ୍ଳପକ୍ଷ ଦ୍ୱିତୀୟା ରବିବାରର ରୋହିଣୀ ନକ୍ଷତ୍ରରେ ଶୁଭଲଗ୍ନ ନିର୍ଣ୍ଣୟ କରିଥିଲେ । ସକଳ ପ୍ରକାର ବିଧି ବିଧାନ ପ୍ରକାରେ ଶିଳ୍ପକାର ଆନନ୍ଦ ମହାରଣାଙ୍କୁ ଡ଼କାଇ ଶୁଭାରମ୍ଭ କରାଗଲା । ଆନନ୍ଦ ମହାରଣା ମନ୍ଦିର ନିର୍ମାଣ ପାଇଁ ଶହ ଶହ କାରିଗରଙ୍କୁ ଲଗାଇ ଦୁଇବର୍ଷ ମଧ୍ୟରେ ମନ୍ଦିର ନିର୍ମାଣ କାର୍ଯ୍ୟ ସମାପନ କରିଥିଲେ ।

ମନ୍ଦିର କାର୍ଯ୍ୟ ସମାପନ ପରେ ରାଜା ରଘୁନାଥ ଦାରୁମୂର୍ତ୍ତି ନିର୍ମାଣ ପାଇଁ ଶ୍ରୀକ୍ଷେତ୍ରରୁ ଶିଳ୍ପୀକାରମାନଙ୍କୁ ଆଣିଥିଲେ । ଶିଳ୍ପୀକାରମାନେ ତିନିମାସ ମଧ୍ୟରେ ତିନି ଠାକୁରଙ୍କ ତିନିଗୋଟି ଦାରୁମୂର୍ତ୍ତି ନିର୍ମାଣ କରିଥିଲେ । ମୂର୍ତ୍ତି ନିର୍ମାଣ ପରେ ରାଜା ରଘୁନାଥ ରାଜଗୁରୁଙ୍କ ପରାମର୍ଶ କ୍ରମେ ପାଞ୍ଜିକାରଙ୍କୁ ଡ଼କାଇ ମନ୍ଦିର ପ୍ରତିଷ୍ଠା ପାଇଁ ଦିନ ସ୍ଥିରକଲେ । ମକର ଶୁକ୍ଳପକ୍ଷ ପଞ୍ଚମୀ ଗୁରୁବାର ପୁଷ୍ୟା ନକ୍ଷତ୍ର ଓ ଚନ୍ଦ୍ରମା କୁମ୍ଭିର ଦିବସ ଏକବିଂଶ ଦଣ୍ଡ ଭୋଗ କାଳେ ଲକ୍ଷ୍ମୀପତି ଦେଉଳରେ ବିଜେ ହେବା କଥା ପାଞ୍ଜିଆ କହିଥଲେ ।

ମନ୍ଦିର ପ୍ରତିଷ୍ଠା ଓ ଠାକୁରଙ୍କ ସିଂହାସନାରୋହଣ ନିମନ୍ତେ ଶ୍ରୀକ୍ଷେତ୍ରରୁ ବିଜ୍ଞ ବିପ୍ରମାନଂକୁ ଆମନ୍ତ୍ରଣ କରି ଆଣିଥିଲେ । ସେହି ପ୍ରତିଷ୍ଠାରେ ପାଝେଯୋଷୀଂକୁ ବ୍ରହ୍ମାପଣରେ, ରାଜଗୁରୁଂକୁ ପ୍ରଗ୍ରରକ ରୂପେ ବରଣ କରାଯାଇଥିଲା । ରାଜ୍ୟର ଅନ୍ୟାନ୍ୟ ଶାସନମାନଙ୍କରୁ ବ୍ରାହ୍ମଣମାନଙ୍କୁ ଆମନ୍ତ୍ରଣ କରି ବିଭିନ୍ନ କାର୍ଯ୍ୟରେ ନିଯୁକ୍ତ କରାଯାଇଥିଲା । ରାଜା ପୁରଧା ଆଚାର୍ଯ୍ୟ ରୂପେ ରହି ପ୍ରତିଷ୍ଠା କାର୍ଯ୍ୟ ସମାପନ କରାଯାଇଥିଲା । ପ୍ରତିଷ୍ଠା ଶେଷରେ ବ୍ରାହ୍ମଣମାନଙ୍କୁ ସକଳପ୍ରକାର ଦାନଦେଇ ସନ୍ତୋଷରେ ସେମାନଙ୍କୁ

ବଦାପ୍ତ କରିଥିଲେ । ପଞ୍ଚ ଶୋତ୍ତର ଷୋଳଶତ ଶକାବ୍ଦରେ ମନ୍ଦିର ନିର୍ମାଣ ହୋଇଥିବା କଥା ଦେଉଳ ମାଳଚନ୍ଦରେ ସାର୍ଦ୍ଦୂଳ ବିକ୍ରିଡ଼ିତ ଛନ୍ଦରେ ଲିଖିତ ହୋଇଅଛି ।

"ବ୍ରହ୍ମନାମ ମଣ୍ଡପଡେ ଯ ଚନ୍ଦ୍ରସ୍ୟେ ପୂର୍ବାଚଳେ ଚନ୍ଦ୍ରମା
ଦେବ୍ୟାସ୍ତୁ ସ୍ଫୁଷ୍ଟୁବେ ସୁଧାକର ମିବ ପ୍ରାଚକଳା କୋମଳଂ ।
ଯସ୍ୟା ଦ୍ୱାବନୁବୌ ମହାର୍ଣ୍ଣଳ ଭ୍ରୁକୌ ଧ୍ରୁ ପରି ଭୂମି ଭୁଜୌ
ଷବୈଦୋ ଭୁବ ବଣ୍ଟତୋ ଗିରିଧରଃ ଶ୍ରୀ ବ୍ରବ୍ୟସିଂହୋ ପରଃ । ୧ ।
ଯସ୍ୟା ପ୍ରାଣସମା ସମଗୁଣ ଗଣୈଃ ଶ୍ରୀ ପ୍ରାଣଦେବୀ ପ୍ରିୟା
ଯାତୋ ଯତ୍ପଠରେ ସୁତଃବେଦ ଜଗବନ୍ଧୁ ଯଥାର୍ଥଭିଧଃ ।
ସ୍ୱାମାଦ୍ଧନଣ ହସୋ ମଧାସ୍ତୁ ମସୋ ଯସ୍ୟାତ ପଷାନ୍ତରେ
ସୂର୍ଯ୍ୟୋଣ୍ଟନ୍ଦ୍ର ମମୌନିଳସ୍ତୁ ବସନ୍ତ ସ୍ତବର୍ଣ୍ଣନେ କେବଯ୍ସ । ୨ ।
ସ୍ତ୍ରୀଣାଂ ମୋହନ ମଞ୍ଜୁଷା ବିଳଷଣଂ ଭୃତର୍ଥନା ମାର୍ଥନାଂ
କଳ୍ପଦ୍ରୁଃ ସୁଧୀସ୍ଵାଂ ସୁଧାକରକଳା ଭୂମଣ୍ଡଳୀ ମଣ୍ଡନଂ ।
ସୋଽୟଂ ଶ୍ରୀ ରଘୁନାଥ ନାମ ନୃପତି ଲକ୍ଷ୍ମୀପତି ପ୍ରୀତୟେ
ଶାକେଦ୍ରେ ଖଶରର୍ତ୍ତୁ ଶୀତ ଶୁଣିତେ ପ୍ରାସାଦ ମାସାଦୟେତ" । ୩ ।

ରଘୁନାଥ ହରିଚନ୍ଦନ ଜଗଦ୍ଦେବ ଠାକୁରମାନଙ୍କ ଅମୃତ ମଣୋହି ନିମନ୍ତେ ପ୍ରଥମେ ଦୁଇଗୋଟି ଗ୍ରାମ ଯଥା କୁଆନନ୍ଦ ଓ ଟିଙ୍କିକାବାଡ଼ ଝଞ୍ଜି ଦେଇଥିଲେ । ପରବର୍ଷ ଦେଖିଲେ ଯେ ସେହି ଦୁଇଗ୍ରାମର ଆଦାୟରେ ଠାକୁରମାନଙ୍କ ଅମୃତ ମଣୋହି ଧନ ନଅଣ୍ଟ ପଡୁଅଛି । ରଜା ପୁନଶ୍ଚ ରାଜଗୁରୁଙ୍କ ସହ ଏହି ବିଷୟରେ ପରାମର୍ଶ କରି ଅସୁବିଧାର ସମାଧାନ ପାଇଁ ଆଉ ଚାରିଗୋଟି ଗ୍ରାମ ଯଥା କଙ୍କୋରଡ଼ା, ଶଙ୍ଖାପୁର, ରାଣୀପଡ଼ା ଓ ଉସ୍ତ ପଡ଼ାର ଜମିକୁ ଠାକୁରଙ୍କ ଅମୃତ ମଣୋହି ପାଇଁ ଝଞ୍ଜି ଦେଲେ । ସେହି ଛଅଗୋଟି ଗ୍ରାମର ଆଦାୟରେ ଠାକୁରଙ୍କ ଅମୃତ ମଣୋହି ସହିତ ସମସ୍ତ ପ୍ରକାର ଯାତ୍ରାଦି ଓ ଭୋଗରାଗ ଚଳି ଯାଉଥିଲା । ମନ୍ଦିରର ପରିଚାଳନା କାର୍ଯ୍ୟ ସମ୍ପାଦନ କରିବା ପାଇଁ ମଦନ ଖରସଧା ପଟ୍ଟନାୟକଙ୍କୁ ନିଯୁକ୍ତ କରାଗଲା । ପରେ ପରେ ଅନ୍ୟାନ୍ୟ ଦାତାମାନେ ଠାକୁରଙ୍କ

ଯେ ତମାନ୍ତ ପାଇଁ ବିଭିନ୍ନ ଗ୍ରାମରେ ଠାକୁରଙ୍କ ନାମରେ ଜମି ଝଞ୍ଜିଥିଲେ । ଶିଳ୍ପୀକାର ଆନନ୍ଦ ମହାରଣା ପଥରରେ ରଜା ରାଣୀଙ୍କ ଦୁଇଟି ପ୍ରତିମୂର୍ତ୍ତି ନିର୍ମାଣ କରି ରାଜାଙ୍କୁ ପ୍ରଦାନ କରିଥିଲେ । ଗୋଟିଏ ରଜା ରଘୁନାଥ ହରିଚନ୍ଦନ ଜଗଦ୍ଦେବ ନିଜ ବେଶ ଛଟାରେ ବେନିକର ଯୋଡ଼ି ମସ୍ତକଙ୍କୁ ତଳକରି ଭକ୍ତ ହୋଇଛନ୍ତି ଓ ଅନ୍ୟଟି ରାଣୀ ପ୍ରାଣଦେବୀ ଗୃହର ଧରି ଠାକୁରଙ୍କ ସେବାରେ ନିଯୁକ୍ତ ଅଛନ୍ତି । ଏହି ଦୁଇଗୋଟି ମୂର୍ତ୍ତି ଦେଖି ରାଜା ପରମ ସନ୍ତୋଷରେ ମନ୍ଦିର ମଧ୍ୟସ୍ଥ ସିଂହାସନ ତଳେ ଉଭୟ ପାର୍ଶ୍ବରେ ସ୍ଥାପନ କରିଥିଲେ ।

## କନକଦୁର୍ଗା ଓ ମନ୍ଦିର ନିର୍ମାଣ—

ରଜା ରଘୁନାଥ ରଜବାଟୀରେ ଦେବୀ ପୂଜା ନିମନ୍ତେ କନିକରେ ଏକ ବନଦୁର୍ଗା ମୂର୍ତ୍ତି ନିର୍ମାଣ କରିବାକୁ ପାତ୍ରଙ୍କ ସହ ପରାମର୍ଶ କରି ଆଠଗଡ ଘାଟଣା ବଣିଆ ସାହିସ୍ଥିତ ଜଗବନ୍ଧୁ ନାମକ ପ୍ରସିଦ୍ଧ ସ୍ୱର୍ଣ୍ଣକାରଙ୍କୁ ଡ଼କାଇ ଆଣିଥିଲେ । ରାଜା ସ୍ୱର୍ଣ୍ଣରେ ବନଦୁର୍ଗା ପ୍ରତିମା ନିର୍ମାଣ କରିବାକୁ କହିଲେ । ରାଜାଙ୍କଠାରୁ ଆଦେଶ ପାଇ ସ୍ୱର୍ଣ୍ଣକାର ବନଦୁର୍ଗା ପ୍ରତିମାର ଚିତ୍ର ଅଙ୍କନ କରି ରାଜାଙ୍କୁ ଦେଖାଇଲା । ରାଜା ସେହି ପ୍ରତିମାକୁ ଦେଖି ବାଂଶଶତ ତୋଳା ସୁବର୍ଣ୍ଣରେ ମୂର୍ତ୍ତି ତିଆରି କରିବାକୁ ସ୍ଥିରକରି ପାତ୍ରଙ୍କୁ ଆଦେଶ ଦେଲେ । ସାଧାରଣତଃ ସ୍ୱର୍ଣ୍ଣକାରମାନେ ସୁବର୍ଣ୍ଣ ଦରବରେ ପିତ୍ତଳ ମିଶାଇ ସୁନା ବାହାର କରନ୍ତି । ତେଣୁ ରାଜା ଉକ୍ତ ସ୍ୱର୍ଣ୍ଣକାରଙ୍କୁ ପ୍ରଶ୍ନକଲେ ଏହି ବାଂଶଶତ ତୋଳା ସୁବର୍ଣ୍ଣରୁ ତୁମେ କେତେ ସୁନା ଠକି ନେଇ ପାରିବ । ସ୍ୱର୍ଣ୍ଣକାର ଜଗବନ୍ଧୁ କହିଲେ, "ପ୍ରଭୁ ! ଆମରତ ବୃତ୍ତି ତାହା ଏଣେ ରାଜାଘର କାମ ସଦାସର୍ବଦା ଜଗୁଆଳ ରହିବେ ମୁଁ ବା କିପରି ଠକିବ । ଯଦି ଠକିବ ତାହାହେଲେ ତ ସବୁ ଠକିଦେବ ।"

ସ୍ୱର୍ଣ୍ଣକାର ମୁଖରୁ ଏପରି ସବୁ ଠକିଦେବା କଥା ଶୁଣି ରଜା ଆଶ୍ଚର୍ଯ୍ୟ ହୋଇ କହିଲେ, "ଠିକ୍ ଅଛି ତୁମକୁ ଦରବାର ମଧ୍ୟରେ ଗୋଟିଏ କୋଠରୀ ଯୋଗାଇ ଦିଆଯିବ । ତୁମେ ସେଠାକୁ ଆସି ପ୍ରତିଦିନ ପ୍ରତିମା ତିଆରି କରିବ ଏବଂ ଚାଲିବେଳେ ଶୂନ୍ୟହସ୍ତରେ ଯିବ । ତୁମେ କାମକରିବା

ସମୟରେ ଆମର ଜଗୁଆଳମାନେ ଜଗିରହିବେ ।" ସ୍ୱର୍ଣ୍ଣକାର ଏଥିରେ ସ୍ୱୀକୃତି ପ୍ରଦାନ କରିବାରୁ ରାଜାଙ୍କ କହିବା ପ୍ରକାରେ ଦରବାର ମଧ୍ୟସ୍ଥ ଏକ କୋଠରୀରେ ଦୁର୍ଗା ପ୍ରତିମା ନିର୍ମାଣ କରିବା ପାଇଁ ବାଂଶଗଡ଼ ତୋଳା ସୁବର୍ଣ୍ଣ ଯୋଗାଇ ଦିଆଗଲା । ପ୍ରତିଦିନ ସ୍ୱର୍ଣ୍ଣକାର ଦରବାରକୁ ଆସି କାମ କଲା । ତାହା ପାଖରେ ସବୁଦା ଜଗୁଆଳ ବସିଥାଏ । ସ୍ୱର୍ଣ୍ଣକାର ସନ୍ଧ୍ୟାରେ ଘରକୁ ଫେରିଗଲାବେଳେ ଶୂନ୍ୟ ହସ୍ତରେ ଫେରିଯାଏ । ସ୍ୱର୍ଣ୍ଣକାର ଘରକୁ ଫେରି ରାତିରେ ସୁବର୍ଣ୍ଣ ପ୍ରତିମାର ଅବିକଳ ନକଲ ପିତଳର ଗୋଟିଏ ପ୍ରତିମା ନିର୍ମାଣ କରୁଥାଏ । ରାଜାଙ୍କ ଦରବାରସ୍ଥ କୋଠରୀରେ ଯେପରି ସୁବର୍ଣ୍ଣରେ କାମ କରେ ଘରେ ଅବିକଳ ସେପରି ପ୍ରତିମା ପିତଳରେ ଗଢ଼େ । ଦିନତମାମ ରାଜାଙ୍କ ଜଗୁଆଳ ସ୍ୱର୍ଣ୍ଣକାରକୁ ଜଗିରହେ ।

•

କିଛିଦିନ ପରେ ସ୍ୱର୍ଣ୍ଣକାର ସୁବର୍ଣ୍ଣର ବନଦୁର୍ଗା ପ୍ରତିମା ସମ୍ପୂର୍ଣ୍ଣ କରିଦେଲା । ଏଣେ ଘରେ ଅବିକଳ ପିତଳ ମୂର୍ତ୍ତି ସମ୍ପୂର୍ଣ୍ଣ ହେଲା । ସ୍ୱର୍ଣ୍ଣପ୍ରତିମା ଓ ପିତଳ ପ୍ରତିମା ଅବିକଳ ଏକାପରି ହୋଇଥିଲା । ମୂର୍ତ୍ତି ନିର୍ମାଣ କାର୍ଯ୍ୟ ସମ୍ପୂର୍ଣ୍ଣ ହେବାପରେ ସ୍ୱର୍ଣ୍ଣକାର ରାଜାଙ୍କୁ ଅନୁରୋଧ କରି କହିଲେ ଯେ ମୂର୍ତ୍ତି ପରିଷ୍କାର କରିବା ନିମନ୍ତେ ଏକହାଣ୍ଡି ଗୁଆଦହି ଆବଶ୍ୟକ । ଏହାଶୁଣି ରାଜା ଗଉଡୁଣୀଙ୍କୁ ଆଦେଶ ଦେଲେ ସ୍ୱର୍ଣ୍ଣକାର ଘରେ ଏକହାଣ୍ଡି ଗୁଆଦହି ପହଞ୍ଚାଇ ଦେବାପାଇଁ । ରାଜାଙ୍କ ଆଦେଶରେ ଗଉଡୁଣୀ ଦହି ହାଣ୍ଡିଏ ଧରି ସ୍ୱର୍ଣ୍ଣକାର ଘରେ ପହଞ୍ଚିଲା । ସ୍ୱର୍ଣ୍ଣକାର ସେହି ଦହି ହାଣ୍ଡିରେ ଘରେ ନିର୍ମାଣ କରିଥିବା ପିତଳ ପ୍ରତିମାଟିକୁ ପୂରାଇଦେଇ ଗଉଡୁଣୀକୁ କହିଲେ ତୁ ଏହି ଦହି ନେଇ ରାଜାଙ୍କ ନଅରକୁ ଯିବୁ । ସମସ୍ତଙ୍କ ଆଗରେ ମୋ ପାଖରେ ରଖିଦେଇ ଆସିବୁ । ଗଉଡୁଣୀ ଦହି ହାଣ୍ଡି ଧରି ରାଜନଅରକୁ ଗଲା । ସ୍ୱର୍ଣ୍ଣକାର ନିକଟରେ ଦହି ହାଣ୍ଡି ରଖିଦେଲା । ସ୍ୱର୍ଣ୍ଣକାର ସୁବର୍ଣ୍ଣର ପ୍ରତିମାଟି ଦହିହାଣ୍ଡି ମଧ୍ୟରେ ରଖିଦେଇ ଘରେ ତିଆରି କରିଥିବା ପିତଳ ପ୍ରତିମାଟି ଦହିରୁ ବାହାର କରି ଗଉଡୁଣୀକୁ ପୁଣି କହିଲେ ତୁ ନେଇ ଏହି ଦହି ହାଣ୍ଡିକ ଆମଘରେ ଦେଇ ଆସିବୁ । ସ୍ୱର୍ଣ୍ଣକାର କହିବା ପ୍ରକାରେ ଗଉଡୁଣୀ ପୁଣି ଦହି ହାଣ୍ଡି ଧରି ସ୍ୱର୍ଣ୍ଣକାର ଘରେ ଦେଇ ନିଜ ଗୃହକୁ ଚାଲିଗଲା ।

ସ୍ୱର୍ଣ୍ଣକାର ପିତଳ ନିର୍ମିତ ପ୍ରତିମାଟି ପରୀକ୍ଷାର କରି ରାଜାଙ୍କୁ ଦେଖାଇଲେ । ରାଜା ପ୍ରତିମାଟି ଦେଖି ପରମ ସନ୍ତୋଷ ହେଲେ । ରାଜା ସ୍ୱର୍ଣ୍ଣକାରଙ୍କୁ ପଚାରିଲେ, "ଜଗବନ୍ଧୁ ତୁମେ ଏହି ପ୍ରତିମା ନିର୍ମାଣ କରି କେତେ ସୁନା ଠକିଅଛ ।" ସ୍ୱର୍ଣ୍ଣକାର ତ ଆଗରୁ ରାଜାଙ୍କୁ କହିଥିଲା ଯେ ସୁବିଧା ହେଲେ ସବୁ ଠକିଦେବ । ଏଣୁ ସେ ରାଜାଙ୍କୁ କହିଲା, "ମହାରାଜ ଆପଣ ଯଦି କ୍ଷମାଦେବେ ତେବେ ମୁଁ ସତକଥା କହିବି ।" ରାଜା ସେଥିପାଇଁ ରାଜି ହେବାରୁ ସ୍ୱର୍ଣ୍ଣକାର କହିଲା ପ୍ରଭୁ ! ମୁଁ ସବୁସୁନା ଠକି ଦେଇଅଛି । ରାଜା ଆଶ୍ଚର୍ଯ୍ୟ ହୋଇ ଠକିବା କଥା ପଚାରିଲେ ।

ସ୍ୱର୍ଣ୍ଣକାର ଘରକୁ ଆସି ଦହି ହାଣ୍ଡିରେ ପଡ଼ିଥିବା ସୁବର୍ଣ୍ଣ ପ୍ରତିମାଟିକୁ ଧରି ନବରରେ ପହଞ୍ଚିଲା । ପିତଳ ଓ ସୁବର୍ଣ୍ଣ ଦୁଇଟିଯାକ ପ୍ରତିମା ରାଜାଙ୍କୁ ଦେଖାଇଲା । ରାଜା ଦେଖିଲେ ଯେ କେଉଁଟି ପିତଳ ଓ କେଉଁଟି ସୁବର୍ଣ୍ଣ ଜାଣି ହେଉନାହିଁ । ରାଜ ପରିଷଦର ସମସ୍ତେ ଦୁଇଟିଯାକ ପ୍ରତିମା ଦେଖି କେଉଁଟି ପିତଳ ଓ କେଉଁଟି ସୁବର୍ଣ୍ଣ ଆଦୌ ଜାଣିପାରିଲେ ନାହିଁ । ଶେଷରେ ସ୍ୱର୍ଣ୍ଣକାର ଠିକ୍ କଥାଟି କହିବାରୁ ରାଜା ବିସ୍ମିତ ହୋଇଗଲେ । ଦୁଇଟିଯାକ ପ୍ରତିମାର ଓଜନ ସମାନ, ଗଠନରେ ଅବିକଳ ସମାନ ଏକପରି । ସ୍ୱର୍ଣ୍ଣକାରଠାରୁ ଠକିବା କଥା ଶୁଣି ତାହାପ୍ରତି ସନ୍ତୋଷ ହୋଇ ତାଙ୍କୁ ଅର୍ଜୁନପଲ୍ଲୀ ନାମକ ଗ୍ରାମକୁ ଇନାମ ରୂପେ ପ୍ରଦାନ କରିଦେଲେ । ରାଜାଙ୍କ ଠାରୁ ପାରିଶ୍ରମିକ ଓ ଇନାମ ଗ୍ରାମ ପାଇ ସୁଖରେ ରହିଥିଲେ ।

ଦେବୀ ପ୍ରତିମା ନିର୍ମାଣ ଶେଷ ହେବା ପରେ ରାଜାଙ୍କୁ ଆଦେଶ ଦେଇ ଗୋଟିଏ ମନ୍ଦିର ନିର୍ମାଣ କରାଇଲେ । ଶୁଭଦିନ ଦେଖି ଦେବୀଙ୍କ ପ୍ରତିଷ୍ଠା କାର୍ଯ୍ୟ ସମାପନ କରିଥିଲେ । ଦେବୀ ପ୍ରତିମାଟି କନକରେ ନିର୍ମାଣ ହୋଇ-ଥିବାରୁ ହେତୁ ଦେବୀଙ୍କୁ କନକଦୁର୍ଗା ନାମରେ ନାମିତ କରାଗଲା । କନକ ଦୁର୍ଗାଙ୍କ ଅମୃତ ମଣୋହି ପାଇଁ ଏକାଦଶୀ ଓ ଜେନାପୁର ନାମକ ଦୁଇଟି ଗ୍ରାମର ଜମିକୁ ଖଞ୍ଜି ଦିଆଗଲା । ପ୍ରତିଷ୍ଠା ଦିନଠାରୁ ପିତଳ ଓ ସ୍ୱର୍ଣ୍ଣପ୍ରତିମା ଦୁଇଟିଯାକ ମନ୍ଦିରରେ ରହି ପୂଜା କରାଗଲା । ପରେ ପରେ ରାଜା ଷୋଡ଼ଶ ଉପଚାରରେ ଦେବୀଙ୍କ ପୂଜାବିଧିମାନ କରାଇଥିଲେ । କନକଦୁର୍ଗା

ଅଷ୍ଟବୃନ୍ଦ ର ଜଙ୍ଗଲର ଇଷ୍ଟଦେବୀ ରୂପେ ଅଦ୍ୟାବଧି ପୂଜା ପାଇ ଆସୁଛନ୍ତି । କନକ ଦୁର୍ଗାଙ୍କ ଆଶୀଷ ଲାଭକରି ଅନେକ ଲୋକ ନିଜର ଜୀବନକୁ ଚରିତାର୍ଥ କରିଛନ୍ତି । କନକ ଦୁର୍ଗାଙ୍କ ମହିମା ଅତୁଳନୀୟ । ଦେବୀଙ୍କୁ ସାଧନା କରି ଯେ କୌଣସି ଅସାଧ୍ୟ କାର୍ଯ୍ୟକୁ ମଧ୍ୟ ସାଧନ କରି ହେଉଅଛି ।

## ରଘୁନାଥ ସାଗର ବା ଭିତର ସାଗର ଖୋଦିତ ହେବା ପୂର୍ବକଥା -

ଥରେ ରଘୁନାଥ ହରିଚନ୍ଦନ ଜଗଦ୍ଦେବ ଗୋଟିଏ ଶୁକପକ୍ଷୀ ରଖିବା ପାଇଁ ମନସ୍ଥ କରି ପାତ୍ରଙ୍କୁ ଡାକି କହିଲେ ଯେ ଯେଉଁ ଗ୍ରାମରେ ସୁନ୍ଦର ଶୁକପକ୍ଷୀ ଥିବ ଓ ଉତ୍ତମ କଣ୍ଠରେ ଡାକ ଦେଉଥିବ ସେପରି ଗୋଟିଏ ପକ୍ଷୀ ଆଣନ୍ତୁ ତାକୁ ରାଜବାଟୀରେ ରଖିବା । ରାଜାଙ୍କ କଥାରେ ପାତ୍ର ସ୍ୱୀକାର କରି ଦୂତମାନଙ୍କୁ ଆଦେଶ ଦେଲେ ଯେଉଁଠାରେ ଏପରି ଶୁକପକ୍ଷୀ ଦେଖିବ ଯେ କି ସୁନ୍ଦର ଗୀତ ଗାଉଥିବ ତାହା ଆସି ଆମ୍ଭଙ୍କୁ ଜଣାଇବ । ପାତ୍ରଙ୍କ ଠାରୁ ଏପରି ଶୁଣି ଉପସ୍ଥିତ ଥିବା ଜଣେ ରାଜକର୍ମଚାରୀ ଧୀର କଣ୍ଠରେ ପାତ୍ରଙ୍କୁ କହିଲେ ଯେ ସେ ଦୁଇଦିନ ତଳେ ଗୋବର୍ଦ୍ଧନ ପାଞ୍ଜିଆଙ୍କ ଘରେ ଏକ ସୁନ୍ଦର ଶୁକପକ୍ଷୀ ଦେଖିଛି, ସେହି ପକ୍ଷୀଟି ସୁନ୍ଦର ଭାବେ ନୃତ୍ୟ କରି ଗୀତ ଗୋବିନ୍ଦ ଗାନ କରୁଅଛି ଏବଂ ଘରର ସମସ୍ତଙ୍କ ନାମଧରି ଡାକ ପକାଉଛି । ସେହି ଶୁକପକ୍ଷୀଟି ଆମ ରାଜାଙ୍କ ପାଇଁ ଉପଯୁକ୍ତ ହେବ । ନୃପତି ଆଦେଶ ଦେଲେ ଗୋବର୍ଦ୍ଧନ ପାଞ୍ଜିଆ ସେହି ଶୁକପକ୍ଷୀଟି ଆଣି ଦେଇଯିବ । ପାତ୍ର ଏହି ବିଷୟ ରାଜାଙ୍କୁ ଜଣାଇଲେ । ରାଜା ସଙ୍ଗେ ସଙ୍ଗେ ଗୋବର୍ଦ୍ଧନ ପାଞ୍ଜିଆଙ୍କୁ ଡକାଇ ଆଣିବାକୁ ଆଦେଶ କଲେ । ପାତ୍ର ଦୂତ ପଠାଇ ପାଞ୍ଜିଆଙ୍କୁ ଡକାଇ ଆଣି ରାଜାଙ୍କ ସମ୍ମୁଖରେ ଉପସ୍ଥିତ କରାଇଲେ । ପାଞ୍ଜିଆକୁ ଦେଖି ରାଜା ଆଦେଶ କଲେ "ଗୋବର୍ଦ୍ଧନ ମୁଁ ଶୁଣିଲି ତୁମର ଗୋଟିଏ ଶୁକପକ୍ଷୀ ଅଛି । ସେହି ପକ୍ଷୀଟି ସୁନ୍ଦରଭାବେ ଗୀତ ଗାଉଅଛି ଓ ସମସ୍ତଙ୍କ ନାମଧରି ଡାକୁଅଛି । ସେହି ପକ୍ଷୀଟିକୁ ମୋର ଆଗ୍ରହ ବଳିଛି, ତାକୁ ତୁମେ ମୋତେ ଦିଅ । ତୁମର ଯାହା ଆବଶ୍ୟକ ମୁଁ ତାର ବଦଳରେ ଦେବି ।" ରାଜାଙ୍କ ଠାରୁ ଏପରି ଶୁଣି ଗୋବର୍ଦ୍ଧନ ନିରୁପାୟ । କ'ଣ ବା କହିବ ନୀରବ ରହି ତାକୁ ଦେବାପାଇଁ ରାଜିହେଲା ।

ଗୋବର୍ଦ୍ଧନ ଗୃହକୁ ଆସି ସ୍ତ୍ରୀଙ୍କୁ ଏହି ଘଟଣା ଜଣାଇଲେ । ସ୍ତ୍ରୀ ଦୁଃଖରେ ଭାଙ୍ଗି ପଡ଼ିଲେ । ସେ ସ୍ୱାମୀଙ୍କୁ କହିଲେ, "ମୁଁ ସେହି ଶୁକପକ୍ଷୀଟିକୁ ପୁତ୍ରଠାରୁ ଅଧିକ ସ୍ନେହ ଦେଇ ଆସିଛି । ତାକୁ ଛାଡ଼ି ମୁଁ କ୍ଷଣେମାତ୍ର ରହି ପାରିବି ନାହିଁ ।" ସ୍ତ୍ରୀ ମୁଖରୁ ଏପରି ଶୁଣି ଗୋବର୍ଦ୍ଧନ କହିଲେ, ମୋର ମଧ୍ୟ ସେହି କଥା । ମୁଁ ଭୟରେ ସିନା ରାଜାଙ୍କୁ କିଛି କହିପାରିଲି ନାହିଁ କିନ୍ତୁ ଶୁକପକ୍ଷୀ ବ୍ୟତୀତ ମୁଁ ମଧ୍ୟ ରହିପାରିବି ନାହିଁ । ତେବେ ଆମେ ଏ ରାଜ୍ୟ ଛାଡ଼ି ଅନ୍ୟ ରାଜ୍ୟକୁ ଚାଲିଯିବା, କିନ୍ତୁ ଆମ ଶୁକପକ୍ଷୀ ରାଜାଙ୍କୁ ଦେଇ ପାରିବା ନାହିଁ ।

ଗୋବର୍ଦ୍ଧନ ଧନସାରା ଘରେ ଥିବା ସକଳ ଦ୍ରବ୍ୟ ଜିନିଷ ସଜାଇ ବୋଝ ବାନ୍ଧିଦେଲେ । ତାଙ୍କର ଗୋଟିଏ ଦ୍ରୁତଗାମୀ ଅଶ୍ୱ ଥିଲା । ଆଗରୁ ସେହି ଅଶ୍ୱକୁ ଭଲଭାବେ ଖାଦ୍ୟ ଦିଆଇ ରଖିଲେ । ରାତ୍ରି ଆଗତ ହେଲା, ଲୋକେ ଶୋଇପଡ଼ିଲେ । ସେତେବେଳେ ଗୋବର୍ଦ୍ଧନ ନିଜର ଦ୍ରୁତଗାମୀ ଅଶ୍ୱକୁ ଆଣି ତାର ଉପରେ ବାନ୍ଧି ରଖିଥିବା ବୋଝକୁ ଲଦିଦେଲେ । ପିଲା କୁଟୁମ୍ବ ଓ ଶୁକପକ୍ଷୀ ସହ ଅର୍ଦ୍ଧରାତ୍ରି ସମୟରେ ଘରୁ ବାହାରିଲେ । ସେତେ-ବେଳେ ଦୁର୍ଗ ଦୁଆରେ ଜଗୁଆଳି ଥିବାରୁ ଦୁର୍ଗ ଦ୍ୱାର ପଥରେ ଯିବା ଅସମ୍ଭବ ମନେକରି ସାବଡ଼ା ନାଳ ଜଳପଥ ଦେଇ ଦକ୍ଷିଣୋତ୍ତର ଦିଗକୁ ଚାଲିଲେ । ଦୁଇ ପାର୍ଶ୍ୱରେ ଦୁଇଟି ପାହାଡ଼ ତା ମଧ୍ୟରେ ସାବଡ଼ା ନାଳ, ଦନ୍ତାରି କଣ୍ଟାରେ ଆଚ୍ଛାଦିତ ପଥ । ଜୀବନକୁ ଆଶାଛାଡ଼ି ସେହି କଣ୍ଟକ ପୂର୍ଣ୍ଣ ଜଳପଥରେ ଆଗକୁ ଚାଲିଲେ । ବହୁ କଷ୍ଟରେ ଦୁର୍ଗ ପାରହୋଇ ଦ୍ରୁତ ବେଗରେ ଘୋଡ଼ାକୁ ଚଳାଇ ରାତ୍ରି ଶେଷବେଳକୁ ଆସିକା ନିକଟରେ ପହଞ୍ଚିଲେ । ଆସିକାରେ ପହଞ୍ଚି ସେ ନିଜକୁ ନିରାପଦ ମନେକରି ବିଶ୍ରାମ ନେଲେ ।

ରାଜା ରଘୁନାଥ ହରିଚନ୍ଦନ ପାଞ୍ଜିଆକୁ ଶୁକପକ୍ଷୀ ଧରି ଆସିବବୋଲି ଅପେକ୍ଷା କରି ରହିଥାନ୍ତି । ଦେଖୁ ଦେଖୁ ଦିନ ଦୁଇପ୍ରହର ହେଲା କିନ୍ତୁ ପାଞ୍ଜିଆ ଗୋବର୍ଦ୍ଧନ ଆସିଲେ ନାହିଁ । ରାଜା ପାଞ୍ଜିଆ ପାଖକୁ ଦୂତ ପଠାଇଲେ । ଦୂତ ଯାଇ ଦେଖେତ ପାଞ୍ଜିଆ ଗୋବର୍ଦ୍ଧନ ଘରେ କେହି

ନାହାନ୍ତି ଘର ଖୋଲା ରହିଛି । ପଡ଼ୋଶୀଙ୍କୁ ପଚାରିବାରୁ ସେମାନେ କୌଣସି କଥା ଜାଣି ନାହାନ୍ତି ବୋଲି କହିଲେ । ରାଜା ଦୂତଠାରୁ ସମସ୍ତ ଘଟଣା ଶୁଣି ଗଡ଼ଦ୍ୱାର ଦ୍ୱାରୀଙ୍କୁ ଡ଼କାଇଲେ । ତାକୁ ରାଗରେ କହିଲେ ତୁ ଗଡ଼ ଦ୍ୱାରରେ ରହିଛୁ କିନ୍ତୁ ଗୋବର୍ଦ୍ଧନ ପାଞ୍ଜିଆ କିପରି ପଦାକୁ ଚାଲିଗଲା । ଦ୍ୱାରୀ ଉତ୍ତରରେ କହିଲା, "ପ୍ରଭୁ ପାଞ୍ଜିଆ କିପରି ଗଲା ତାହା ମୁଁ ଜାଣିନାହିଁ । ଏହା ଶୁଣି ରାଜା କହିଲେ, "ତୁ ଦିନରାତି ଦ୍ୱାରରେ ଜଗି ରହିଅଛୁ । ସେ କ'ଣ ଗିରି ଗୁହା ପଥରେ ରାତିରେ ଚାଲିଗଲା, ଏହା ଅସମ୍ଭବ, ତୁ ଯଦି ସେ ବାହାରକୁ ଯିବା ଖବର ଆଜି ଦିନକ ମଧ୍ୟରେ ନ ଜଣାଇବୁ ତେବେ ତୋତେ ହାତୀ କୁଦାଇ ମାରିଦେବି । ଏହା ଶୁଣି ଜଗୁଆଳି କହିଲା, "ପ୍ରଭୁ ମୁଁ ସେ କେଉଁ ପଥ ଦେଇ ଗଡ଼ରୁ ପଦାକୁ ଯାଇଛି ଆପଣଙ୍କୁ ଜଣାଇଦେବି ।

ପରଦିନ ପ୍ରଭାତରୁ ଦ୍ୱାରୀ ଯାଇ ଗୋବର୍ଦ୍ଧନ ପାଞ୍ଜିଆ ଘରେ ପହଞ୍ଚିଲା । ଦ୍ୱାରୀ ପାଞ୍ଜିଆ ଘରଠାରୁ ପଡ଼ିଥିବା ଅଶ୍ୱଖୁରା ଚିହ୍ନକୁ ଲକ୍ଷକରି ଖୋଜି ଖୋଜି ଚାଲିଲା । ଦେଖିଲା ଯେ ଅଶ୍ୱଖୁରା ଚିହ୍ନ ସାବଡ଼ା ନାଳ ଗର୍ଭରେ ପଡ଼ିଅଛି । ପାଞ୍ଜିଆ ଘୋଡ଼ା ସାହାଯ୍ୟରେ ସାବଡ଼ା ନାଳ ପଥରେ ଚାଲି ଚାଲି ଯାଇଥିବା ଦେଖି କଟ୍ଟିବାଟ ସେହି ପଥରେ ଯାଇ ଫେରିଆସି ରାଜାଙ୍କୁ ସବୁକଥା କହିଲା । ରାଜା ନିଜେ ପାଞ୍ଜିଆ ଘରଠାକୁ ଯାଇ ଦେଖିଲେ ଯେ ପ୍ରକୃତରେ ଘୋଡ଼ାଖୁରା ଚିହ୍ନ ତାର ଘରଠାରୁ ସାବଡ଼ା ନାଳ ଯାଏ ପଡ଼ିଅଛି । ରାଜା ପାଞ୍ଜିଆ ଦନ୍ତାରିକଣ୍ଟକ ପଥଦେଇ ଯିବାର ଜାଣି ବିସ୍ମିତ ହୋଇଗଲେ । ଗୁରୁ ଶୁକପକ୍ଷୀ ପାଇଁ ପାଞ୍ଜିଆ ରାଜ୍ୟଛାଡ଼ି ପଳାଇଲା ଭାବି ଦୁଃଖ ପ୍ରକାଶ କରିଥିଲେ ।

ରାଜା ରଘୁନାଥ ସେହି ସାବଡ଼ା ନାଳ ପଥଦେଇ ଦୁର୍ଗକୁ ଶତ୍ରୁ ଆକ୍ରମଣ କରିବା କଥା ଚିନ୍ତାକରି ସେହି ସାବଡ଼ା ନାଳ ପଥକୁ ରୁଦ୍ଧ କରିବାକୁ ସ୍ଥିରକଲେ । ପାଇକୁ ଡ଼କାଇ ଦୁଇ ପାହାଡ଼କୁ ଧରି ଗୋଟିଏ ବନ୍ଧ ବାନ୍ଧିବାକୁ କହିଲେ । ଦୁଇପଟର ଦୁଇ ପାହାଡ଼କୁ ଧରି ଗିରି ସଦୃଶ୍ୟ ଏକ ବନ୍ଧ ନିର୍ମାଣ କରାଇଲେ । ସେହି ସାଗରର ଗଭୀର ୪୫ ହାତ ଅର୍ଥାତ୍ ୬୭.୫ ଫୁଟ ହୋଇଥିଲା । ଦୂରରୁ ଦେଖିଲେ ସେହି ସାଗର ବନ୍ଧଟି

ଅଦ୍ୟାବଧି ଗୋଟିଏ ପାହାଡ଼ ପରି ଦେଖା ଯାଉଅଛି । ଏହି ସାଗରକୁ ରଘୁନାଥ ସାଗର ନାମରେ ନାମିତ କରାଗଲା । ଏହି ସାଗର ଗଡ଼ଖାଇ ରୂପେ ରହିବା ସାଥେ ସାଥେ ଏହାର ଜଳକୁ କୃଷି କ୍ଷେତ୍ରରେ ବିନିଯୋଗ କରାଗଲା । ଗଡ଼ ମଧ୍ୟରେ ଥିବାରୁ ଏହାକୁ ଭିତର ସାଗର ବୋଲି ଲୋକେ କହୁଛନ୍ତି । ବାହାର ସାଗର ଓ ଭିତର ସାଗର ଅଷ୍ଟଦୁର୍ଗର ଦୁଇଟି ହ୍ରଦ କହିଲେ ଚଳେ । ଦୁଃଖର କଥା ୧୯୯୯ ବାତ୍ୟାରେ ପ୍ରବଳ ବର୍ଷାପାଣି ସେହି ଭିତର ସାଗର ହିଡ଼କୁ ଭାଙ୍ଗି ଦେଇଛି, ଯାହା ଫଳରେ ତାହାର ଜଳ ଆଉ କୃଷି କ୍ଷେତ୍ରରେ ବିନିଯୋଗ କରାଯାଉ ନାହିଁ ।

## ନୂତନ ଦୁର୍ଗ ନିର୍ମାଣ—

ରଘୁନାଥ ହରିଚନ୍ଦନ ଜଗଦ୍ଦେବଙ୍କ ରାଜତ୍ୱ ସମୟରେ ଗ୍ରୀଷ୍ମକାଳରେ ଦିନେ ଅର୍ଦ୍ଧରାତ୍ରି ସମୟରେ ଦୁର୍ଗରେ ନିଆଁ ଲାଗିଗଲା । ନିଆଁର ପ୍ରକୋପ ଏତେ ପ୍ରବଳ ହେଲା ଯେ ଲୋକେ କାହାରି ଗୃହରୁ କୌଣସି ଜିନିଷ ବାହାର କରି ପାରିଲେ ନାହିଁ । ନିଆଁ ଲାଗିବା ସମୟରେ ପବନ ଯାତ ଯୋଗୁଁ ଗଡ଼ର ସମସ୍ତଙ୍କ ଗୃହ ଜଳିଗଲା । ନିସ୍ତୁଲୋକେ ବହୁତ ଚେଷ୍ଟାକରି ସୁଦ୍ଧା ନିଆଁକୁ ଆୟତ୍ତ କରିପାରିଲେ ନାହିଁ । ବହୁତ ଧନ ଜୀବନ ନଷ୍ଟ ହେଲା । ରାଜାଙ୍କ ଧାନଘରେ ତିନିଦିନ ଯାଏ ନିଆଁ ଜଳିଥିଲା । ଏପରି ପ୍ରାକୃତିକ ବିପର୍ଯ୍ୟୟରେ ରଘୁନାଥ ବିଚଳିତ ହୋଇଥିଲେ ଏବଂ ଧୈର୍ଯ୍ୟର ସହ ତାହାର ସମ୍ମୁଖୀନ କରିଥିଲେ ।

କିଛିଦିନ ପରେ ଗଡ଼ର ନୂତନ ଦୁର୍ଗ ନିର୍ମାଣ କରିବାପାଇଁ ଶିଳ୍ପୀକରମାନଙ୍କୁ ଡକାଇଆଣି କାର୍ଯ୍ୟରେ ଲଗାଇଲେ । ବର୍ତ୍ତମାନର ଭଗ୍ନରୂପେ ରହିଥିବା ଦୁର୍ଗକୁ ରଘୁନାଥ ହରିଚନ୍ଦନ ନିର୍ମାଣ କରାଇଥିଲେ । ଗ୍ରାମର ଲୋକଙ୍କୁ ସାହାଯ୍ୟ କରିବା ପାଇଁ ରାଜ୍ୟରେ ଥିବା ସିଂହାସନ ମାନଙ୍କରୁ ବିନା ମୂଲ୍ୟରେ କାଠ ବାଉଁଶ ଆଣି ଗୃହ ନିର୍ମାଣ କରିବାକୁ ଅନୁମତି ଦେଇଥିଲେ । ଦୁର୍ଗ ମଧ୍ୟରେ କନକଦୁର୍ଗା ଓ ଗୋପାଳସ୍ୱାମୀ ମନ୍ଦିର ନିର୍ମାଣ କରାଇଥିଲେ । ଅଶ୍ୱଗୃହ, ହାତୀଗୃହ, ସଭାମଣ୍ଡପ ପ୍ରଭୃତି ନିର୍ମାଣ କରା ଯାଇଥିଲା । ଦୁର୍ଗର

ମୃଷ୍ଟପଟେ ବିଭିନ୍ନ ପ୍ରକାର ଫଳ ଫୁଲର ଉଦ୍ୟାନ ଦୁର୍ଗକୁ ଅଧିକ ରମଣୀୟ କରିଥିଲା । ଦୁର୍ଗ ମଧ୍ୟକୁ କୌଣସି ଦିଗରୁ ଶତ୍ରୁ ଆକ୍ରମଣର ଭୟ ରହିନଥିଲା ନାହିଁ ।

## ମହୁରୀ ରାଜାଙ୍କ ସହିତ ଯୁଦ୍ଧ—

ଥରେ ମହୁରୀ ରଜା ଅଷ୍ଟଦୁର୍ଗ ରାଜା ରଘୁନାଥ ହରିଚନ୍ଦନ ଜଗଦ୍ଦେବଙ୍କ ନିକଟକୁ ଚିଠିଲେଖି ଦୂତ ହସ୍ତରେ ପଠାଇଥିଲେ । ରଘୁନାଥ ଚିଠିପଢ଼ି ଜାଣିଲେ ଯେ ମହୁରୀ ରାଜା ରଘୁନାଥ ହରିଚନ୍ଦନଙ୍କ କୃଷ୍ଣପ୍ରସାଦ ନାମକ ପାଟ ହସ୍ତୀକୁ ଜୟ କରି ନେବାପାଇଁ ଦୂତଦ୍ୱାରା ଚିଠି ପଠାଇଛନ୍ତି ।

ଚିଠିରେ ମହୁରୀ ରଜା ଧନଗର୍ବ ଦେଖାଇ ଲେଖିଥିବାରୁ ରଘୁନାଥ ହରିଚନ୍ଦନ ରାଗରେ ଦୂତକୁ ଅପମାନ ଦେଇଥିଲେ । ଦୂତ ଫେରିଯାଇ ମହୁରୀ ରାଜାଙ୍କୁ ସମସ୍ତ ବିଷୟ ଜଣାଇଲା । ମହୁରୀ ରାଜା କୌଣସି କଥାକୁ ବିଚାର ନକରି ଗର୍ବରେ ରଘୁନାଥଙ୍କ ସହିତ ଯୁଦ୍ଧ କରିବା ପାଇଁ ସ୍ଥିର କଲେ । ଯୁଦ୍ଧପାଇଁ ପ୍ରସ୍ତୁତ ହେବାକୁ ରଘୁନାଥଙ୍କ ନିକଟକୁ ମହୁରୀ ରାଜା ଦୂତଦ୍ୱାରା ଖବର ପଠାଇଲେ । ରଘୁନାଥ ସୈନ୍ୟ ସାମନ୍ତ ସହ କେଉଣ୍ଡୀ-ମାଳଠାରେ ଯାଇ ତମ୍ବୁବାନ୍ଧି ରହିଲେ । ମହୁରୀ ସୈନ୍ୟ ଓ ଅଷ୍ଟଦୁର୍ଗ ସୈନ୍ୟଙ୍କ ମଧ୍ୟରେ ତୁମୂଳ ଯୁଦ୍ଧ ଲାଗିଲା । ସେହି ଯୁଦ୍ଧରେ ମହୁରୀ ଆଡ଼ରୁ ନବେ ସୈନ୍ୟ ଓ ଅଷ୍ଟଦୁର୍ଗର ସାତଜଣ ସୈନ୍ୟ ପ୍ରାଣ ହରାଇଥିଲେ । ଶେଷରେ ମହୁରୀ ରାଜା ବାଧ୍ୟହୋଇ ଅଷ୍ଟଦୁର୍ଗ ରାଜାଙ୍କ ସହିତ ସନ୍ଧିସ୍ଥାପନ କରି ଯୁଦ୍ଧ ବନ୍ଦକରି ନିଜର ସୈନ୍ୟଙ୍କୁ ପଛଘୁଞ୍ଚା ଦେଇଥିଲେ ।

## ବରଗିମାନଙ୍କ ସଙ୍ଗେ ଯୁଦ୍ଧ—

ରଘୁନାଥ ହରିଚନ୍ଦନ ଜଗଦ୍ଦେବଙ୍କ ରାଜତ୍ୱ ସମୟରେ ପୁରୁଷୋ-ତ୍ତମରେ ଗଜପତି ରାମଚନ୍ଦ୍ର ଦେବ ରାଜତ୍ୱ କରୁଥିଲେ । ସେହି ସମୟରେ ବରଗିମାନେ ସେଠାରେ ପହଞ୍ଚି ବଳପୂର୍ବକ ଧନ ସମ୍ପଦ ଲୁଟିକରି ନେଇଗଲେ । ସେମାନେ ରାଜ ମହଲରେ ପ୍ରବେଶ କରି ସୈନ୍ୟମାନଙ୍କୁ

ପରାସ୍ତ କରି ସମସ୍ତଙ୍କୁ ଭୟ ଦେଖାଇ ଲୁଣ୍ଠନ କଲେ । ଦୈବ ଯୋଗକୁ ରାଜ୍ୟରେ ଅନାବୃଷ୍ଟି ହେବାରୁ ମରୁଡ଼ି ଦେଖାଦେଲା । ଗଜପତି ରାମଚନ୍ଦ୍ର ଦେବ ନିରୂପାୟ ହୋଇ ସଦଳବଳେ ଆସି ଅଷ୍ଟଦୁର୍ଗ ଅନ୍ତର୍ଗତ ଫାଶି ଗ୍ରାମରେ ପହଞ୍ଚିଥିଲେ ।

ଏହି ବିଷୟ ରଘୁନାଥ ହରିଚନ୍ଦନ ଶୁଣି ପ୍ରଥମେ ବଳିଆର ସିଂହଙ୍କୁ ଡକାଇଆଣି ସଦଳବଳେ ବିଭିନ୍ନ ପ୍ରକାର ଉପହାର ସହ ଗଜପତିଙ୍କୁ ସାକ୍ଷାତ କରିବାକୁ ଫାଶି ଯାତ୍ରାକଲେ । ଗଜପତିଙ୍କ ଠାରୁ ସମସ୍ତ ଘଟଣା ଶୁଣିବା ପରେ ବଳିଆର ସିଂହଙ୍କୁ ସେନାପତି ପଣେ ନିଯୁକ୍ତକରି ବରଗି ମାନଙ୍କ ସହିତ ଯୁଦ୍ଧ କରିବାପାଇଁ ବାହାରିଲେ । ଗଜପତି ରାମଚନ୍ଦ୍ର ଦେବଙ୍କୁ ସଙ୍ଗରେ ନେଇ ପୁରୁଷୋତ୍ତମ ଧାମକୁ ଯୁଦ୍ଧଯାତ୍ରା କଲେ । ଏହି ଯୁଦ୍ଧରେ ଦୁଇ ହଜାର ସୈନ୍ୟ ମଧ୍ୟରେ ବଳିଆର ସିଂହ ସେନାପତି ପଣେ ନିଯୁକ୍ତ ହୋଇଥିଲେ । ବରଗିମାନଙ୍କୁ ଯୁଦ୍ଧରେ ପରାସ୍ତକରି ସେମାନେ ଲୁଣ୍ଠନ କରି ନେଇଥିବା ଧନରତ୍ନ ଫେରାଇ ଆଣିଥିଲେ ଏବଂ ରାମଚନ୍ଦ୍ର ଦେବ ସିଂହାସନରେ ରାଜ୍ୟ ପରିଚାଳନା କରିଥିଲେ ।

## ହୋମଯାଗ ଓ ଗୁଣ୍ଡିଚା ମନ୍ଦିର ନିର୍ମାଣ—

ରାଜଗୁରୁ ଶ୍ରୀ ବାସୁଦେବ ରଥ ସକଳ ଶାସ୍ତ୍ରଦର୍ଶୀ ବିଜ୍ଞ ପଣ୍ଡିତ, ରଘୁନାଥ ହରିଚନ୍ଦନଙ୍କ କାର୍ଯ୍ୟକଳାପରେ ସନ୍ତୁଷ୍ଟ ହୋଇ ରାଜ୍ୟର ମଙ୍ଗଳ ଉଦ୍ଦେଶ୍ୟରେ ନୃପତିଙ୍କ ନିକଟରେ ପହଞ୍ଚି ଗୋଟିଏ ଯଜ୍ଞର ଆୟୋଜନ କରିବା ନିମନ୍ତେ ରାଜାଙ୍କୁ ଅନୁରୋଧ କରିଥିଲେ । ରାଜଗୁରୁ ଶ୍ରୀ ବାସୁରଥଙ୍କ କହିବା ପ୍ରକାର ଯଜ୍ଞର ଆୟୋଜନ କରାଗଲା । ଯଜ୍ଞ ପାଇଁ ଚୈତ୍ର ମାସ ଶୁକ୍ଳପକ୍ଷ ଦଶମୀ ଭୃଗୁବାର ଦିନ ସ୍ଥିର କରାଗଲା । ଶୁଭବେଳା ଦେଖି ଯଜ୍ଞର ଅଙ୍କୁରାରୋପଣ ନିଜେ ରାଜା ରଘୁନାଥ କରିଥିଲେ । ରାଜ୍ୟର ବିଭିନ୍ନ ଅଞ୍ଚଳରୁ ବିଶିଷ୍ଟ ବ୍ରାହ୍ମଣମାନଙ୍କୁ ଆମନ୍ତ୍ରଣ କରି ଅଣାଗଲା । ଏହି ଯଜ୍ଞ ଯାଗ ଏକୋଇଶି ଦିନ ଧରି ମହା ସମାରୋହରେ ପାଳନ କରାଗଲା । ସେହି ଯଜ୍ଞର ମୂଳ ହେଲା ସୋମପାନ । ତେଣୁ ସୋମଲତା ଅଣାଯାଇ ଅର୍ଚ୍ଚନା

କରାଗଲା । ଶେଷରେ ସୋମପାନ କରି ସମସ୍ତେ ତୃପ୍ତି ଲାଭକଲେ । ରାଜଗୁରୁଙ୍କ କଥିବା ପ୍ରକାର ସେହି ଯଜ୍ଞକୁଣ୍ଡ ଉପରେ ଆଡ଼ପ ମଣ୍ଡପ ନିର୍ମାଣ କରାଗଲା । ବର୍ତ୍ତମାନ ଯେଉଁ ଆଡ଼ପ ମଣ୍ଡପରେ ଗୁଣ୍ଡିଚା ଯାତ୍ରାରେ ଠାକୁରମାନେ ପୂଜା ପାଉଛନ୍ତି ତାହା ରଘୁନାଥ ହରିଚନ୍ଦନ ଜଗଦ୍ଦେବଙ୍କ ରାଜତ୍ୱ ସମୟରେ ନିର୍ମିତ ହୋଇଥିଲା ।

## ବାଣପୁର ହରିଚନ୍ଦନଙ୍କ ସହିତ ଯୁଦ୍ଧ—

ଗଜପତି ଶ୍ରୀ ରାମଚନ୍ଦ୍ର ଦେବଙ୍କ ରାଜତ୍ୱକାଳ ସପ୍ତମବର୍ଷ ତତ୍କାଳୀନ ବାଣପୁର ରାଜା ଅମାନଅା ହୋଇ ଉତ୍କଳ ଗଜପତିଙ୍କୁ ସିବନ୍ଧି ଟଙ୍କା ଦେଇ ନଥିଲେ । ଏଥିରେ ଉତ୍କଳର ଗଜପତି କ୍ରୋଧ ହୋଇ ଫର୍ଦ୍ଦି ଏ' ପତ୍ରଦ୍ୱାରା ଏହି ଘଟଣା ଲେଖି ଅଷ୍ଟଗଡ଼ର ରାଜା ରଘୁନାଥ ହରିଚନ୍ଦନ ଜଗଦ୍ଦେବଙ୍କ ନିକଟକୁ ଦୂତଦ୍ୱାରା ପ୍ରେରଣ କଲେ । ରଘୁନାଥ ପତ୍ରର ସକଳ ବିଷୟ ପାଠକରି ବାଣପୁର ଅମାନଅା ହରିଚନ୍ଦନଙ୍କ ବିରୁଦ୍ଧରେ ଯୁଦ୍ଧପାଇଁ ପ୍ରସ୍ତୁତ ହେଲେ । ହରିଚନ୍ଦନଙ୍କୁ ପରାସ୍ତକରି ବାଣପୁର ରାଜ୍ୟ ପରିଚାଳନା ଦାୟିତ୍ୱ ଅନ୍ୟ ହସ୍ତରେ ଅର୍ପଣ କରିବାକୁ ସ୍ଥିର କରିଥିଲେ । ଗଜପତିଙ୍କ ଆଦେଶ ଅନୁଯାଇ ନୂଆଁଗଡ଼ ରାମଚନ୍ଦ୍ର ମାନଧାତା, ମଦ୍ଦୁରୀ କୃପାସିନ୍ଧୁ ନରେନ୍ଦ୍ର, ଖଲିକୋଟ ବାଲୁକ୍ଙ୍କ ଶରଣ ମର୍ଦ୍ଦରାଜ [illegible] ଏକ୍ତ୍ରିକଥା ଅବଗତ କରାଇ ପୂର୍ବ ଜମିଦାର ରାଜା ଏକତ୍ର ହୋଇ ବାଣପୁର ଅମାନଅା ହରିଚନ୍ଦନଙ୍କ ବିରୁଦ୍ଧରେ ଯୁଦ୍ଧପାଇଁ ଯାତ୍ରାକଲେ । ବାଣପୁର ରାଜା ମଧ୍ୟ ଯୁଦ୍ଧପାଇଁ ପ୍ରସ୍ତୁତ ହୋଇଲେ । ଉଭୟ ସୈନ୍ୟଙ୍କ ମଧ୍ୟରେ ତୁମୁଳ ସଂଗ୍ରାମ ହେଲା । ଶେଷରେ ବାଣପୁର ହରିଚନ୍ଦନ ଭୟରେ ରାଜ୍ୟ ପରିତ୍ୟାଗ କରି ଚାଲି ଯାଇଥିଲେ । ଏପରି ଘଟଣା ଦେଖି ହରିଚନ୍ଦନଙ୍କ କନିଷ୍ଠ ଭ୍ରାତା ହରିସେବକ ରଘୁନାଥଙ୍କ ନିକଟରେ ଶରଣ ପଶିଥିଲେ । ରଘୁନାଥ ତାଙ୍କୁ ବାଣପୁରରେ ରାଜା କରାଇବା ପାଇଁ ଚେଷ୍ଟାକରି ବାଣପୁର ଦାୟିତ୍ୱ ପ୍ରଦାନ କରିଥିଲେ । ହରିସେବକଙ୍କ ଅନୁରୋଧ କ୍ରମେ ଉତ୍କଳ ଗଜପତି ହରିଚନ୍ଦନଙ୍କୁ ପାଣିକୁଦ ଗଡ଼ରେ ରାଜା କରାଇ ସେହି ଗଡ଼ର ନାମ କୃଷ୍ଣ ପ୍ରସାଦ ନାମରେ ନାମିତ କରିଥିଲେ ।

## ଅଷ୍ଟଦୁର୍ଗକୁ ମା' ନାରାୟଣୀଙ୍କ ପ୍ରତିମା ଆଗମନ—

ବାଣପୁର ହରିଚନ୍ଦନଙ୍କ ରାଜ୍ୟରେ ସ୍ଥାନୀୟ ଭାବରେ ଇଷ୍ଟଦେବୀ ରୂପେ କୃଷ୍ଣମଣି ଶିଳାରେ ନିର୍ମିତ ନାରାୟଣୀ ପ୍ରତିମା ପୂଜା ପାଉଥିଲେ । ଉକ୍ତ ପ୍ରତିମା ଅଷ୍ଟଭୁଜା, ତ୍ରିନେତ୍ରା, ସର୍ବାଭରଣା ଭୂଷିତା ପ୍ରସନ୍ନମୁଖୀ ମହିଷା ମର୍ଦ୍ଦିନୀ । ରାଜ ଦୁର୍ଗରେ ଦେବୀଙ୍କ ଦର୍ଶନ ଲାଭକରି ଅଷ୍ଟଦୁର୍ଗ ରାଜା ରଘୁନାଥ ହରିଚନ୍ଦନ ଜଗଦେବ ନିଜ ଦୁର୍ଗକୁ ଆଣିବାକୁ ମନସ୍ଥ କରିଥିଲେ । ସେଥିପାଇଁ ମାଆଙ୍କ ନିକଟରେ ବଳୀଭୋଗ ପ୍ରଦାନ କରି ଷୋଡଶ ଉପଚାରରେ ପୂଜାର୍ଚ୍ଚନା କରାଇ ହସ୍ତୀ ପୃଷ୍ଠରେ ନିଜ ଦୁର୍ଗକୁ ଆଣିବା ପାଇଁ ବ୍ୟବସ୍ଥା କରାଗଲା । ରଘୁନାଥ ରାଜା ଦେବୀଙ୍କୁ ଆଣିବା ପୂର୍ବ ରାତିରେ ସ୍ୱପ୍ନଦେଖି ବିସ୍ମିତ ହୋଇପଡ଼ିଲେ । ସ୍ୱପ୍ନରେ ଦେବୀ ରାଜାଙ୍କୁ ଅର୍ଦ୍ଧରାତ୍ରରେ ଦେଖା ଦେଇ କହିଲେ, "ରାଜା ତୁ ମୋତେ ତୋ ରାଜ୍ୟକୁ ନେବାକୁ ଚେଷ୍ଟା କରୁଛୁ । ମୁଁ ଯିବି ମାତ୍ର ସୂର୍ଯ୍ୟ ଉଦୟ ଠାରୁ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ କେଉଁ ସ୍ଥାନରେ ନରହି ଅବିଶ୍ରାନ୍ତ ଗତିରେ ଗମନ କରିବି । ଏ ମଧ୍ୟରେ ଯଦି ମୋତେ କେଉଁଠାରେ ଅଟକାଇ ଦେବୁ ମୁଁ ସେହି ସ୍ଥାନରେ ରହିବି ଆଉ ତୋ ଦୁର୍ଗକୁ ଯିବିନାହିଁ ।" ରାଜା ରଘୁନାଥ ସ୍ୱପ୍ନାଦେଶକୁ ପାଳନ କରି ସୂର୍ଯ୍ୟୋଦୟ ସମୟରେ ଯାତ୍ରା ଆରମ୍ଭ କଲେ । ସୂର୍ଯ୍ୟାସ୍ତ ସମୟରେ ଦୁର୍ଗର ଅଜୟଗଡ଼ ଦ୍ୱାରଠାରେ ପହଞ୍ଚିଲେ । ଗଡ଼ଦ୍ୱାର ଠାରୁ ନାରାୟଣୀ ପ୍ରତିମା ଦୁର୍ଗକୁ ନେବାପାଇଁ ରାଜ୍ୟର ବିଭିନ୍ନ ଅଞ୍ଚଳରୁ ବାଦ୍ୟ ବାଜଣା, ଘଣ୍ଟ ମୃଦଙ୍ଗ, କାହାଳୀ, ତେଲିଙ୍ଗିବାଦ୍ୟ ଇତ୍ୟାଦି ବଜାଇ ମହା ଆଡ଼ମ୍ବରରେ ଛତିବାସ, ପତାକା ସହ ଦୁର୍ଗକୁ ନେବାପାଇଁ ପ୍ରସ୍ତୁତହେଲେ । କିନ୍ତୁ ଆଶ୍ଚର୍ଯ୍ୟର ବିଷୟ ଯେ ମା' ନାରାୟଣୀଙ୍କୁ ଆଣିଥିବା ହାତୀ ସେହି ସ୍ଥାନରେ ଶୋଇ ରହିଲା ଆଉ ଉଠିଲା ନାହିଁ । ନୃପତି ରଘୁନାଥ ନିଜର ସ୍ୱପ୍ନାଦେଶ କଥା ମନେ ପକାଇ ଆଉ ସମୟ ବିଳମ୍ବ ନକରି ଅଜୟଗଡ଼ ଦ୍ୱାର ପାର୍ଶ୍ୱସ୍ଥ ସାବତା ନାଳ ତଟରେ ଏକ ସମସ୍ଥଳରେ ମା'ଙ୍କୁ ରଖାଇ ଦେଲେ ଓ ବିଭିନ୍ନ ପ୍ରକାର ଉପଚାରରେ ପୂଜାର୍ଚ୍ଚନା କରାଇଲେ ।

୦

କିଛିଦିନ ପରେ କାରିଗରମାନଙ୍କୁ ଡକାଇ ପାଷାଣସ୍ତମ୍ଭ ଦ୍ୱାରା ଏକ ସୁନ୍ଦର ମଣ୍ଡପ ନିର୍ମାଣ କରାଇଲେ । ସେହି ମଣ୍ଡପରେ ତିନିଟୋଟି କୋଠରୀ

ନିର୍ମାଣ କରାଗଲା । ପୂର୍ବଭାଗରେ ସ୍ୱପେଶ୍ୱର ଓ ପଶ୍ଚିମରେ ମା'
ନାରାୟଣୀଙ୍କୁ ସ୍ଥାପନ କରି ଶିବଦୁର୍ଗା ଦୁହିଁଙ୍କ ସମ୍ମୁଖ ଗୃହାଣୀ ମଧ୍ୟରେ
ଥିବା ବଖଡାରେ ମୃଗପତି, ବୃଷଭ ସ୍ଥାପନ କରାଇଲେ । ଆଶ୍ୱିନ ମାସ
ପ୍ରବେଶ ହେବାରୁ ଉତ୍ତମ ବ୍ରାହ୍ମଣମାନଙ୍କ ଦ୍ୱାରା ମନ୍ଦିର ପ୍ରତିଷ୍ଠା କରାଇ
ଷୋଡ଼ଶଦିନ ପୂଜାର୍ଚ୍ଚନା ମହା ଆଡ଼ମ୍ବରସହ ପାଳନକରାଗଲା । ପ୍ରକୃତରେ
ନାରାୟଣୀଙ୍କ ମହିମା କହିଲେ ନସରେ । ଆଜି ତାହା ଏକ ସାଧନାର
ପୀଠ ରୂପେ ପରିଗଣିତ ହୋଇଅଛି । ମାଆ ଭକ୍ତଙ୍କର କାମନା ପୂର୍ଣ୍ଣ
କରିବାକୁ ସର୍ବଦା ଚଳଚଞ୍ଚଳା । ତେଣୁ ପ୍ରତିଦିନ ଶତଶତ ଭକ୍ତ ମାଆଙ୍କ
ନିକଟରେ ଜୁଣ୍ଡ ହୋଇ ନିଜର ଅଭିଳାଷକୁ ଚରିତାର୍ଥ କରୁଛନ୍ତି ।
ଅଷ୍ଟଦୁର୍ଗରେ ମା' ନାରାୟଣୀଙ୍କ ସେବା ପୂଜା ପାଇଁ ରାଜା ଜମି ଖଞ୍ଜି
ଦେଇଥିଲେ । ଦୁର୍ଗ ମଧ୍ୟରେ କନକଦୁର୍ଗା ଓ ଅନ୍ୟୁଗଡ଼ ଦ୍ୱାର ନିକଟରେ
ମା' ନାରାୟଣୀଙ୍କ ପୂଜାର୍ଚ୍ଚନା ଠିକ୍ ଭାବରେ ଚାଲି ଆସୁଅଛି । ମାଆଙ୍କ
ପୀଠ ଆଜି ଏକ ତାନ୍ତ୍ରିକ ସାଧନା ପୀଠରୂପେ ପରିଗଣିତ ହୋଇ ପାରିଛି ।
ନାରାୟଣୀ ମନ୍ଦିର ପରିସର ଅତ୍ୟନ୍ତ ମନୋହର ହୋଇ ଥିବାରୁ ଦୈନିକ
ଶହଶହ ଭକ୍ତ ମାଆଙ୍କ କରୁଣାଲାଭ କରିବାକୁ ସେଠାରେ ଜୁଣ୍ଡ ହେଉଛନ୍ତି ।
ଛୁଟିଦିନ ମାନଙ୍କରେ ବିଭିନ୍ନ ସ୍ଥାନରୁ ବହୁଲୋକ ବନଭୋଜି ତଥା ପିକ୍‌ନିକ୍
କରିବା ପାଇଁ ଜୁଣ୍ଡ ହେଉଛନ୍ତି । ମନ୍ଦିରଟି ବିଗତ ବାତ୍ୟାରେ ସମ୍ପୂର୍ଣ୍ଣ ନଷ୍ଟ
ହୋଇ ଯାଇଥିଲା । ବିଭିନ୍ନ ଦାତାଙ୍କ ସହାୟତାରେ ମନ୍ଦିର ନିର୍ମାଣ କାର୍ଯ୍ୟ
ଚାଲିଅଛି । ତଥାପି ଆଜିସୁଦ୍ଧା ସମ୍ପୂର୍ଣ୍ଣ ହୋଇ ପାରିନାହିଁ ।

ରଘୁନାଥ ହରିଚନ୍ଦନ ଗୋସ୍ୱାମୀ ନାମଙ୍କ ସାଧୁଙ୍କ ଠାରୁ ନୃସିଂହମନ୍ତ୍ର
ଦୀକ୍ଷା ଗ୍ରହଣକରି ଗୋସ୍ୱାମୀଙ୍କ ନିମନ୍ତେ ଏକ ମଠ ନିର୍ମାଣ କରାଇଥିଲେ ।
ଉକ୍ତ ମଠରେ ଚୈତନ୍ୟ ଗୋପୀନାଥ ପ୍ରତିମା ସ୍ଥାପନକରି ତାହାଙ୍କୁ ସତ୍କାର
କରାଇଥିଲେ । ସେହି ମଠ ଓ ଠାକୁରଙ୍କ ସେବା ପୂଜା ନିମନ୍ତେ ଗୁଣ୍ଡୁପଡ଼ା
ଓ ତାଳଆମ୍ବପଲ୍ଲୀ ନାମକ ଦୁଇଟିଗ୍ରାମକୁ ଉତ୍ସର୍ଗ କରିଦେଇଥିଲେ । ଏତଦ୍
ବ୍ୟତୀତ ରଘୁନାଥ ହରିଚନ୍ଦନ ଶ୍ରୀ ଗୋପାଳ ଗୋସ୍ୱାମୀଙ୍କ ମୂର୍ତ୍ତି ଆଣି ନିଜ
ଦୁର୍ଗରେ ମଣ୍ଡପ ନିର୍ମାଣ କରି ପ୍ରତିଷ୍ଠାକରି ସେବା ପୂଜାର ବ୍ୟବସ୍ଥା
କରାଇଥିଲେ ।

ରଘୁନାଥ ହରିଚନ୍ଦନ ଜଗଦ୍ଦେବଙ୍କ ସମୟରେ ଅଷ୍ଟଦୁର୍ଗ ତଥା ଆଠଗଡ଼ର ସର୍ବାଙ୍ଗୀନ ଉନ୍ନତି ସାଧିତ ହୋଇଥିଲା । ରଘୁନାଥ ଶେଷ ମୁହୂର୍ତ୍ତରେ ଶ୍ରୀ ଜଗନ୍ନାଥଙ୍କ ଦର୍ଶନ କରି ସେହି ନାମକୁ ଧ୍ୟାନକରି ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ । ତାଙ୍କର ଜଗନ୍ନାଥ ନାମରେ ଗୋଟିଏ ପୁତ୍ର ଥିଲେ ।

## ବିଂଶତମ ରାଜା–ଜଗନ୍ନାଥ ହରିଚନ୍ଦନ ଜଗଦ୍ଦେବ (୧୭୩୩–୧୭୪୯)—

ପିତାଙ୍କ ମୃତ୍ୟୁବେଳକୁ ଜଗନ୍ନାଥଙ୍କୁ ୧୭ ବର୍ଷ ବୟସ ହୋଇଥିଲା । ତେଣୁ ସେ ରାଜକାର୍ଯ୍ୟ ପରିଚାଳନା କରିବାକୁ ସମର୍ଥ ହୋଇ ନଥିଲେ । ରଘୁନାଥଙ୍କ ଭାଇ ସାମନ୍ତ ଭ୍ରମରବର ତାଙ୍କର ଅନ୍ତ୍ୟେଷ୍ଟି କ୍ରିୟା ସମାପନ କରିଥିଲେ ଏବଂ ରାଜ୍ୟର ପରିଚାଳନା ଭାର ସମ୍ଭାଳିଥିଲେ । ଜଗନ୍ନାଥଙ୍କ ବିଦ୍ୟାଶିକ୍ଷା ପରେ ନୂଆଁଗଡ଼ର ରାଜା ମାନଧାତା ଜଗନ୍ନାଥଙ୍କ ଗୁଣ ଓ ଶିକ୍ଷା ଦୀକ୍ଷାରେ ପ୍ରୀତ ହୋଇ ନିଜର କନ୍ୟା ହରିପ୍ରିୟାଙ୍କୁ ଜଗନ୍ନାଥଙ୍କ ସହିତ ବିବାହ କରିବାକୁ ସ୍ଥିର କରିଥିଲେ । କନ୍ୟାଦାନ ପରେ ଜଗନ୍ନାଥଙ୍କ ସହିତ ହରିପ୍ରିୟାଙ୍କ ବିବାହ କାର୍ଯ୍ୟ ସମାପନ ହୋଇଥିଲା । ବିବାହ ପରେ ଜଗନ୍ନାଥ ହରିଚନ୍ଦନ ଜଗଦ୍ଦେବ ନିଜ ରାଜ୍ୟ ପରିଚାଳନା ଦାୟିତ୍ୱ ବହନ କରିଥିଲେ ।

ଜଗନ୍ନାଥ ହରିଚନ୍ଦନ ଜଗଦ୍ଦେବଙ୍କ ରାଜତ୍ୱ ସମୟରେ ମହମ୍ମଦ ତକିଖାଁ ଶ୍ରୀକ୍ଷେତ୍ର ଆକ୍ରମଣ କରିଥିଲେ । କୁଲି ବାଦସାହାଙ୍କ ମୃତ୍ୟୁପରେ ମହମ୍ମଦ ତକିଖାଁ ନବାବ ହେଲେ । ଏହି ସମୟରେ ଓଡ଼ିଶାର ଉତ୍ତର ଦିଗରୁ ମେଦିନୀପୁର ଯାଏ ତକିଖାଁ ନିଜ ରାଜ୍ୟରେ ମିଶାଇ ଦେଇଥିଲେ । ସେତେବେଳେ ସୁବର୍ଣ୍ଣରେଖା ନଦୀ ଓଡ଼ିଶା ଓ ବଙ୍ଗଳାର ସୀମା ରୂପେ ପରିଗଣିତ ହୋଇଥିଲା । ଏଣେ ହାଇଦରାବାଦ୍ ନିଜାମ ଓଡ଼ିଶାର ଦକ୍ଷିଣାଂଶ ଗଞ୍ଜାମ ଜିଲ୍ଲାକୁ ଅଧିକାର କରି ନିଜ ରାଜ୍ୟ ଭିତରେ ଅନ୍ତର୍ଭୁକ୍ତ କରିଥିଲେ । ଫଳରେ ଓଡ଼ିଶାର ଆୟତନ କ୍ଷୁଦ୍ର ହୋଇ ପଡ଼ିଲା ।

ମହମ୍ମଦ ତକୀଁ ଅତ୍ୟାଗ୍ରହୀ, ପରଦ୍ରବ୍ୟ ଆଶାୟୀ, ହିଂସା ଓ ଦ୍ୱେଷରେ ସର୍ବଦା ବୁଡ଼ି ରହିଥିଲେ । ଏତଦ୍ ବ୍ୟତୀତ ଅତ୍ୟନ୍ତ ଶକ୍ତିଶାଳୀ, କୌଶଳୀ ଓ ବୁଦ୍ଧିଶାଳୀ ଥିଲେ । ସର୍ବଦା ହିନ୍ଦୁ ଓ ହିନ୍ଦୁ ଧର୍ମକୁ ଘୃଣା ଦୃଷ୍ଟିରେ ଦେଖୁଥିଲେ । ସେ ସର୍ବଦା ମୁସଲମାନ ଧର୍ମ ପ୍ରଚାରରେ ଲାଗି ରହୁଥିଲେ । ହିନ୍ଦୁ ମନ୍ଦିର ଓ ଦେବତା ମାନଙ୍କୁ ନଷ୍ଟ କରିବା ତାଙ୍କର ମୁଖ୍ୟ କାର୍ଯ୍ୟ ବୋଲି ମଣୁଥିଲେ ।

ସେହି ସମୟରେ ଖୋର୍ଦ୍ଧାରେ ରାମଚନ୍ଦ୍ର ଦେବ ଶାସନ କରୁଥିଲେ । ରାମଚନ୍ଦ୍ର ଦେବଙ୍କ ସୁନାମ ଓଡ଼ିଶା ତଥା ଓଡ଼ିଶା ବାହାରେ ଖ୍ୟାତିଲାଭ କରିଥିଲା । ଏହି ରାଜା ଶ୍ରୀ ଜଗନ୍ନାଥଙ୍କ ସେବା ପୂଜାରେ ନିଜକୁ ଉତ୍ସର୍ଗ କରିଦେଇଥିଲେ । ଏଣୁ ରାମଚନ୍ଦ୍ର ଦେବଙ୍କୁ ହିନ୍ଦୁର ଗୌରବ ବୋଲି ଧରାଯାଉଥିଲା । ତକୀଁ ଏହି ରାଜ୍ୟ, ରାଜା, ଜଗନ୍ନାଥ ମନ୍ଦିର ଓ ଜଗନ୍ନାଥଙ୍କ ଉପରେ ସର୍ବଦା ଲୋଲୁପଦୃଷ୍ଟି ରଖିଥିଲେ । ଦିନେ ତକୀଁ ନିଜର ସୈନ୍ୟ ସାମନ୍ତ ଓ ଖାଦ୍ୟପେୟ ସହ ଶ୍ରୀକ୍ଷେତ୍ର ଆକ୍ରମଣ କରିବାକୁ ସ୍ଥିର କଲେ । ତାଙ୍କର ମୁଖ୍ୟ ଉଦ୍ଦେଶ୍ୟ ଥିଲା ଜଗନ୍ନାଥଙ୍କ ମନ୍ଦିରରେ ବିପୁଳ ପରିମାଣର ଧନରତ୍ନ ରହିଛି, ତାହା ଲୁଟିକରି ନେବା ଏବଂ ହିନ୍ଦୁ ଜାତି ଯେଉଁ ଜଗନ୍ନାଥଙ୍କ ପାଇଁ ଗର୍ବ କରୁଛନ୍ତି ତାହାକୁ ଧ୍ୱଂସ କରିବା । ଏପରି ସମୟରେ ରକ୍ତବାହୁ ନାମକ ଏକ ଦୁର୍ଦ୍ଦାନ୍ତ ବ୍ୟକ୍ତି ହିନ୍ଦୁ ଧର୍ମକୁ ଲୋପ କରିବାକୁ ନିଷ୍ପତ୍ତି ନେଇ ତକୀଁଙ୍କୁ ଯୁଦ୍ଧରେ ସାହାଯ୍ୟ କରିବାକୁ ଆଗେଇ ଆସିଲା । ତକୀଁ ରକ୍ତବାହୁକୁ ନିଜର ମୁଖ୍ୟ ସେନାପତି ପଦରେ ନିଯୁକ୍ତ କରିଥିଲେ ।

ତକୀଁ ନିଜର ସୈନ୍ୟ ସାମନ୍ତ ହାତୀ, ଘୋଡ଼ା, ଓଟ ଓ ଆବଶ୍ୟକୀୟ ଖାଦ୍ୟପେୟ ସଙ୍ଗରେ ନେଇ ଶ୍ରୀକ୍ଷେତ୍ର ଆକ୍ରମଣ କରିବାକୁ ବାହାରି ଆସିଲେ । ରକ୍ତବାହୁ ଅର୍ଥାତ୍ କଳାପାହାଡ଼ ଯଦିଓ ହିନ୍ଦୁ ହେଁ ହିନ୍ଦୁମାନଙ୍କ ନିଷ୍ଠୁର କାର୍ଯ୍ୟକଳାପରେ ହିନ୍ଦୁଧର୍ମ ପ୍ରତି ବିତୃଷ୍ଣା ହୋଇ ହିନ୍ଦୁ ବିଦ୍ୱେଷ ମତ ଅବଲମ୍ବନ କରି ହିନ୍ଦୁ ଜାତିର ପରମ ଶତ୍ରୁରୂପେ ପରିଚିତ ହୋଇଥିଲେ । ତକୀଁ ରକ୍ତବାହୁର ସେନାପତିତ୍ୱରେ ଖୋରଧାର ଚଉଦିଗରେ ଘେରିଗଲେ । ରାମଚନ୍ଦ୍ର ଦେବ ହଠାତ୍ ତକୀଁ ଓ ରକ୍ତବାହୁଙ୍କ

ଆକ୍ରମଣ ଫଳରେ ନିଃସହାୟ ରୂପେ ଯୁଦ୍ଧପାଇଁ ପ୍ରସ୍ତୁତ ହୋଇଥିଲେ । ରାମଚନ୍ଦ୍ର ଦେବ ଯୁଦ୍ଧରେ ପରାସ୍ତ ହୋଇ ବନ୍ଦୀ ହୋଇଥିଲେ । ସେ କୌଶଳ କ୍ରମେ ବନ୍ଧନରୁ ମୁକ୍ତହୋଇ ରାଣୀ ଓ ରାଜପରିଷଦମାନଙ୍କ ସହିତ କିଛି ଦେହରକ୍ଷୀ ସୈନ୍ୟସହ ରାଜ୍ୟ ପରିତ୍ୟାଗ କରି ଅରଣ୍ୟକୁ ଚାଲିଗଲେ । ଶତ୍ରୁସୈନ୍ୟମାନେ ଦୁର୍ଗ ମଧ୍ୟରେ ପ୍ରବେଶ କରି ସକଳ ପ୍ରକାର ଧନରତ୍ନ ଲୁଟିକରି ନେଇଗଲେ । ଶେଷରେ ରାମଚନ୍ଦ୍ର ଦେବ ନିରୁପାୟ ହୋଇ ନିଜର ଇଷ୍ଟଦେବତା ଶ୍ରୀ ଜଗନ୍ନାଥଙ୍କୁ ହୃଦୟରେ ଧ୍ୟାନକଲେ ଏ ଅସମୟରେ ସାହାଯ୍ୟ କରିବା ପାଇଁ । ରାଜାଙ୍କ କରୁଣଭରା ଆକୁଳ ଆର୍ତ୍ତିରେ ଜଗନ୍ନାଥ ମହାପ୍ରଭୁ ରାଜାଙ୍କୁ ସ୍ୱପ୍ନରେ ନିର୍ଦ୍ଦେଶ ଦେଲେ, "ରାଜା ତୁମେ କିଛି ଚିନ୍ତା କରନାହିଁ । ଅରଣ୍ୟ ମଧ୍ୟରେ ଯାଇ ଆଠଗଡ଼ ଅଞ୍ଚଳରେ ବାସକର, ସେଠାରେ ମୁଁ ତୁମକୁ ଦର୍ଶନ ଦେବି ।" ରାଜା ଅକସ୍ମାତ ଏପରି ଠାକୁରଙ୍କ ସ୍ୱପ୍ନାଦେଶ ପାଇ ନିଜକୁ କୃତକୃତ୍ୟ ମନେକରି ପ୍ରଭୁଙ୍କ ଆଦେଶ ପ୍ରକାରେ ଗଞ୍ଜାମର ଆଠଗଡ଼ ଅରଣ୍ୟ ରାସ୍ତାଦେଇ ଚାଲିଲେ । ଅରଣ୍ୟରେ ବିଭିନ୍ନ ପ୍ରକାର ଫଳମୂଳ ଓ ମୃଗମାଂସ ପ୍ରଭୃତି ଖାଦ୍ୟରୂପେ ବ୍ୟବହାର କରି ବଞ୍ଚିବାକୁ ଲାଗିଲେ । ଆଠଗଡ଼ ଜଙ୍ଗଲରେ ପହଞ୍ଚି ରାଜା ରାମଚନ୍ଦ୍ର ଦେବ ନରାପଦରେ ରହିଥିଲେ ।

## ଶ୍ରୀକ୍ଷେତ୍ରରୁ ଜଗନ୍ନାଥ ଠାକୁରଙ୍କ ଆଠଗଡ଼ସ୍ଥ ମାରଦା ଆଗମନ

ଖୋରଧା ଦୁର୍ଗ ଲୁଣ୍ଠନ କଲାପରେ ତକିଖାଁ ଓ ଇକ୍ରାବାହ୍ନ ସୈନ୍ୟସହ ଶ୍ରୀ ଜଗନ୍ନାଥଙ୍କ ମନ୍ଦିର ଆକ୍ରମଣ କରିବା ପାଇଁ ସ୍ଥିରକଲେ । ପଣ୍ଡାମାନେ ଏହି ଖବର ପାଇ ଚିନ୍ତାମଗ୍ନ ହୋଇପଡ଼ିଲେ । ଶ୍ରୀ ଜଗନ୍ନାଥ ଠାକୁରଙ୍କୁ କିପରି ମୁସଲମାନଙ୍କ କବଳରୁ ରକ୍ଷା କରାଯିବ ସେଥିପାଇଁ ସର୍ବଦା ଚିନ୍ତିତ ରହୁଥିଲେ । ପଣ୍ଡାଙ୍କ ମନକଥା ଜାଣିପାରି ଜଗନ୍ନାଥ ଠାକୁର ବଡ଼ ପଣ୍ଡାଙ୍କୁ ସ୍ୱପ୍ନରେ ଦେଖାଦେଇ କହିଲେ, "ତୁମ୍ଭେ ମୋ ପାଇଁ କୌଣସି ଚିନ୍ତା କରନାହିଁ । ମୋତେ ନେଇ ତୁମେ ସାଗର କୂଳକୁ ଯିବ । ସେଠାରୁ ମୋତେ ଡଙ୍ଗାଦ୍ୱାରା ପାରିକରାଇ ଅରଣ୍ୟ ମଧ୍ୟରେ ନେଇ ଆଠଗଡ଼କୁ ଯିବ । ସେଠାରେ ମୋତେ ରାଜାଙ୍କ ସହିତ ସାକ୍ଷାତ କରାଇବ ।"

ବଡ଼ପଣ୍ଡା ଚିନ୍ତାଗ୍ରସ୍ତ ସମୟରେ ସ୍ୱୟଂ ଜଗନ୍ନାଥଙ୍କ ସ୍ୱପ୍ନାଦେଶ ଶୁଣି ଆଶ୍ଚର୍ଯ୍ୟ ହୋଇ ପଡ଼ିଲେ । ସ୍ୱପ୍ନାଦେଶ କଥା ସମସ୍ତ ପଣ୍ଡାଙ୍କ ଆଗରେ ଜଣାଇଲେ । ବଡପଣ୍ଡାଙ୍କ ସ୍ୱପ୍ନକଥା ଶୁଣି ପଣ୍ଡାମାନେ ତିନି ଦାରୁବ୍ରହ୍ମ ମୂର୍ତ୍ତିଙ୍କୁ ଆଠଗଡ଼ ନେବେ ଯେ କଥା ଚିନ୍ତାକରି ଶେଷରେ ଠାକୁରଙ୍କ ସ୍ୱପ୍ନାଦେଶ ପ୍ରକାରେ ଠାକୁରଙ୍କ ଅଳଙ୍କାର ଓ ସୁବର୍ଣ୍ଣର ପାଦଭୁଜ, ଶିରଟି, ରତ୍ନମଣି ଓ ବିଭିନ୍ନ ମୂଲ୍ୟବାନ ଜିନିଷ ବୋହିନେଇ ପାତାଳେଶ୍ୱରଙ୍କୁ ସାକ୍ଷୀ ରଖି ତାଙ୍କ ନିକଟରେ ଗୋପନୀୟ କରି ରଖିଦେଲେ । ପଣ୍ଡାମାନେ ନିଜର ଶକ୍ତି ଅନୁଯାୟୀ ଧନରତ୍ନ ବୋହି ନେଇ ପାତାଳେଶ୍ୱରଙ୍କ ନିକଟରେ ଲୁଚାଇ ରଖିଲେ । ଶେଷରେ ତିନି ଠାକୁର ମୂର୍ତ୍ତିମାନଙ୍କୁ ମୁଣ୍ଡରେ ଧରି ରାତି ଅନ୍ଧାରେ ମନ୍ଦିରରୁ ବାହାରି ପଡ଼ିଲେ । ଯେଉଁ ଦାରୁମୂର୍ତ୍ତି ମହାମେରୁ ସଦୃଶ୍ୟ ତାହା ପଣ୍ଡାମାନଙ୍କୁ ଫୁଲବୋଝ ପରି ଜଣାଗଲା । ଠାକୁରଙ୍କ ସହିତ ଜଗନ୍ନାଥ ବଲ୍ଲଭ, ଉତ୍ତର ପାର୍ଶ୍ୱ ମଠ, ଗଙ୍ଗାମାତା ମଠ, ପଞ୍ଜାବ ମଠ, ଦକ୍ଷିଣପାର୍ଶ୍ୱ ମଠ, ଏମାର ମଠ ଏତଦ୍‌ବ୍ୟତୀତ ଜଗଦ୍‌ଗୁରୁ ଶଂକରାଚାର୍ଯ୍ୟ ବାଳ ବ୍ରହ୍ମଚାରୀ ପ୍ରଭୃତି ଜଗନ୍ନାଥ ଠାକୁରଙ୍କ ସହିତ ଆସିଗଲେ । ଲୋକନାଥେଶ୍ୱର ଓ ପବନସୁତ ହନୁମାନ ପ୍ରଭୃତି ଠାକୁରମାନଙ୍କୁ ଧରି ରାତି ମଧ୍ୟରେ ସାତକୋଶବାଟ ଚାଲିଆସିଲେ । ପଣ୍ଡାମାନେ ପୁରୁଷୋତ୍ତମ ଶ୍ରୀକ୍ଷେତ୍ର ସୀମାରୁ ପାରହୋଇ ଠାକୁରଙ୍କ ସହ ବିଶ୍ରାମ ନେଲେ । ଠାକୁରମାନଙ୍କୁ ଧରି ପରଦିନ ବାଣପୁର ଅନ୍ତର୍ଗତ ହନୁଆଳ ଠାରେ ପହଞ୍ଚିଲେ । ସେଠାରେ ଠାକୁରମାନଙ୍କ ସହ ତିନଦିନ ରହି ଠାକୁରଙ୍କ ବିଧିବିଧାନ ପ୍ରକାରେ ପୂଜାର୍ଚ୍ଚନା କରାଇଲେ । ସେଠାରୁ ନୌକା ସାହାଯ୍ୟରେ ଜଳପଥକୁ ଅତିକ୍ରମ କରି ବନ ପଥରେ ବହୁକଷ୍ଟ ସହ୍ୟକରି ଠାକୁରମାନଙ୍କୁ ମୁଣ୍ଡରେ ବହନକରି ଆଠଗଡ଼ ସୀମାରେ ପହଞ୍ଚିଲେ । ଆଠଗଡ଼ ଅରଣ୍ୟ ରାସ୍ତାରେ କିଛିଦିନ ଚାଲିଲା ପରେ ଆଠଗଡ଼ ନିକଟରେ ଥିବା ହାତୀଆରି ପର୍ବତ ନିକଟରେ ଆମ୍ବ, ପଣସ, କମଳା, ଜାମ, ଲେମ୍ବୁ ଓ ନାରଙ୍ଗ ବୃକ୍ଷ ଭରପୁର ଉପବନ ନିର୍ଜନ ସ୍ଥାନ ମନେକରି ସେଠାରେ ପାଞ୍ଚ ଠାକୁର ମୂର୍ତ୍ତିମାନଙ୍କୁ ମୁଣ୍ଡରୁ ଓହ୍ଲାଇଲେ । ଠାକୁରମାନଙ୍କୁ ବିଭିନ୍ନ ଆସନରେ ସ୍ଥାପନକରି ଯଥାବିଧି ପ୍ରକାରେ ପୂଜାର୍ଚ୍ଚନା କରାଇଲେ । ଏ ମଧ୍ୟରେ ଠାକୁର ରାଜାଙ୍କୁ ସ୍ୱପ୍ନରେ କହିଲେ ଯେ ମୁଁ ଆଠଗଡ଼ ହାତୀଆରି ପର୍ବତ ନିକଟସ୍ଥ ଉପବନରେ

ଅଛୁ ତୁମେ ଆସି ମୋତେ ଦେଖାକର । ରାଜା ରାମଚନ୍ଦ୍ର ଦେବ ସ୍ୱପ୍ନରେ ବଚେଶ୍ୱର ହୋଇ ନିକଟରେ ଥିବା ଲୋକଙ୍କୁ ଜଙ୍ଗଲ ମଧ୍ୟରେ ବୁଝିଦେଖିବାକୁ ଆଦେଶ ଦେଲେ । ଏଣେ ପଣ୍ଡାମାନେ ଚଡ଼ଢଗରେ ଶାଳ ପିଆଶାଳ ଜଙ୍ଗଲ ମଧ୍ୟରେ ଉପବନକୁ ନିରାପଦ ସ୍ଥାନ ମନେକରି ଠାକୁରମାନଙ୍କୁ ସେଠାରେ ରଖି ପୂଜାର୍ଚ୍ଚନା କରିବା ନିମନ୍ତେ ସ୍ଥିର କଲେ ।

ଖୋର୍ଦ୍ଧା ରାଜା ଓ ରାଜକର୍ମଚାରୀମାନେ ବନ ମଧ୍ୟରେ ଆସି ରହିଥିବା ଶ୍ରୀକ୍ଷେତ୍ର ଠାକୁରଙ୍କ ସେବକ ପଣ୍ଡାମାନଙ୍କୁ ଦେଖି ରାଜ କର୍ମଚାରୀମାନେ ରାଜାଙ୍କ ନିକଟରେ ଜଣାକଲେ । ରାଜାଙ୍କ ଆଦେଶ ପାଇ ପଣ୍ଡାମାନେ ଦୂତମାନଙ୍କ ସହିତ ରାଜାଙ୍କ ନିକଟରେ ଉପସ୍ଥିତ ହୋଇ ଠାକୁରଙ୍କ ସ୍ୱପ୍ନାଦେଶ ପ୍ରକାରେ ଗୋପନରେ ସେଠାକୁ ଠାକୁରମାନଙ୍କୁ ଆଣିବା କଥା ପ୍ରକାଶ କଲେ । ରାଜା ମଧ୍ୟ ସ୍ୱପ୍ନକଥା ପଣ୍ଡାମାନଙ୍କୁ କହି ସଙ୍ଗେ ସଙ୍ଗେ ଠାକୁରମାନଙ୍କ ଦର୍ଶନ ପାଇଁ ସେଠାରେ ଯାଇପହଞ୍ଚିଲେ । ରାଜା ରାମଚନ୍ଦ୍ର ଦେବ ଠାକୁରମାନଙ୍କ ଏପରି ଦୁର୍ଦ୍ଦଶା ଦେଖି ଲୋତକଭରା ନୟନରେ ଠାକୁରଙ୍କ ପାଦତଳେ ଦଣ୍ଡାୟମାନ ପଡ଼ିଗଲେ । ପଣ୍ଡାମାନେ ରାଜାଙ୍କୁ ଆଶ୍ୱାସନା ଦେଇ ପ୍ରବୋଧ କରାଇଲେ । ରାଜା ଉଠି ଠାକୁରମାନଙ୍କୁ କିଛିକ୍ଷଣ ଚାହିଁରହିଲେ । ଶେଷରେ ପଣ୍ଡାମାନଙ୍କୁ ଆଦେଶ କଲେ ଯଥାବିଧି ପ୍ରକାରେ ଦେବାର୍ଚ୍ଚନା ଓ ପୂଜାବିଧି ପାଳନ କରିବାପାଇଁ । ନିଜର ଇଷ୍ଟଦେବ ଶ୍ରୀଜଗନ୍ନାଥ ଠାକୁରଙ୍କ ଦର୍ଶନ ପାଇବା ପରେ ରାଜା ନିଜକୁ ଧନ୍ୟ ମନେକରି କୋଟି ଐଶ୍ୱର୍ଯ୍ୟ ଲଭକଲପରି ମନେକଲେ । ପରେ ଆଠଗଡ଼ ରାଜା ଜଗନ୍ନାଥ ହରିଚନ୍ଦନ ଜଗଦେବଙ୍କ ନିକଟକୁ ଦୂତଦ୍ୱାରା ଖବର ପଠାଇଲେ ।

ଆଠଗଡ଼ ରାଜା ଜଗନ୍ନାଥ ହରିଚନ୍ଦନ ଶ୍ରୀକ୍ଷେତ୍ରରୁ ଠାକୁର ଓ ଖୋର୍ଦ୍ଧା ରାଜା ଆଠଗଡ଼କୁ ଆସିବା କଥା ଶୁଣି ଆଶ୍ଚର୍ଯ୍ୟ ହୋଇଗଲେ । ତାଙ୍କ ଚକ୍ଷୁରୁ ସ୍ୱତଃ ପ୍ରେମାଶ୍ରୁ ନିର୍ଗତ ହୋଇଗଲା । ସଙ୍ଗେ ସଙ୍ଗେ ରାଜା ଠାକୁର ମାନଙ୍କ ପାଇଁ ଆବଶ୍ୟକୀୟ ସମ୍ଭାର ଓ ରାଜାଙ୍କ ପାଇଁ ଆବଶ୍ୟକୀୟ ଜିନିଷ ପତ୍ର ଭେଟି ନେଇ ନିଜ ରାଜ୍ୟର ମାରଢ଼ା ଉପବନକୁ ଯାତ୍ରାକଲେ ।

ଠାକୁରମାନଙ୍କୁ ଦର୍ଶନ କରି ଦଣ୍ଡାୟମାନ ହୋଇ ପାଦତଳେ ପ୍ରଣାମ କଲେ । ଠାକୁରମାନଙ୍କ ଏପରି ଦୟନୀୟ ଅବସ୍ଥା ଦେଖି ରାଜା ବିଚଳିତ ହୋଇଗଲେ । ତାପରେ ଗଜପତିଙ୍କ ନିକଟକୁ ଯାଇ ପ୍ରଣିପାତ ଜଣାଇଲେ ଏବଂ ଆଠଗଡ଼ ଆଗମନର କାରଣ ଜାଣିବା ପାଇଁ ଆଗ୍ରହରେ ପଚାରିଲେ । ଗଜପତି ରାମଚନ୍ଦ୍ର, ତକିଖାଁ ଓ କେତ୍ରବାହୁର ଆକ୍ରମଣ କଥା ବର୍ଣ୍ଣନା କରି ନିଜର ପରାଜୟ କଥା ପ୍ରକାଶ କରିଥିଲେ । ଗଜପତିଙ୍କ ଠାରୁ ସମସ୍ତ ଘଟଣା ଶୁଣିବା ପରେ ଜଗନ୍ନାଥ ହରିଚନ୍ଦନ ନିଜକୁ ଓ ଆଠଗଡ଼ ମାଟିକୁ ଧନ୍ୟ ମନେ କରିଥିଲେ । ଏତାଦୃଶ ବାଞ୍ଛାକଳ୍ପ ଯେ ପିତା ମାତାଙ୍କର ଭାଗ୍ୟବାନ ସନ୍ତାନ ବୋଲି ନିଜକୁ ଗର୍ବ ଅନୁଭବ କରିଥିଲେ ।

ଆଠଗଡ଼ ମାଟି, ପାଣି, ପବନ ଓ ସେଠାରେ ବାସ କରୁଥିବା ପ୍ରଜାମାନେ ମଧ୍ୟ ଧନ୍ୟ ମନେକଲେ । ସଙ୍ଗେ ସଙ୍ଗେ ଜଗନ୍ନାଥ ହରିଚନ୍ଦନ ଜଗଦ୍ଦେବ ନିଜ ରାଜ୍ୟ ଅନ୍ତର୍ଗତ ଚୁମାଗଡ଼ ମୁଠାରୁ ଲୋକ ଡକାଇ ସେହି ମାରଦାଜଙ୍ଗଲକୁ ଲହାକଣ୍ଟା ହଣାଇ ପରିଷ୍କାର କରାଇଦେଲେ । ନିକଟରେ ଥିବା ମଥୁରା ଗ୍ରାମରୁ ଶିଳ୍ପୀକାରମାନଙ୍କୁ ଡକାଇ ଗୋଟିଏ ପ୍ରାସାଦ ନିର୍ମାଣ କରାଇବାକୁ ଅନୁମତି ଦେଲେ । ରାଜାଙ୍କ ଅନୁମତି ପ୍ରକାରେ ୮୫ ଦିନ ମଧ୍ୟରେ ମାରଦା ଠାରେ ଏକ ମନ୍ଦିର ନିର୍ମାଣ କରାଗଲା । ସେହି ମନ୍ଦିରରେ ଠାକୁରମାନଙ୍କୁ ଅବସ୍ଥାନ କରାଇ ମହା ଆଡ଼ମ୍ବର ସହ ସଂସ୍କାର କାର୍ଯ୍ୟ ସମ୍ପାଦନ କରାଇଲେ । ପ୍ରଥମେ ଗୋଟିଏ ମଣ୍ଡପ ନିର୍ମାଣ କରାଯାଇ ଠାକୁର ମାନଙ୍କୁ ସ୍ଥାପନ କରାଇ ପୂଜାର୍ଚ୍ଚନା ଯଥାବିଧି ପ୍ରକାରେ କରିଥିଲେ । ଜଗନ୍ନାଥ ହରିଚନ୍ଦନ ଜଗଦ୍ଦେବ ଠାକୁରମାନଙ୍କ ପୂଜା ବିଧିବିଧାନ ପାଇଁ ଆବଶ୍ୟକ ପଡ଼ୁଥିବା ୯୦୦ (ନଅଶହ) ଭରଣ ଧାନ ଝଞ୍ଜି ଦେଇଥିଲେ ।

## ଏକବିଂଶ ରାଜା–ମଧୁସୂଦନ ହରିଚନ୍ଦନ ଜଗଦ୍ଦେବ (୧୭୪୯–୧୭୭୨) –

ଜଗନ୍ନାଥ ହରିଚନ୍ଦନ ଜଗଦ୍ଦେବଙ୍କର ମଧୁସୂଦନ ଓ ଗୋବି ନାମକ ଦୁଇଗୋଟି ପୁତ୍ରଥିଲେ । ତିନିଙ୍କ [illegible]

ରାଜ୍ୟର ରାଜକାର୍ଯ୍ୟ ପରିଚାଳନା କରିଥିଲେ । ମଧୁସୂଦନ ପୂର୍ବ ଗଜପତି ରାମଚନ୍ଦ୍ର ଦେବ ଓ ତାଙ୍କ ପରିବାରବର୍ଗ ରହିବା ନିମନ୍ତେ ନିଜ ରାଜ୍ୟର ଉତ୍ତର ସୀମାରେ ଥିବା ପାତ୍ରଆମା ମୁଠାଦୁର୍ଗ ନିକଟରେ ଭୂମିତଳେ ଏକ ନିରାପଦ ସ୍ଥାନରେ ଦୁର୍ଗ ନିର୍ମାଣ କରି ତାହା ଉପରେ ଜଙ୍ଗଲ ସୃଷ୍ଟି କରି ଦେଇଥିଲେ । ତକୀଁଙ୍କର ସୈନ୍ୟମାନେ ସେହି ନିକଟକୁ ପରି ମଧ୍ୟ ରାଜାଙ୍କର କୌଣସି ସନ୍ଧାନ ନ ପାଇ ନିରାଶ ହୋଇ ଫେରି ଆସିଥିଲେ । ମଧୁସୂଦନ ହରିଚନ୍ଦନ ନିର୍ଭୟରେ ମୋଗଲ ସୈନ୍ୟମାନଙ୍କୁ ମୋ ରାଜ୍ୟରେ କେହି ନାହାନ୍ତି ବୋଲି କହିଥିଲେ ।

ମଧୁସୂଦନ ହରିଚନ୍ଦନ ଜଗଦେବଙ୍କର ପୁତ୍ର ସନ୍ତାନ ନଥିଲେ । ଏଣୁ ସେ ସର୍ବଦା ଚିନ୍ତାଗ୍ରସ୍ତ ହୋଇ ଶେଷରେ ମୃତ୍ୟୁବରଣ କରିଥିଲେ ।

## ଦ୍ୱାବିଂଶ ରାଜା-ଗୋବିନ୍ଦଚନ୍ଦ୍ର ହରିଚନ୍ଦନ ଜଗଦେବ (୧୭୭୨-୧୭୮୯)—

ଗୋବିନ୍ଦଚନ୍ଦ୍ର ହରିଚନ୍ଦନ ଜଗଦେବ ଭାଇଙ୍କ ମୃତ୍ୟୁପରେ ଆଠଗଡ଼ ଦୁର୍ଗର ରାଜା ହୋଇଥିଲେ । ସେ ସୁଖରେ ପ୍ରଜା ପାଳନ କରି ପ୍ରଜାଙ୍କର ଆଦରର ପାତ୍ର ହୋଇଥିଲେ । ପ୍ରଜା ଓ ରାଜ୍ୟର ସବୁପ୍ରକାର ଉନ୍ନତି ପାଇଁ ସେ ରାଜ୍ୟର ରାଜସ୍ୱକୁ ପାଞ୍ଚ ଭାଗରେ ବିଭକ୍ତ କରି ବିନିଯୋଗ କରୁଥିଲେ । ରାଜ୍ୟ ସୁରକ୍ଷା ପାଇଁ ଏକ ଭାଗ, ରାଜ୍ୟର ଧର୍ମାନୁଷ୍ଠାନ ପରିଚାଳନା ପାଇଁ ଏକ ଭାଗ, ରାସ୍ତାଘାଟ ଓ ଜଳସେଚନ ପାଇଁ ଏକ ଭାଗ ଅତିଥି, ଦୀନ ଦରିଦ୍ରମାନଙ୍କ ସାହାଯ୍ୟ ପାଇଁ ଏକ ଭାଗ ଓ ଅବଶିଷ୍ଟ ଏକ ଭାଗରେ ସେ ନିଜର ଖର୍ଚ୍ଚ ତୁଲାଉଥିଲେ ।

ଏହି ରାଜା ରାଜ୍ୟର କୃଷକମାନଙ୍କ ପାଇଁ କୃଷିକ୍ଷେତ୍ରରେ ଜଳସେଚନର ସୁବିଧା ପାଇଁ ରାଜ୍ୟର ବିଭିନ୍ନ ଅଞ୍ଚଳରେ ବଡ଼ ବଡ଼ ହ୍ରଦ ଖୋଳାଇଥିଲେ । ସେମାନଙ୍କ ମଧ୍ୟରେ ଶିକୁଳା ହ୍ରଦ, ସମା ହ୍ରଦ, ଚାଙ୍ଗୁଡ଼ିଆଇ ହ୍ରଦ, ଜରଡ଼ ଦାମିଆ ହ୍ରଦ (ବର୍ତ୍ତମାନ ସେହି ହ୍ରଦକୁ ପାଳଧୁଆ ଘାଇ କହନ୍ତି) ପ୍ରଭୃତି ନିର୍ମାଣ କରାଇଥିଲେ । ପ୍ରଜାମାନଙ୍କ ସୁବିଧା ନିମନ୍ତେ ବିଭିନ୍ନ ସ୍ଥାନରେ

ପୋଖରୀ, ହ୍ରଦ ଓ ରାସ୍ତାଘାଟ ନିର୍ମାଣ କରାଇ ପ୍ରଜାଙ୍କର ପ୍ରିୟପାତ୍ର ହୋଇ ଯାଇଥିଲେ । ଏହାଙ୍କର ତିନିଗୋଟି ପୁତ୍ରଥିଲେ । ସେମାନଙ୍କର ନାମ ଯଥାକ୍ରମେ ବୃନ୍ଦାବନ, ଗୌରଚନ୍ଦ୍ର ଓ କୃଷ୍ଣଚନ୍ଦ୍ର ।

## ସପ୍ତମ୍ବଂଶ ରାଜା-ବୃନ୍ଦାବନ ହରିଚନ୍ଦନ ଜଗଦ୍ଦେବ (୧୭୮୯-୧୮୧୭)—

ପିତାଙ୍କ ମୃତ୍ୟୁପରେ ଜ୍ୟେଷ୍ଠ ପୁତ୍ର ବୃନ୍ଦାବନ ହରିଚନ୍ଦନ ଜଗଦ୍ଦେବ ରାଜ୍ୟ ପରିଚାଳନା ଦାୟିତ୍ୱ ବହନ କରିଥିଲେ । ବୃନ୍ଦାବନ ହରିଚନ୍ଦନ ବିଷ୍ଣୁଭକ୍ତ ଥିଲେ । ରାଜ୍ୟର ସମସ୍ତ ବିଷ୍ଣୁ ମନ୍ଦିରମାନଙ୍କରେ ପୂଜାବିଧି ଓ ସକଳ ପ୍ରକାର ଉନ୍ନତି ପାଇଁ ଧ୍ୟାନ ଦେଉଥିଲେ । ଏହି ରାଜାଙ୍କ ପୂର୍ବରୁ ଶ୍ରୀକ୍ଷେତ୍ରରୁ ଶ୍ରୀ ଜଗନ୍ନାଥ ଠାକୁର ଆସି ମାଣିକପଟ୍ଟା ଉପବନସ୍ଥ ଉଦ୍ୟାନରେ ପୂଜା ପାଉଥିଲେ । ବୃନ୍ଦାବନ ହରିଚନ୍ଦନ ଠାକୁରମାନଙ୍କ ନିମନ୍ତେ ମାଣିକପଟ୍ଟା ନିକଟରେ ଗୋଟିଏ ସୁନ୍ଦର ମନ୍ଦିର ନିର୍ମାଣ କରାଇଥିଲେ । ଶିଳ୍ପୀକାରମାନଙ୍କୁ ଆଦେଶ ଦେଇ ଏକମାସ ଭିତର ଦିନ ମଧ୍ୟରେ ମନ୍ଦିର ନିର୍ମାଣ କାର୍ଯ୍ୟ ସମାପନ କରିଥିଲେ । ମଥୁରା କାରିଗରମାନେ ଅକ୍ଲାନ୍ତ ପରିଶ୍ରମକରି ପଥର ଦେହରେ ବିଭିନ୍ନ ପ୍ରକାର କାରୁକାର୍ଯ୍ୟ ଖୋଦନ କରି ମନ୍ଦିରଟିରେ ତିନି ଠାକୁରଙ୍କ ପାଇଁ ତିନିଗୋଟି ଆସନ ସିଂହାସନ ଉପରେ ସ୍ଥାପନ କରିଥିଲେ । ରାଜା ବୃନ୍ଦାବନ ହରିଚନ୍ଦନ ନୂତନ ମନ୍ଦିରକୁ ମହା ଆଡ଼ମ୍ବର ସହକାରେ ପ୍ରତିଷ୍ଠା କରାଇ ଠାକୁରମାନଙ୍କୁ ସିଂହାସନାରୋହଣ କରାଇଥିଲେ । ଏଣେ ଲୋକନାଥ ସ୍ୱାମୀ ଓ ହନୁମାନଙ୍କ ନିମନ୍ତେ କ୍ଷୁଦ୍ର କ୍ଷୁଦ୍ର ଦୁଇଟି ମନ୍ଦିର ନିର୍ମାଣ କରାଇ ଠାକୁରମାନଙ୍କର ଯଥାବିଧି ପ୍ରକାରେ ପୂଜାର୍ଚ୍ଚନା କରାଇଥିଲେ ।

ରାଜା ଠାକୁରମାନଙ୍କ ସେବା ପୂଜା ଚଳାଚଳାଣି ନିମନ୍ତେ ଆବଶ୍ୟକୀୟ ଜମି ଖଞ୍ଜି ଦେଇଥିଲେ । ଏଣେ ଗଜପତି ରାମଚନ୍ଦ୍ର ଦେବ ଓ ରାଜ ପରିବାର ନିମନ୍ତେ ଯାହା ଆବଶ୍ୟକ ପଡୁଥିଲା ତାହା ଯୋଗାଇ ଦେଉଥିଲେ । ଶ୍ରୀକ୍ଷେତ୍ରରେ ଠାକୁରମାନଙ୍କୁ ପୂଜାବିଧି ଓ ପାରମ୍ପରିକ ପ୍ରକାରରେ ଆଦେଶକ୍ରମେ

ଅନୁଷ୍ଠିତ ହେବାକୁ ଲାଗିଲା । କିଛିଦିନ ଆଠଗଡ଼ରେ ଜଗନ୍ନାଥ ଠାକୁର ରହିବା ପରେ ଠାକୁରଙ୍କ ସ୍ୱପ୍ନାଦେଶ ପ୍ରକାରେ ପୁନର୍ବାର ଶ୍ରୀକ୍ଷେତ୍ରକୁ ନିଆଗଲା । କିନ୍ତୁ ମାରଦା ଠାରେ ଠାକୁରମାନେ ଯେଉଁ ପଥର ଆସନରେ ବିଜେ କରି ପୂଜା ପାଇଥିଲେ ସେହି ଆସନମାନଙ୍କୁ ରାଜାଙ୍କ ଆଦେଶରେ ପୂଜା ଓ ଭୋଗ ଦିଆଯାଉଅଛି । ବର୍ତ୍ତମାନ ତାହା ଏକ ଦର୍ଶନୀୟ ସ୍ଥାନରୂପେ ପରିଚିତ ହୋଇ ପାରିଛି । ଆଜି ଶହ ଶହ ଭକ୍ତ ସେଠାକୁ ଯାଇ ବନଭୋଜି କରି ସେଠାକାର ପ୍ରାକୃତିକ ଶୋଭା ଉପଭୋଗ କରୁଛନ୍ତି ।

ଶ୍ରୀ ଜଗନ୍ନାଥ ଠାକୁର, ପୁରୀ ଗଜପତି ଓ ରାଜପରିଷଦ ଆଠଗଡ଼ ଆସି ଦୀର୍ଘଦିନ ନିରାପଦରେ ଆଶ୍ରୟ ନେଇଥିବା ଯୋଗୁଁ ଆଠଗଡ଼କୁ ଶରଣ ରାଜ୍ୟରୂପେ ନାମିତ କରିଥିଲେ । ପୁରୀ ଗଜପତି ଆଠଗଡ଼ ରାଜା ଓ ରାଜ୍ୟକୁ "ଶରଣ ପଞ୍ଜର ମାନୋଦ୍ଧାରଣ ବାଘେଇ ବାଦଶା" ନାମରେ ଭୂଷିତ କରି ଶାଢ଼ୀ ଓ ସନନ୍ଦ ପ୍ରଦାନ କରିଥିଲେ । ସେହିଦିନଠାରୁ ପ୍ରତି ଏକାଦଶୀ ତିଥିରେ ଜଗନ୍ନାଥ ଠାକୁରଙ୍କ ବଡ଼ ଦେଉଳରେ ମହାଦୀପ ଜଳାଇବା ବେଳେ ଅଷ୍ଟଦୁର୍ଗ ବା ଆଠଗଡ଼କୁ ଜଗନ୍ନାଥଙ୍କ ଶରଣ ରାଜ୍ୟ ରୂପେ ଭକ୍ତମାନଙ୍କ ଗହଣରେ ଡକା ଯାଉଅଛି । ଏହି ପ୍ରଥା ବର୍ତ୍ତମାନ ପର୍ଯ୍ୟନ୍ତ ଚାଲି ଆସୁଅଛି । ଏହା ଆଠଗଡ଼ର ଗର୍ବ ଓ ଗୌରବ ଅଟେ । ବୃନ୍ଦାବନ ହରିଚନ୍ଦନ ଜଗଦ୍ଦେବ ଭକ୍ତବତ୍ସଳ ଓ ପ୍ରଜାରଞ୍ଜକ ଥିଲେ । ତାଙ୍କର ବାଳୁକେଶ୍ୱର ନାମରେ ଗୋଟିଏ ପୁତ୍ର ସନ୍ତାନ ଥିଲେ ।

## ଚତୁର୍ବିଂଶ ରାଜା-ବାଳୁକେଶ୍ୱର ହରିଚନ୍ଦନ ଜଗଦ୍ଦେବ (୧୮୧୨-୧୮୬୦)

ବାଳୁକେଶ୍ୱର ହରିଚନ୍ଦନ ଜଗଦ୍ଦେବ ୧୮୧୨ ଖ୍ରୀଷ୍ଟାବ୍ଦରେ ଆଠଗଡ଼ରେ ରାଜା ହୋଇଥିଲେ । ବାଳୁକେଶ୍ୱର ବୈଷ୍ଣବ ଧର୍ମ ଗ୍ରହଣ କରି ରାଧାକୃଷ୍ଣଙ୍କୁ ନିଜର ଆରାଧ୍ୟ ରୂପେ ବାଛି ନେଇଥିଲେ । ବୈଷ୍ଣବ ଧର୍ମର ପ୍ରଚାର ଓ ପ୍ରସାରପାଇଁ ସକଳ ପ୍ରକାର ପଦକ୍ଷେପ ନେଇଥିଲେ । ସାଧୁସନ୍ଥ ଓ ବୈଷ୍ଣବମାନଙ୍କ ପାଇଁ ବିଭିନ୍ନ ମଠ ନିର୍ମାଣ କରାଇ ସେଗୁଡ଼ିକର ପରିଚାଳନା ପାଇଁ ଆବଶ୍ୟକୀୟ ଜମି ଦାନ ଦେଇଥିଲେ ।

ବାଲୁକେଶ୍ୱର ହରିଚନ୍ଦନ ଜଗଦ୍ଦେବ ସାହିତ୍ୟ ପ୍ରେମୀ ଥିଲେ । ତାଙ୍କ ସମୟରେ ଦେଶର ବିଭିନ୍ନ ସ୍ଥାନରୁ ପଣ୍ଡିତ, ସାହିତ୍ୟିକ ଓ ସଙ୍ଗୀତଜ୍ଞମାନେ ଆଠଗଡ଼ ରାଜ ଦରବାରକୁ ଆସି ସାହିତ୍ୟ ସଙ୍ଗୀତ ଚର୍ଚ୍ଚା କରି ଉପଯୁକ୍ତ ମର୍ଯ୍ୟାଦା ପାଉଥିଲେ । ଏହି ରାଜାଙ୍କ ସମୟରେ ଆଠଗଡ଼ରେ କବିସୂର୍ଯ୍ୟ ବଳଦେବ ରଥ ଓ ଯଦୁମଣି ମହାପାତ୍ର ଜନ୍ମଗ୍ରହଣ କରି ଉତ୍କଳ ସାହିତ୍ୟ ଭଣ୍ଡାରକୁ ଋଦ୍ଧିମନ୍ତ କରିଥିଲେ । କବିରବି ବଳଦେବ ବାଲୁକେଶ୍ୱରଙ୍କ ନାମରେ ନିଜର ସର୍ବଶ୍ରେଷ୍ଠ ଚମ୍ପୂ କାବ୍ୟ "କିଶୋର ଚନ୍ଦ୍ରାନନ ଚମ୍ପୂ" ରଚନା କରି ଓଡ଼ିଆ ସାହିତ୍ୟରେ ଚମ୍ପୂ କାବ୍ୟର ବୈଶିଷ୍ଟ୍ୟ ପ୍ରତିପାଦନ କରିଥିଲେ । ବାଲୁକେଶ୍ୱର ହରିଚନ୍ଦନ ଜଗଦ୍ଦେବ ବୈଷ୍ଣବ ଧର୍ମାବଲମ୍ବୀ ଥିବା ଯୋଗୁଁ କବି ବଳଦେବ ରାଧାକୃଷ୍ଣଙ୍କ ଉପରେ ଆଧାରିତ ଚମ୍ପୂ କାବ୍ୟ ରଚନା କରି ରାଜାଙ୍କର ପ୍ରିୟ କବିରୂପେ ସୁପରିଚିତ ହୋଇଥିଲେ । ଏତଦ୍ ବ୍ୟତୀତ ବାଲୁକେଶ୍ୱର ହରିଚନ୍ଦନଙ୍କ ପ୍ରେରଣା ଲାଭକରି ରାଧାକୃଷ୍ଣଙ୍କ ଉପରେ ବିଭିନ୍ନ ଚଉପଦୀ ଓ ଜଣାଣ ରଚନାକରି ସୁନାମ ଅର୍ଜନ କରିଥିଲେ । କଥିତଅଛି ବାଲୁକେଶ୍ୱର ହରିଚନ୍ଦନ ଜଗଦ୍ଦେବଙ୍କ ପୋଡ଼ାଘାଆ ଫଳରେ ଭୀଷଣ କଷ୍ଟ ଅନୁଭବ କରୁଥିଲେ । ଏ କଥା କବିସୂର୍ଯ୍ୟ ଜାଣି ନିଜର ହାସ୍ୟରସ ସମ୍ବଳିତ "ହାସ୍ୟ କଲ୍ଲୋଳ" ରଚନା କରି ରାଜାଙ୍କ ଆଗରେ ପାଠକରି ରାଜାଙ୍କୁ ଯନ୍ତ୍ରଣାରୁ ଉପଶମ କରାଇଥିଲେ ।

•• ବାଲୁକେଶ୍ୱର ହରିଚନ୍ଦନ ଶ୍ରୀକ୍ଷେତ୍ର ନବ ଶାସନରୁ ବ୍ରାହ୍ମଣମାନଙ୍କୁ ନିଜ ରାଜ୍ୟକୁ ଆଣି ରାଜ୍ୟ ମଧ୍ୟରେ ଏକତାଳ ବୀର ବାଲୁକେଶ୍ୱରପୁର ଶାସନ ଓ ଧର୍ମକୋଟ ରାଜ୍ୟରୁ ବ୍ରାହ୍ମଣମାନଙ୍କୁ ଆଣି ପ୍ରତାପ ବୀର ବାଲୁକେଶ୍ୱରପୁର ନାମକ ଶାସନ ପ୍ରତିଷ୍ଠା କରିଥିଲେ । ବାଲୁକେଶ୍ୱର ଶ୍ରୀକ୍ଷେତ୍ରର ରାଜଗୁରୁମାନଙ୍କୁ ଆମନ୍ତ୍ରଣକରି ନିଜ ରାଜ୍ୟରେ ବିଭିନ୍ନ ସ୍ଥାନରେ ରଖାଇଥିଲେ । କାଳମେଘି ନନ୍ଦ ରାଜଗୁରୁ, ଜଗନ୍ନାଥପୁର ରାଜଗୁରୁ, ମଧୁସୂଦନପୁର ରାଜଗୁରୁ ଓ ହନୁମାନ ପେନ ଦେଇପୁର ରାଜଗୁରୁ ପ୍ରଭୃତି । ଏହି ଚାରି ରାଜଗୁରୁଙ୍କ ମଧ୍ୟରେ କାଳମେଘି ନନ୍ଦରାଜଗୁରୁଙ୍କୁ ଶ୍ରେଷ୍ଠରୂପେ ବିବେଚିତ କରିଥିଲେ । ଠାକୁରମାନେ ପଥର ଗୃହରେ ରହିଲାପରି ଏହି ନନ୍ଦରାଜଗୁରୁଙ୍କ ପାଇଁ ପଥରରେ ଗୃହ ନିର୍ମାଣ କରାଇ ଦେଇଥିଲେ ।

ଏମାନେ ଚଣ୍ଡୀପୂଜକ ଓ ସିଦ୍ଧ ସାଧକରୂପେ ଅସାଧ୍ୟକୁ ସାଧ୍ୟ କରିପାରୁଥିଲେ । ତତ୍କାଳୀନ କଳାହାଣ୍ଡି ମହାରାଜା କୌଶଳକ୍ରମେ ଗୋଟିଏ ସୁନ୍ଦରୀ ଝିଅକୁ ଦେଖାଇ ଶେଷରେ ନାଗର ଗୌନ୍ତିଆ ଝିଅକୁ ବାଲୁଙ୍କେଶ୍ୱର ହରିଚନ୍ଦନଙ୍କୁ ବିବାହ କରାଇଥିଲେ । ତାଙ୍କୁ ଗୌନ୍ତିଆ ମହାଦେଈ ବୋଲି କହୁଥାନ୍ତି । ଗୌନ୍ତିଆ ମହାଦେଈ ଏଣେ ଖଲିକୋଟ ହରିହର ମର୍ଦ୍ଦରାଜଙ୍କ ମାଉସୀ ଥିଲେ । ଏଣୁ ଖଲିକୋଟ ମର୍ଦ୍ଦରାଜ ମଧ୍ୟ ଏହି ବିବାହରେ ସମ୍ପୃକ୍ତ ଥିବାରୁ ବାଲୁଙ୍କେଶ୍ୱରଙ୍କର ଖଲିକୋଟ ରାଜାଙ୍କ ସହିତ ଉତ୍ତମ ସମ୍ପର୍କ ନଥିଲା । ଏହି ବିବାହରେ ବାଲୁଙ୍କେଶ୍ୱର ହରିଚନ୍ଦନ ଜଗଦେବ ସୁଖୀ ନଥିଲେ ।

ବାଲୁଙ୍କେଶ୍ୱର ହରିଚନ୍ଦନ ଦ୍ୱିତୀୟରେ ଧରାକୋଟ ରାଜକନ୍ୟାଙ୍କ ସହିତ ବିବାହ କରିଥିଲେ । ବାଲୁଙ୍କେଶ୍ୱରଙ୍କ ଦ୍ୱିତୀୟ ବିବାହ ଯୋଗୁଁ ଗୌନ୍ତିଆ ମହାଦେଈ ତାଙ୍କର ସର୍ବଦା ଅମଙ୍ଗଳ ଚିନ୍ତା କରୁଥିଲେ । କିନ୍ତୁ ବାଲୁଙ୍କେଶ୍ୱର ସେହି କଥାକୁ ତିଳେମାତ୍ର ଭ୍ରୂକ୍ଷେପ କରୁନଥିଲେ । ସେ ରାଧାକୃଷ୍ଣଙ୍କ ଉପାସନା ବଳରେ କାହାରିକୁ ଭୟ କରୁ ନଥିଲେ । ଧରାକୋଟ ରାଣୀଙ୍କ ଗର୍ଭରୁ ବାଲୁଙ୍କେଶ୍ୱର ହରିଚନ୍ଦନଙ୍କ ଗୋଟିଏ ପୁତ୍ର ସନ୍ତାନ ଜାତ ହୋଇଥିଲା । ତାଙ୍କର ନାମ ରାମଚନ୍ଦ୍ର ।

## ପଞ୍ଚିବିଂଶ ରାଜା ରାମଚନ୍ଦ୍ର ହରିଚନ୍ଦନ ଜଗଦେବ (୧୮୫୦—୮

ପିତାଙ୍କ ପରେ ରାମଚନ୍ଦ୍ର ହରିଚନ୍ଦନ ଜଗଦେବ ଆଠଗଡ଼ ରାଜତ୍ୱ କରିଥିଲେ । ସେ ଏକାଧାରରେ ଧର୍ମ ପରାୟଣ, ଯୋଗ ସାଧକ ଓ ପରୋପକାରୀ ରାଜାଥିଲେ । ସେ ଚୈତନ୍ୟ ଧର୍ମାବଲମ୍ବୀ ହୋଇଥିଲେ । ସେ କର୍ମଚାରୀମାନଙ୍କ ଉପରେ ରାଜ୍ୟ ପରିଚାଳନା ଦାୟିତ୍ୱ ଅର୍ପଣ କରିଥିଲେ । ପରିଚାଳକମାନେ ଗୌନ୍ତିଆ ମହାଦେଈଙ୍କ କୁମନ୍ତ୍ରଣାରେ ପଡ଼ି ରାମଚନ୍ଦ୍ର ହରିଚନ୍ଦନ ଜଗଦେବଙ୍କ ପ୍ରତି ବିଶ୍ୱାସଘାତକତା କରିଥିଲେ । ଗୌନ୍ତିଆ ମହାଦେଈ ଖଲିକୋଟ ରାଜା ହରିହର ମର୍ଦ୍ଦରାଜଙ୍କୁ ଡ଼କାଇ କୁମନ୍ତ୍ରଣା କରି ଇଂରେଜୀ ସରକାରଙ୍କ ଦେୟ ପରିଶୋଧ ନକରିବା ପାଇଁ ରାଜକର୍ମଚାରୀ ମାନଙ୍କୁ ପ୍ରବର୍ତ୍ତାଇ ଥିଲେ । ଏଣେ ହରିହର ମର୍ଦ୍ଦରାଜ

ଇଂରେଜ ସରକାରଙ୍କୁ ଆଠଗଡ଼ ରାଜ୍ୟର ବକେୟା ଥିବା ଅର୍ଥ ଦେଇ ୧୯ ବର୍ଷ ପାଇଁ ରାଜ୍ୟ ପରିଚାଳନା ଦାୟିତ୍ୱ ଇଂରେଜ ସରକାରଙ୍କ ଠାରୁ ଅନୁମତି ପାଇଥିଲେ । ସେହିଦିନ ଠାରୁ ଖଲିକୋଟ ମର୍ଦ୍ଦରାଜ ଆଠଗଡ଼ର ସମସ୍ତ ଦାୟିତ୍ୱ ନିଜ ହାତକୁ ନେଇଥିଲେ ।

ମାଳତୀ ଦେଇଁଟି ମହାଦେଈଙ୍କ ପ୍ରରୋଚନାରେ ଖଲିକୋଟ ରାଜା ହରିହର ମର୍ଦ୍ଦରାଜ ବଳ ପ୍ରୟୋଗ କରାଇ ଆଠଗଡ଼ ରାଜା ରାମଚନ୍ଦ୍ର ହରିଚନ୍ଦନ ଜଗଦ୍ଦେବଙ୍କୁ ମରାଇ ଦେଇଥିଲେ । ହରିହର ମର୍ଦ୍ଦରାଜ କୌଶଳକ୍ରମେ ଇଂରେଜ ସରକାରଙ୍କ ନିକଟରୁ ଆଠଗଡ଼ ରାଜବଂଶକୁ ତାଲୁକା ପ୍ରବେଶ ନିଷେଧ ଆଇନ ଲଗାଇ ଆଠଗଡ଼ରୁ ଅନ୍ତର କରିଥିଲେ ।

ରାମଚନ୍ଦ୍ର ହରିଚନ୍ଦନ ଜଗଦ୍ଦେବଙ୍କ ମୃତ୍ୟୁବେଳକୁ ତାଙ୍କ ସ୍ତ୍ରୀ ଅନ୍ତଃସତ୍ତ୍ୱା ଥିଲେ । ସ୍ୱାମୀଙ୍କ ବିୟୋଗ ପରଠାରୁ ସେ ଇଷ୍ଟଦେବୀ କନକ ଦୁର୍ଗାଙ୍କ ଉପରେ ଭରସା ରଖି ରହୁଥାନ୍ତି । ଦିନେ ରାତିରେ କନକଦୁର୍ଗା ସ୍ୱପ୍ନରେ ରାଣୀଙ୍କୁ କହିଲେ, "ତୁମେ ଯେତେ ଶୀଘ୍ର ପାରିବ ଏହି ଦୁର୍ଗ ପରିତ୍ୟାଗ କର ନଚେତ୍ ସ୍ୱାମୀଙ୍କ ପରି ତୁମକୁ ମଧ୍ୟ ମାରିଦେବେ । ରାଣୀ ଇଷ୍ଟଦେବୀ ମା' କନକଦୁର୍ଗାଙ୍କ ସ୍ୱପ୍ନାଦେଶ ପ୍ରକାରେ ପରଦିନ ରାଜନଗରରୁ ଯାଇ ଦେଉଙ୍କ ଗୃହରେ ଆଶ୍ରୟ ନେଇଥିଲେ । ପୁଣି ସ୍ୱପ୍ନ ହେବାରୁ ତା' ପରଦିନ ରାତିରେ ଦୁର୍ଗରୁ ବାହାରିଆସି ଆଠଗଡ଼ 'ପାଟଣାଗ୍ରାମ' ବଣିଆ ସାହିର କୋଠଗୃହରେ ଆଶ୍ରୟ ନେଇଥିଲେ । ପରଦିନ ପ୍ରଭାତରୁ ସେ ନିଜର ପିତୃଗୃହ ଧରାକୋଟକୁ ଚାଲିଯାଇଥିଲେ । କିଛିଦିନ ପରେ ତାଙ୍କ ଗର୍ଭରୁ ଏକ ପୁତ୍ର ସନ୍ତାନ ଜାତ ହୋଇଥିଲା । ଧରାକୋଟ ରାଜା ଜ୍ୟୋତିଷ ମାନଙ୍କ ଦ୍ୱାରା ଗଣନା କରାଇ ନାତିର ନାମ ଚୈତନ୍ୟ ବୋଲି ରଖିଥିଲେ । କାଳେ ଖଲିକୋଟ ରାଜା ହରିହର ମର୍ଦ୍ଦରାଜ ଏକଥା ଜାଣି ଚୈତନ୍ୟକୁ ମାରିବା ଭୟରେ ଧରାକୋଟ ରାଜା ଚୈତନ୍ୟକୁ ତାଙ୍କର ପାଳିତ ପୁତ୍ର ବୋଲି ଲୋକମାନଙ୍କ ଆଗରେ ପ୍ରକାଶ କରୁଥିଲେ ।

ଚୈତନ୍ୟ ଧରାକୋଟରେ ଅଜାଙ୍କ ଗୃହରେ ରହି ବିଦ୍ୟାଶିକ୍ଷା ଆରମ୍ଭ କରିଥିଲେ । ଉଚ୍ଚଶିକ୍ଷା ପାଇଁ ସେ ବ୍ରହ୍ମପୁର ଯାଇଥିଲେ । ବ୍ରହ୍ମପୁରରେ ବିଦ୍ୟାଶିକ୍ଷା ସମୟରେ ସେ ଟେକଳି ରାଜ୍ୟ କମା ଦେଓ୍ୱାନଙ୍କ ପୁତ୍ର ସହିତ ତାଂକର ମିତ୍ରତା ହୋଇଥିଲା । ଦୁଇ ମିତ୍ର ପରସ୍ପରକୁ ଅତ୍ୟନ୍ତ ଭଲ ପାଉଥିଲେ । ସମୟେ ସମୟେ ଚୈତନ୍ୟ ଟେକଳି କମା ଦେଓ୍ୱାନଙ୍କ ଗୃହକୁ ଯାଉଥିଲେ । ସେହିପରି କମା ଦେଓ୍ୱାନଙ୍କ ପୁତ୍ର ମଧ୍ୟ ଧରାକୋଟ ଆସୁଥିଲେ ।

ଟେକଳି ରାଜା ଅପୁତ୍ରିକ ଥିଲେ । ତାଂକର ସାତଗୋଟି ଝିଅଥିଲେ । ଜ୍ୟେଷ୍ଠ କନ୍ୟାକୁ ମାଲଟିଣ ରାଜାଙ୍କୁ ବିବାହ କରାଇଥିଲେ । ଦ୍ୱିତୀୟ କନ୍ୟା କଳାହାଣ୍ଡି, ତୃତୀୟ କନ୍ୟା ବଲାଙ୍ଗୀର ଓ ଚତୁର୍ଥ ଦଶପଲ୍ଲାରେ ବିବାହ କରିଥିଲେ । ଟେକଳି ରାଜା ତାଂକର କନିଷ୍ଠା କନ୍ୟାକୁ କମା ଦେଓ୍ୱାନଂକ ମଧ୍ୟସ୍ଥିରେ ଧରାକୋଟ ରାଜାଂକ ପାଳିତ ପୁତ୍ର ଚୈତନ୍ୟଂକ ସହ ବିବାହ କରାଇଥିଲେ । ଚୈତନ୍ୟ ବିବାହ ପରେ ଟେକଳି ରାଜ୍ୟକୁ ଯାଇଥିଲେ । ସେଠାରେ ସେ ରାଜ୍ୟ ପରିଚାଳନା ଭାର ବୁଝିବା ସହ ବୃଦ୍ଧ ଶାଶୁ ଓ ଶ୍ୱଶୁରଂକ ସକଳ ପ୍ରକାର ଯତ୍ନ ନେଇଥିଲେ । ଚୈତନ୍ୟଂକ ବ୍ୟବହାରରେ ସନ୍ତୁଷ୍ଟ ହୋଇ ଟେକଳି ରାଜା ନିଜ ସମ୍ପତ୍ତିର ୬୦ ଶତାଂଶ ଚୈତନ୍ୟଂକ ନାମରେ ଲେଖାଇଦେଇ ଅବଶିଷ୍ଟ ୪୦ ଶତାଂଶ ସମ୍ପତ୍ତି ଲେଖାଇ ଦେଇ କଦମ୍ବ ବଂଶୀୟ ଦତ୍ତପୁତ୍ର ନିଯୁକ୍ତ କରାଇଥିଲେ ।

ଚୈତନ୍ୟ ହରିଚନ୍ଦନ ଜଗଦେବ ଟେକଳିରେ ସମ୍ପତ୍ତି ପାଇ ଶାନ୍ତିରେ ରହିପାରି ନଥିଲେ । ସେ ସର୍ବଦା ନିଜ ପିତାଙ୍କ ରାଜ୍ୟ ଆଠଗଡ଼ ହରିହର ମର୍ଦ୍ଦରାଜଙ୍କ ଠାରୁ କିପରି ଫେରି ପାଇବେ ସେଥିପ୍ରତି ଚିନ୍ତିତ ରହୁଥିଲେ । ଏଣେ ହରିହର ମର୍ଦ୍ଦରାଜ ଆଠଗଡ଼କୁ ନିଜ ରାଜ୍ୟ ଭାବି ପରିଚାଳନା କରୁଥାନ୍ତି ।

ଚୈତନ୍ୟ ହରିଚନ୍ଦନଙ୍କ ଗୋଟିଏ ପୁତ୍ର ଜାତ ହୋଇଥିଲେ । ତାଙ୍କର ନାମ ବୃନ୍ଦାବନ ହରିଚନ୍ଦନ । ପିତାଙ୍କ ପରେ ବୃନ୍ଦାବନ ହରିଚନ୍ଦନ

ଢେଙ୍କାନାଳ ରାଜ୍ୟରେ ପିତାଙ୍କ ସମ୍ପତ୍ତିର ମାଲିକ ହୋଇଥିଲେ । କିନ୍ତୁ ସେ ନିଜ ରାଜ୍ୟ ଆଠଗଡ଼କୁ ଆସିବା ପାଇଁ ଇଚ୍ଛା କରୁଥିଲେ ସୁଦ୍ଧା ତାଙ୍କୁନା ପ୍ରବେଶ ନିଷେଧ ଆଇନାନୁଯାୟୀ ଆସିପାରୁ ନଥିଲେ ।

ବୃନ୍ଦାବନ ହରିଚନ୍ଦନ ଜଗଦେବଙ୍କ ତିନିଗୋଟି ପୁଅ ଥିଲେ । ସେମାନଙ୍କର ନାମ ଲକ୍ଷ୍ମୀନାରାୟଣ, ଗୋପୀନାଥ ଓ ବାଲୁକେଶ୍ୱର । କନିଷ୍ଠ ପୁତ୍ର ବାଲୁକେଶ୍ୱରଙ୍କ ଅକାଳ ମୃତ୍ୟୁ ହୋଇଥିଲା । ବୃନ୍ଦାବନ ହରିଚନ୍ଦନଙ୍କ ପରେ ପିତାଙ୍କ ସମସ୍ତ ସମ୍ପତ୍ତି ଦୁଇ ଭାଗରେ ଲକ୍ଷ୍ମୀନାରାୟଣ ଓ ଗୋପୀନାଥ ବାଣ୍ଟିଥିଲେ । ଆଠଗଡ଼ରେ ଥିବା ଜଗନ୍ନାଥ ମନ୍ଦିର ଓ ଜଗନ୍ନାଥଙ୍କ ଜମି, ନାରାୟଣୀ ମନ୍ଦିର ଓ ସମସ୍ତ ଭୂସମ୍ପତ୍ତି ଜ୍ୟେଷ୍ଠପୁତ୍ର ଲକ୍ଷ୍ମୀନାରାୟଣଙ୍କ ଭାଗରେ ରହିଲା । କନକଦୁର୍ଗା ଓ ଗୋପାଳସ୍ୱାମୀ ମନ୍ଦିର ପରିଚାଳନା ଦାୟିତ୍ୱ ଗୋପୀନାଥଙ୍କ ଭାଗରେ ରହିଲା । ସେହିପରି ଢେଙ୍କାନାଳ ଠାରେ ଥିବା ଜଗନ୍ନାଥ ମନ୍ଦିର, ନାରାୟଣୀ ମନ୍ଦିର ଓ ରାଧାକୃଷ୍ଣ ମନ୍ଦିରର ପରିଚାଳନା ଦାୟିତ୍ୱ ଗୋପୀନାଥ ବହନ କରିଥିବା ବେଳେ ସେଠାକାର କନକଦୁର୍ଗା ଓ ରାମସ୍ୱାମୀ ମନ୍ଦିର ପରିଚାଳନା ଦାୟିତ୍ୱଭାର ଜ୍ୟେଷ୍ଠ ପୁତ୍ର ଲକ୍ଷ୍ମୀନାରାୟଣଙ୍କ ଦାୟିତ୍ୱରେ ରହିଲା ।

ଭାରତ ସ୍ୱାଧୀନ ହେବାପରେ ସ୍ୱର୍ଗତ ବିଶ୍ୱନାଥ ଦାଶ ଓଡ଼ିଶାର ପ୍ରଧାନମନ୍ତ୍ରୀ ଦାୟିତ୍ୱ ଗ୍ରହଣ କରିଥିଲେ । ବିଶ୍ୱନାଥ ଦାଶ ଆଠଗଡ଼ ଅଞ୍ଚଳର ଏକ ବରିଷ୍ଠ ଜମିଦାର ଥିଲେ । ଆଠଗଡ଼ ଅଞ୍ଚଳପ୍ରତି ଖଲିକୋଟ ରାଜାଂକ ବୈମାତୃକ ମନୋଭାବରେ ଏଠାର ପ୍ରଜାଗଣ ଅତିଷ୍ଠ ହୋଇ ପଡ଼ିଥିଲେ । ଏହାଦ୍ୱାରା ବିଶ୍ୱନାଥ ଦାଶ ଓ ତାଂକ ପରିବାର ମଧ୍ୟ ବହୁ ଅସୁବିଧାର ସମ୍ମୁଖୀନ ହୋଇଥିଲେ । ତେଣୁ ଆଠଗଡ଼ ପ୍ରଜାମାନେ ଖଲିକୋଟ ମହାରାଜଙ୍କ ଅଧୀନରେ ରହିବାକୁ ଶ୍ରେୟମନେ କରୁନଥିଲେ । ଏପରି ଅସୁବିଧାର ସମ୍ମୁଖୀନ ହୋଇ ଆଠଗଡ଼ର ସମସ୍ତ ପ୍ରଜା ବିଶ୍ୱନାଥ ଦାଶଙ୍କ ନିକଟରେ ନିଜର ଦୁଃଖ ଓ ଦୁର୍ଦ୍ଦଶା ଜଣାଇଥିଲେ । ବିଶ୍ୱନାଥ ଦାଶ ନିଜର ପ୍ରଗାଢ଼ ଚେଷ୍ଟାରେ ଆଠଗଡ଼ ରାଜାଙ୍କ ପ୍ରତି ଲାଗୁ ରହିଥିବା ତାଙ୍କୁନା ପ୍ରବେଶ ନିଷିଦ୍ଧ ଆଇନକୁ ରଦ୍ଦକରି ୧୯୪୨ ମସିହାରେ ନିଜ

ନାରାୟଣ ହରିଚନ୍ଦନ ଜଗଦେବଙ୍କୁ ଆଠଗଡ଼କୁ ଅଣାଇଥିଲେ । ଲକ୍ଷ୍ମୀ ନାରାୟଣ ହରିଚନ୍ଦନ ଜଗଦେବ ନିଜ ପିତାଙ୍କ ରାଜ୍ୟ ପରିଚାଳନା ଦାୟିତ୍ୱ ବହନ କରିଥିଲେ । କିନ୍ତୁ ଦୁର୍ଭାଗ୍ୟବଶତଃ ସେତେବେଳେ ଗଡ଼ଜାତ ମିଶ୍ରଣ ଆଇନ କାର୍ଯ୍ୟକାରୀ ହେବାରୁ ସମସ୍ତ ଗଡ଼ଜାତ ରାଜାମାନଙ୍କର ରାଜ୍ୟ ସରକାରଙ୍କ ଅଧୀନରେ ପରିଚାଳିତ ହୋଇଥିଲା । ଲକ୍ଷ୍ମୀନାରାୟଣ ହରିଚନ୍ଦନ ଜଗଦେବ କେବଳ ଆଠଗଡ଼ ଶ୍ରୀଜଗନ୍ନାଥ ମନ୍ଦିର ଓ ନାରାୟଣୀ ମନ୍ଦିରମାନଙ୍କର ପରିଚାଳନା ଦାୟିତ୍ୱ ସୁଚାରୁରୂପେ ତୁଲାଇଥିଲେ ।

ଲକ୍ଷ୍ମୀନାରାୟଣଙ୍କ ପରେ ତାଙ୍କର ପୁତ୍ର ଗୋବିନ୍ଦଚନ୍ଦ୍ର ହରିଚନ୍ଦନ ଜଗଦେବ ପିତାଙ୍କ ସମ୍ପତ୍ତିର ଦାୟିତ୍ୱ ବହନକରି ଦେବୋତ୍ତରମାନଙ୍କର ପରିଚାଳନା କରିଥିଲେ । ଗୋବିନ୍ଦଚନ୍ଦ୍ର ଅଧିକାଂଶ ସମୟ କଟକଠାରେ ରହିବାରୁ ଆଠଗଡ଼ପ୍ରତି ବିଶେଷ ଦୃଷ୍ଟି ଦେଇ ନଥିଲେ । ଫଳରେ ଆଠଗଡ଼ର ଦୁର୍ଗ ନଷ୍ଟ ହୋଇଗଲା । ବର୍ତ୍ତମାନ ଆଠଗଡ଼ ଦୁର୍ଗ ଭଗ୍ନସ୍ତୁପ ସଦୃଶ୍ୟ ରହିଅଛି । ଗୋବିନ୍ଦଚନ୍ଦ୍ର ହରିଚନ୍ଦନଙ୍କ ପୁତ୍ର ଦୁର୍ଗାମାଧବ ଜଣେ ଉଚ୍ଚଶିକ୍ଷା ସମ୍ପନ୍ନ ସରକାରୀ କର୍ମଚାରୀ ଅଟନ୍ତି । ସେ କଟକଠାରେ ରହନ୍ତି ।

ଗୋପୀନାଥ ଦେଓଙ୍କର ଦୁଇଗୋଟି ପୁତ୍ର ମଧୁସୂଦନ ଦେଓ ଓ ଜଗନ୍ନାଥ ଦେଓ । ମଧୁସୂଦନ ଦେଓ ବ୍ରହ୍ମପୁର ଆଇନ ମହାବିଦ୍ୟାଳୟର ଅଧ୍ୟକ୍ଷରୂପେ କାର୍ଯ୍ୟକରି ବର୍ତ୍ତମାନ ଅବସର ଗ୍ରହଣକରି ବ୍ରହ୍ମପୁର ସହରରେ ବସବାସ କରୁଛନ୍ତି ।



ଅଷ୍ଟଦୁର୍ଗ ଇତିହାସରୁ ଜଣାଯାଏ ଯେ ରାଜ୍ୟର ଧାର୍ମିକ ରାଜାମାନେ ଆଧ୍ୟାତ୍ମିକ ଚେତନାରେ ଉଦ୍‌ବୁଦ୍ଧ ହୋଇଥିଲେ । ରାଜ୍ୟ ମଧ୍ୟସ୍ଥ ସମସ୍ତ ଦେବାଦେବୀ ମାନଙ୍କର ସେବାପୂଜା, ମନ୍ଦିର ନିର୍ମାଣ ଓ ପରିଚାଳନା ଦୃଷ୍ଟିରେ ରାଜାମାନେ ସର୍ବଦା ମଗ୍ନ ରହୁଥିଲେ । ଠାକୁରମାନଙ୍କର ସେବା ପୂଜା, ଅମୃତମଣୋହି ନିମନ୍ତେ ଆବଶ୍ୟକୀୟ ଭୂସମ୍ପତ୍ତି ଖଞ୍ଜି ଦେଇଥିଲେ ।

ଏ ରାଜ୍ୟର ରାଜାମାନେ ଅଷ୍ଟଦୁର୍ଗର ପ୍ରାଧାନ୍ୟକୁ ଦୃଷ୍ଟିରେ ରଖି ରାଜ୍ୟର ବିଭିନ୍ନ ସ୍ଥାନରେ ଆଠଗୋଟି ବିଶିଷ୍ଟ ଶିବମନ୍ଦିର ପ୍ରତିଷ୍ଠା କରି ଅଷ୍ଟଶମ୍ଭୁ ନାମରେ ନାମିତ କରିଥିଲେ । ମହାଲିଙ୍ଗେଶ୍ୱର-କଲୁଣ୍ଡା, ଦକ୍ଷେଶ୍ୱର -କୋଦଳା, ମାଣିକେଶ୍ୱର-ଫାଶି, ଗୁଣେଶ୍ୱର-ଶିକୁଳା, କାଳେଶ୍ୱର-ବାଣନଇ ଖଣ୍ଡିଆ, ସୋମେଶ୍ୱର-ବୋଲହର, ମୁକ୍ତେଶ୍ୱର-ହାଟିଓଟ ଓ କପିଳେଶ୍ୱର-ଆଠଗଡ଼ । ଏତଦ୍‌ବ୍ୟତୀତ ରାଜ୍ୟର ଅଧିକାଂଶ ଗ୍ରାମଗୁଡ଼ିକରେ ଶ୍ରୀଜଗନ୍ନାଥ ମନ୍ଦିର, ଶିବମନ୍ଦିର ଓ ମା' ଠାକୁରାଣୀଙ୍କ ମନ୍ଦିର ନିର୍ମାଣ କରାଇ ତାହାର ସୁପରିଚାଳନା ନିମନ୍ତେ ଆବଶ୍ୟକୀୟ ଜମି ଖଞ୍ଜି ଦେଇଥିଲେ ।

## ତାରାତାରିଣୀ ଓ ବସୁ ପ୍ରହରାଜ—

ବସୁ ପ୍ରହରାଜ ଜଣେ ପରମ ସାଧକ ଥିଲେ । ସେ ପୁରୁଷୋତ୍ତମପୁର ନିକଟସ୍ଥ କୁମ୍ଭାରୀ ଗ୍ରାମରେ ୧୭°୭ ଖ୍ରୀଷ୍ଟାବ୍ଦରେ ଏକ ମଧ୍ୟବିତ୍ତ ବ୍ରାହ୍ମଣ ପରିବାରରେ ଜନ୍ମଗ୍ରହଣ କରିଥିଲେ । କିମ୍ବଦନ୍ତୀରୁ ଜଣାଯାଏ ଯେ ସେ ମାତୃ ଗର୍ଭସ୍ଥ କାଳରେ ତାଙ୍କ ମାଆଙ୍କର ଅକାଳ ବିୟୋଗ ହୋଇଥିଲା । ଗର୍ଭସ୍ଥ ଶିଶୁ ପ୍ରହରାଜଙ୍କୁ ଶ୍ମଶାନରେ ଧୋବା କୁରଡ଼ୀ ସାହାଯ୍ୟରେ ମାତାଙ୍କ ଗର୍ଭଚିରି ବାହାର କରିଥିଲା । ତାଙ୍କ ପିତା ରଘୁନାଥ ସାମନ୍ତରାୟ ମହାପାତ୍ର ଜଣେ ଖ୍ୟାତନାମା ଜ୍ୟୋତିଷ ଥିଲେ । ମରହଟ୍ଟାମାନଙ୍କ ଲୁଣ୍ଠନ ହାତରୁ ରକ୍ଷାପାଇବା ନିମନ୍ତେ ସେ କୁମ୍ଭାରୀ ପରିତ୍ୟାଗକରି ଆଠଗଡ଼ ଅନ୍ତର୍ଭୁକ୍ତ ଜଗନ୍ନାଥପୁର ଶାସନକୁ ବସବାସ କରିବାର ଚାଲି ଆସିଥିଲେ ।

ବସୁ ପ୍ରହରାଜଙ୍କ ଚେଷ୍ଟାରେ ଗଞ୍ଜାମ ଜିଲ୍ଲା ପୁରୁଷୋତ୍ତମପୁର ନିକଟ ଋଷିକୁଲ୍ୟା ନଦୀ କୂଳସ୍ଥ ପ୍ରସିଦ୍ଧ ପାହାଡ଼ ଉପରେ ଶ୍ରୀ ଶ୍ରୀ ତାରତାରିଣୀ ମନ୍ଦିର

ପ୍ରତିଷ୍ଠା କରି ସେଠାରେ ଦୁଇଟି ପ୍ରତିମା 'ଚାରି ଓ ଚାରିଣୀ' ସ୍ଥାପନ କରିଥିଲେ । ଏହା ଦୁଇଟି ମୂର୍ତ୍ତି ହେଲେହେଁ ଶକ୍ତି ଏକ । ପୁନଶ୍ଚ ବସୁ ପ୍ରହରାଜ ବାଣନଇ ଖଣ୍ଡା ନିକଟବର୍ତ୍ତୀ ଜଗନ୍ନାଥପୁର ଶାସନରେ କାଳେଶ୍ୱର ମନ୍ଦିର ନିର୍ମାଣ କରାଇ ସେଠାରେ ଗୋଟିଏ ଶକ୍ତି ମଧ୍ୟରେ ଦୁଇଟି ଲିଙ୍ଗ 'କାଳେଶ୍ୱର ଓ ରାମେଶ୍ୱର' ସ୍ଥାପନ କରିଥିଲେ ।

ବସୁ ପ୍ରହରାଜ ଜଣେ ବିଶିଷ୍ଟ କବି ଓ ସୁଲେଖକ ଥିଲେ । ସେ 'ରାଘବ ଯାଦବୀୟ' କାବ୍ୟ ରଚନା କରି ଏଥିରେ ରାଘବ ଅର୍ଥାତ୍ ଶ୍ରୀରାମଚନ୍ଦ୍ରଙ୍କ ମହତ୍ କାର୍ଯ୍ୟାବଳୀ ଏବଂ ଯାଦବ ଅର୍ଥାତ୍ ଶ୍ରୀକୃଷ୍ଣଚନ୍ଦ୍ରଙ୍କର କାର୍ଯ୍ୟାବଳୀ ରଚନା କରିଥିଲେ । ସେ ଜଣେ ସୁସାଧକ ଥିଲେ । ଥରେ ସେ ଶ୍ରୀକ୍ଷେତ୍ରରୁ ଗ୍ରାମକୁ ଫେରିବାବେଳେ ତାଙ୍କୁ ମହୁରୀ ରାଜା ନିମନ୍ତ୍ରଣ କରି ନିଜ ରାଜ୍ୟକୁ ନେଇଥିଲେ । ଦିନେ ସନ୍ଧ୍ୟାଆଳତି ନିମନ୍ତେ ରାଜା ପ୍ରହରାଜଙ୍କୁ ସଙ୍ଗରେନେଇ ଜଗନ୍ନାଥଙ୍କ ମନ୍ଦିରକୁ ଯାଇଥିଲେ । ଆଳତି ସମୟରେ ରାଜା ଠାକୁରଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ ହୋଇ ମୁଣ୍ଡିଆମାରି ମୁଣ୍ଡରେ ଆରତି ଲଗାଇଲେ କିନ୍ତୁ ବସୁ ପ୍ରହରାଜ ମୁଣ୍ଡିଆ ମାରିଲେ ନାହିଁ । ରାଜା ପ୍ରଶ୍ନକଲେ ପ୍ରହରାଜେ ଆମ ଇଷ୍ଟଦେବତାଙ୍କୁ ତୁମେ କାହିଁକି ପ୍ରଣାମ କଲନାହିଁ ? ଏହା ଶୁଣି ପ୍ରହରାଜେ କହିଲେ ମୁଁ ପ୍ରଣାମ କଲେ ତୁମ୍ଭ ଦେବତା ରହିବେ ନାହିଁ । ରାଜାଙ୍କ ଅନୁରୋଧ ଯୋଗୁଁ ପ୍ରହରାଜେ ଠାକୁରଙ୍କୁ ପ୍ରଣାମ କରିବାରୁ ସତକୁସତ ଠାକୁର ଓଲଟି ପଡ଼ିଲେ । ରାଜା ଏହାର କାରଣ ଜାଣିବାକୁ ଚାହିଁବାରୁ ପ୍ରହରାଜ କହିଲେ ତୁମ ଠାକୁର ଯଥାରୀତିରେ ପ୍ରାଣପ୍ରତିଷ୍ଠା ହୋଇନାହାନ୍ତି ତେଣୁ ଏପରି ଘଟିଲା । ଏଥିରୁ ଜଣାଯାଏ ପ୍ରହରାଜ ଜଣେ ପରମ ସାଧକ ଥିଲେ । ସେ ୧୭୮୨ ଖ୍ରୀଷ୍ଟାବ୍ଦରେ ୭୫ ବର୍ଷ ବୟସରେ ସ୍ୱର୍ଗାରୋହଣ କରିଥିଲେ ।

ପ୍ରକୃତରେ ବସୁ ପ୍ରହରାଜ ଜଣେ ମହାନ୍ ଦେବୀ ସାଧକ ଥିଲେ । ସେ ନିଜର ଅହେତୁକ ସାଧନା ବଳରେ ଚାରି ଚାରିଣୀ ନାମକ ଠାକୁରାଣୀଙ୍କୁ ନିଜ ଘରେ ଝିଅରୂପେ ରଖିଥିବାର ଶୁଣାଯାଏ । ପ୍ରକୃତରେ ବସୁ ପ୍ରହରାଜଙ୍କ ଝିଅ ନଥିଲେ । ଦିନେ ବସୁ ପ୍ରହରାଜ ଗୃହରେ ଅନୁପସ୍ଥିତ ଥିବାବେଳେ

ଜଣେ କାଟରା ଠାରୁ ପ୍ରହରାଜଙ୍କ ଘରେ ଥିବା ଦୁଇ ଭଉଣୀ ତାରା ତାରିଣୀ
କାଚ ପିନ୍ଧିସାରି ବାପା ଆସିଲେ ପଇସା ଦେବେ ବୋଲି କହି ଗୃହ ମଧ୍ୟକୁ
ଚାଲିଗଲେ । କାଟରା କିଛି ସମୟ ଅପେକ୍ଷା କରିବା ପରେ ପ୍ରହରାଜଙ୍କ ସ୍ତ୍ରୀ
କାଟରାକୁ ଦେଖି କହିଲେ, "କାହାକୁ ଅପେକ୍ଷା କରିଛ ? ମୋର ତ କେହି
ଝିଅ ନାହାନ୍ତି ତୁମେ କାହାକୁ କାଚ ପିନ୍ଧାଇ ମୋତେ ପଇସା ମାଗୁଛ ।"
ପ୍ରକୃତରେ ବସୁ ପ୍ରହରାଜ ଜାଣନ୍ତି ତାଙ୍କ ଘରେ ଠାକୁରାଣୀ ଥିବାକଥା ।
କିନ୍ତୁ ତାଙ୍କ ସ୍ତ୍ରୀ ଏକଥା ଜାଣି ନଥାନ୍ତି । କିଛି ସମୟ ପରେ ପ୍ରହରାଜ
ଗୃହକୁ ଫେରିଲେ କାଟରା ଠାରୁ ଏକଥା ଶୁଣି ସେ ନିଜକୁ ଧନ୍ୟ ମଣିଲେ
ଏବଂ କାଟରାକୁ ସଙ୍ଗେ ସଙ୍ଗେ ପଇସା ଦେଇ ବିଦାୟ କଲେ । ପର
ମୁହୂର୍ତ୍ତରେ କାଟରା ସମସ୍ତ କଥା ଶୁଣି ନିଜକୁ ଧନ୍ୟମନେ କରିଥିଲା ।
ପ୍ରହରାଜ ତାରା ଓ ତାରିଣୀଙ୍କୁ କିଛିଦିନ ପରେ ପର୍ବତ ଶୀର୍ଷରେ ମନ୍ଦିର
ନିର୍ମାଣ କରାଇ ସେଠାରେ ଠାକୁରାଣୀଙ୍କୁ ପ୍ରତିଷ୍ଠା କରାଇଥିଲେ ।
ଶୁଣାଯାଏ ସେହି ମନ୍ଦିର ପ୍ରତିଷ୍ଠା ସମୟରେ ଏତେ ଲୋକ ଗହଳି ହୋଇଥିଲା
ଯେ, ଯେଉଁ ପ୍ରସାଦ ରନ୍ଧା ଯାଇଥିଲା ସେଥିରେ ପ୍ରାୟ ୨୨ ନଉତି ଜରା
ଖର୍ଚ୍ଚ ହୋଇଥିଲା । ବର୍ତ୍ତମାନ ତାରତାରିଣୀ ସାରା ଗଞ୍ଜାମ ଜିଲ୍ଲାର ପ୍ରସିଦ୍ଧ
ଦେବୀ ପୀଠରୂପେ ବିଦ୍ୟମାନ ।

ବସୁ ପ୍ରହରାଜଙ୍କ ବଂଶ ପରମ୍ପରା ସାଧକ ଥିବାର ପରିଚୟ ମିଳେ ।
ପ୍ରହରାଜଙ୍କ ଦଦେଇ ପୁଅ ଭାଇ ପରମାନନ୍ଦ ମହାପାତ୍ର ଆଠଗଡ଼ ରାଜାଙ୍କ
ଦେଓ୍ୱାନ ରୂପେ କାର୍ଯ୍ୟ କରୁଥାନ୍ତି । ସେ ରାଜକାର୍ଯ୍ୟ ପରିଚାଳନା କଲେ
ମଧ୍ୟ ରାଜ ଇଷ୍ଟଦେବୀ କନକ ଦୁର୍ଗାଙ୍କ ପରମ ସାଧକ ଥିଲେ । ସେ ସାଧନା
ବଳରେ ଦେବୀଙ୍କୁ ବଶ କରାଇ ପାରୁଥିଲେ । ପ୍ରତିଦିନ ଅର୍ଦ୍ଧରାତ୍ରରେ
କନକ ଦୁର୍ଗାଙ୍କ ପୂଜା ଉପାସନା ଶେଷରେ ଦେଓ୍ୱାନ ପରମାନନ୍ଦ
ଯେତେବେଳେ ଗୃହକୁ ଫେରନ୍ତି ସେତେବେଳେ ମା' କନକଦୁର୍ଗା ନାରୀ
ରୂପରେ ତାଙ୍କ ସହିତ ଆସି ତାଙ୍କୁ ଗୃହରେ ଛାଡ଼ିଦେଇ ମନ୍ଦିରକୁ ଫେରନ୍ତି ।
ଏପରି ଦୃଶ୍ୟ ଦେଖି ଦିନେ ଅନ୍ୟଜଣେ ଚୋଣ କର୍ମଚାରୀ ରାଜାଙ୍କୁ କହିଲେ
"ଛାମୁଁ ! ପ୍ରତିଦିନ ରାତ୍ରରେ ଦେଓ୍ୱାନ ମହାରାଣୀଙ୍କୁ ସଙ୍ଗରେ ନେଇ
ତାଙ୍କ ଗୃହକୁ ଯାଉଛନ୍ତି ।" ରାଜା ଏକଥା ଶୁଣି ଗୁପ୍ତରେ ଲୋକଙ୍କୁ ଜଗାଇ

ସେନେ ସେହି ସୁନ୍ଦରୀ ସ୍ତ୍ରୀ ପିନ୍ଧିଥିବା ଲୁଗାର ପଣତ କାଟି ଆଣିବାକୁ ଆଦେଶ ଦେଲେ । ରାଜାଙ୍କ ଆଦେଶ ପ୍ରକାରେ ଜଗୁଆଳମାନେ ସେହି ସୁନ୍ଦରୀ ସ୍ତ୍ରୀଙ୍କ ପିନ୍ଧା ଲୁଗା ପଣତରୁ ଅଳ୍ପ କାଟିଆଣି ରାଜାଙ୍କ ନିକଟରେ ଦେଲେ । ରାଜା ପ୍ରତ୍ୟକ୍ଷରେ ପରୀକ୍ଷା କରି ଦେଖିଲେ ଯେ କଟାଯାଇଥିବା ଲୁଗା ପଣତ ରାଣୀଙ୍କର ନୁହେଁ । ତାହା ହେଉଛି କନକ ଦୁର୍ଗାଙ୍କ କଟା ପଣତ । ଏହା ଦେଖି ରାଜା ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ ।

ପୁନଶ୍ଚ ସେହି ପଠାଣ ରାଜକର୍ମଚାରୀ ଦେଓ୍ୱାନ ମହାପାତ୍ରଙ୍କ ବିରୁଦ୍ଧରେ ବିଭିନ୍ନ ମିଥ୍ୟା ଅଭିଯୋଗ, ଦୁର୍ନୀତି ପରାୟଣ, ମଦ୍ୟପ ଓ ବେଶ୍ୟାସକ୍ତର ରୂପଦେଇ ରାଜାଙ୍କ ମନକୁ ବିଚଳିତ କରିଦେଲା । ଏହି କଥା ଶୁଣି କ୍ଷଣେ ରାଗିଯାଇ ରାଜା ଦେଓ୍ୱାନଙ୍କୁ ମୃତ୍ୟୁଦଣ୍ଡରେ ଦଣ୍ଡିତ କରିଥିଲେ । ସେହି ଦିନ ରାତ୍ରରେ ପରମାନନ୍ଦ ମହାପାତ୍ରଙ୍କ ସ୍ତ୍ରୀଙ୍କୁ କନକଦୁର୍ଗା ସ୍ୱପ୍ନରେ ଜଣାଇଲେ ଯେ ତୁମ ସ୍ୱାମୀଙ୍କୁ ଆଠଗଡ଼ ରଜାଙ୍କ ଦ୍ୱାରା ମୃତ୍ୟୁଦଣ୍ଡ ଦିଆଗଲା । ହଠାତ୍ ନିଦ୍ରାରୁ ଉଠି ପରମାନନ୍ଦଙ୍କ ସ୍ତ୍ରୀ ବିକଳରେ କାନ୍ଦିବାରେ ଲଗିଲେ । ଦେଖିଲେ ଯେ ସେ ପିନ୍ଧିଥିବା କାଚ ଚୂଡ଼ିଗୁଡ଼ିକ ମଉଳି ଯାଇଛି । ସେ ସଙ୍ଗେ ସଙ୍ଗେ ନିଜକୁ ପ୍ରସ୍ତୁତ କରି ଭୋରରୁ ଆଠଗଡ଼ ଅଭିମୁଖେ ବାହାରିଲେ । ଆଠଗଡ଼ ପହଞ୍ଚି ରାଜାଙ୍କୁ ତାଙ୍କ ସ୍ୱାମୀଙ୍କ କଥା ପଚାରିଲେ । ଏହାର ଉତ୍ତରରେ ରାଜା କହିଲେ ଯେ ବଣକୁ ଯାଇ ଆଉ ଫେରିନାହାନ୍ତି । ସଙ୍ଗେ ସଙ୍ଗେ ସତ୍ୟକଥା ପ୍ରକାଶ ପାଇଲା । ସତୀ ସ୍ତ୍ରୀଙ୍କ ଆଗରେ ରାଜା ମୁଣ୍ଡ ନୁଆଁଇଲେ । ରାଜା ପରମାନନ୍ଦ ମହାପାତ୍ରଙ୍କ ମରଶରୀରକୁ ତାଙ୍କ ସ୍ତ୍ରୀଙ୍କ ହସ୍ତରେ ଅର୍ପଣ କଲେ । କ୍ରୋଧରେ ସତୀ ସ୍ତ୍ରୀ ସ୍ୱାମୀଙ୍କ ମୃତଦେହ ସହ ନିଜ ଗ୍ରାମକୁ ଗମନ କରିବା ପୂର୍ବରୁ କହିଥିଲେ, "ମୁଁ ଯଦି ପ୍ରକୃତରେ ସତୀ ସ୍ତ୍ରୀ ତେବେ ଆଠଗଡ଼ର ଆଠପାଞ୍ଚ ପର୍ଯ୍ୟନ୍ତ ଲୋପ ପାଇବ ଏବଂ ମୋ ଶାଢ଼ୀର ଧଡ଼ି ଓ ଫୁଲମାନଙ୍କୁ ଅଗ୍ନି ଦେବତା ସ୍ପର୍ଶ କରିପାରିବେ ନାହିଁ । ଅଦ୍ୟାବଧି ସେହି ପାଟଶାଢ଼ୀର ଧଡ଼ି ଓ ଫୁଲମାଳ ଆଠଗଡ଼ ରାଜାଙ୍କ ଦରବାରରେ ସୁରକ୍ଷିତ ରହିଥିଲା । କିନ୍ତୁ ଦୁର୍ଗଟି ନଷ୍ଟ ହେବାରୁ ତାହା ଆଉ ଦେଖିବାକୁ ମିଳୁନାହିଁ । ପରେ ପରମାନନ୍ଦଙ୍କ ସାନଭାଇ ଯେ କି ରାଜାଙ୍କ ଦେଓ୍ୱା ରୂପେ ନିଯୁକ୍ତ ହୋଇଥିଲେ ସେ କୌଶଳ କ୍ରମେ ପଠାଣ ଦେଓ୍ୱାନକୁ

ଅରଣ୍ୟକୁ ଡ଼ାକନେଇ ଗୋଟିଏ ଗଛ କୋରଡ଼ରେ ରଖାଇ ପଟା ବାଡ଼େଇ ତାଙ୍କୁ ସେଠାରେ କବର କରି ଋଷିଙ୍କ ପ୍ରତିଶୋଧ ନେଇଥିଲେ ।

ବସୁ ପ୍ରହରାଜଙ୍କ ତର୍କ ପଞ୍ଚାନନ ନାମରେ ଗୋଟିଏ ପୁଅଥିଲେ । ସେ ମଧ୍ୟ ପିତାଙ୍କପରି ଜ୍ଞାନୀ ଓ ଗୁଣବାନ ଥିଲେ । ଥରେ ପୁରୀ ଗଜପତିଙ୍କ ଦରବାରରେ ଜଣେ ବିଦେଶୀ ପଣ୍ଡିତଙ୍କର ଗୋଟିଏ ପ୍ରଶ୍ନର ଉତ୍ତର କୌଣସି ପଣ୍ଡିତ ଦେବାକୁ ସକ୍ଷମ ହୋଇ ନଥିଲେ । କିନ୍ତୁ ତର୍କ ପଞ୍ଚାନନ ସେହି ପ୍ରଶ୍ନର ଉତ୍ତର ଦେଇ ପଣ୍ଡିତ ସଭା ମଧ୍ୟରେ ଗୋଟିଏ ହିଡ଼ ସୃଷ୍ଟି କରି ଦେଇଥିଲେ । ତର୍କ ପଞ୍ଚାନନଙ୍କୁ ପୁରୀ ଗଜପତି କୁଣ୍ଢାଇ ପକାଇ କହିଲେ ଯଦି ମୋ ର ଏପରି ଗୋଟିଏ ପୁଅ ଥାଆନ୍ତା ତେବେ ମୁଁ ନିଜକୁ ଧନ୍ୟ ମନେ କରନ୍ତି । ଏହାଦ୍ୱାରା ତର୍କ ପଞ୍ଚାନନଙ୍କ ଉପରେ ରାଜଦୃଷ୍ଟି ପଡ଼ିଲା । ଫଳରେ ସେ ଭୀଷଣ ରୋଗରେ ଆକ୍ରାନ୍ତ ହୋଇ ମାତ୍ର ପଚିଶି ବର୍ଷ ବୟସରେ ପ୍ରାଣତ୍ୟାଗ କଲେ । ତାଙ୍କ ସ୍ତ୍ରୀ ଦେଖିଲେ ଯେ ତାଙ୍କ ହସ୍ତର ଚୂଡ଼ିଗୁଡ଼ିକ ଆପେ ଆପେ ହିଡ଼ିପଡ଼ିଲା । ହାତରେ କେବଳ କଳା ଚୂଡ଼ିଗୁଡ଼ିକ ରହିଥିଲା । ତେଣୁ ସେ କହିଥିଲେ ମୋ ବଂଶର ବିଧବା ସ୍ତ୍ରୀମାନେ ଆଜଠାରୁ କଳାଚୂଡ଼ି ପିନ୍ଧିବେ । ସେହିଦିନ ଠାରୁ ଆଜଯାଏଁ ତାଙ୍କ ବଂଶର ବିଧବା ସ୍ତ୍ରୀମାନେ କଳାଚୂଡ଼ି ପରିଧାନ କରୁଛନ୍ତି ।

## ଶ୍ରୀ ଶ୍ରୀ ନୃସିଂହ ମଠ ଓରଫ୍ ଫଳହାରୀ ମଠ—

୧୮୫୪ ଖ୍ରୀଷ୍ଟାବ୍ଦ ପୂର୍ବରୁ ତତ୍କାଳୀନ ଅଷ୍ଟଦୁର୍ଗ ରାଜାଙ୍କ ଅଙ୍ଗଲଗି ଦାସୀ 'ହିରା' ବର୍ତ୍ତମାନର ଶ୍ରୀ ନୃସିଂହ ମଠରେ ପାଞ୍ଚଫୁଟ ଉଚ୍ଚରେ ଏକ କୁଡ଼ିଆ ନିର୍ମାଣ କରାଇ ସେଥିରେ ଶ୍ରୀ କୁଞ୍ଜବିହାରୀ ସ୍ୱାମୀ ଠାକୁରଙ୍କୁ ପ୍ରତିଷ୍ଠିତ କରାଇ ପୂଜାର୍ଚ୍ଚନା କରୁଥିଲେ । ଏଥିରେ ପ୍ରୀତ ହୋଇ ରାଜା ସାହେବ ଠାକୁରଙ୍କ ଅମୃତ ମଣୋହି ନିମନ୍ତେ କଲୁଣ୍ଡା ମୌଜାର ବାର ଏକର ଜମି ଖଞ୍ଜି ଦେଇଥିଲେ । ଏଣୁ ନୃସିଂହ ମଠର ପ୍ରଥମ ଅଧିଷ୍ଠିତ ଠାକୁର ହେଉଛନ୍ତି ଶ୍ରୀ ଶ୍ରୀ କୁଞ୍ଜବିହାରୀ ।

ଏଥିପୂର୍ବରୁ ୧୬୯୩ ଖ୍ରୀଷ୍ଟାବ୍ଦରେ ବର୍ତ୍ତମାନର ବାହାର ସାଗର ତଥା ଶ୍ରୀ ଜଗନ୍ନାଥ ସ୍ୱାମୀ ବିଜେ ଆଠଗଡ଼, ଠାକୁରଙ୍କ ଚନ୍ଦନଯାତ୍ରା ଅନୁଷ୍ଠିତ ଚନ୍ଦନ ସାଗରର ପଶ୍ଚିମ ପାର୍ଶ୍ୱରେ ଶ୍ରୀ ନୀଳକଣ୍ଠେଶ୍ୱର ମନ୍ଦିର ପ୍ରତିଷ୍ଠିତ ହୋଇଥିଲା । ସେହି ନୀଳକଣ୍ଠେଶ୍ୱର ମନ୍ଦିରରେ ସର୍ବଦା ପର୍ଯ୍ୟଟକ ସାଧୁ ସନ୍ଥମାନେ ଆଶ୍ରୟ ନେଉଥିଲେ । ଶ୍ରୀ ନୀଳକଣ୍ଠେଶ୍ୱର ମନ୍ଦିରରେ ଆଶ୍ରୟ ନେଉଥିବା ସାଧୁ ସନ୍ଥମାନଙ୍କୁ କୁଞ୍ଜବିହାରୀ ମଠ ତରଫରୁ ଦୁଗ୍‌ଧ, ଦହି ଓ ଫଳ ପ୍ରଭୃତି ଯୋଗାଇ ଦିଆଯାଉଥିଲା ।

'ଝୁଲ' ବାସୀଙ୍କ ଦ୍ୱାରା ପ୍ରତିଷ୍ଠିତ କୁଞ୍ଜବିହାରୀ ମଠ ଝରାଙ୍କ ମୃତ୍ୟୁ ପରେ ଉତ୍ତର ପ୍ରଦେଶ ନିବାସୀ ଜନୈକ ଜଙ୍ଗଲରକ୍ଷୀଙ୍କ ଧର୍ମପତ୍ନୀ (ସ୍ୱର୍ଗତ) ଏହି ମଠର ଦାୟିତ୍ୱ ବହନ କରିଥିଲେ । ସେ ଉଭୟ ହିନ୍ଦି ଓ ଓଡ଼ିଆଭାଷା କହିପାରୁଥିଲେ । ତେଣୁ ବିଭିନ୍ନ ସ୍ଥାନରୁ ଆଗତ ସାଧୁ ସନ୍ଥମାନେ ଅବଶ୍ୟ ଶ୍ରୀ ନୀଳକଣ୍ଠେଶ୍ୱର ମନ୍ଦିରରେ ଆଶ୍ରୟ ନେଉଥିଲେ ହେଁ ଶ୍ରୀକୁଞ୍ଜବିହାରୀ ମଠ ସହିତ ସୁସମ୍ପର୍କ ରଖୁଥିଲେ । କାରଣ କୁଞ୍ଜବିହାରୀ ମଠରୁ ସେମାନଙ୍କ ନିମନ୍ତେ ଦୁଗ୍‌ଧ, ଫଳ ଓ ଖାଦ୍ୟପେୟ ଯୋଗାଇ ଦିଆଯାଉଥିଲା । ଏଣେ ଶ୍ରୀ କୁଞ୍ଜବିହାରୀ ମଠର ଧର୍ମପ୍ରାଣା ସ୍ତ୍ରୀ ସାଧୁ ସନ୍ଥମାନଙ୍କ ପାଇଁ ପ୍ରତ୍ୟେକଦିନ ବିଭିନ୍ନ ଫଳ ଓ ଦୁଗ୍‌ଧ ଯଥା ସମୟରେ ନେଇ ଯୋଗାଇ ଦେଉଥାନ୍ତି ।

୧୮୬୫ ଖ୍ରୀଷ୍ଟାବ୍ଦ ଆଠଗଡ଼ ତଥା ଏହାର ଆଖପାଖ ଗ୍ରାମବାସୀଙ୍କ ପାଇଁ ଏକ ଦୁର୍ଦ୍ଦିନ ହୋଇ ପଡିଥିଲା । କାରଣ ପ୍ରତ୍ୟେକ ଗ୍ରାମରେ ଭୟଙ୍କର ହଇଜା ଲାଗି ରହିଲା । ପ୍ରତିଦିନ ଶତ ଶତ ଲୋକ ମୃତ୍ୟୁବରଣ କଲେ । ଏପରିକି ଶବ ଉଠାଇ ଶ୍ମଶାନରେ ଦାହ କରିବା ପାଇଁ ମଧ୍ୟ ଲୋକେ ଭୟ କରୁଥିଲେ । ଶ୍ରୀ କୁଞ୍ଜବିହାରୀ ମଠରେ ରହୁଥିବା ଧର୍ମପ୍ରାଣା ମହିଳା ଗ୍ରାମରେ ଭୟାବହ ହଇଜା ଲାଗିଥିବା କଥା ଶ୍ରୀ ନୀଳକଣ୍ଠେଶ୍ୱର ମନ୍ଦିରରେ ରହିଥିବା ଦୁଇଜଣ ସାଧୁଙ୍କୁ ଜଣାଇଲେ । ସାଧୁମାନେ ଏହିକଥା ଶୁଣି ଉକ୍ତ ମହିଳାଙ୍କୁ କହିଲେ ତୁମେ ଯାଇ ଗ୍ରାମବାସୀଙ୍କୁ ଜଣାଅ, ସେମାନେ ଆମ୍ଭର ଇଷ୍ଟଦେବ ଶ୍ରୀ ଲକ୍ଷ୍ମୀନୃସିଂହ ବିଗ୍ରହଙ୍କୁ ଗ୍ରାମ ପରିକ୍ରମା କରାଇଲେ ଗ୍ରାମରେ ଲାଗିରହି-ଥିବା ଭୟାବହ ହଇଜା ବ୍ୟାଧି ସଙ୍ଗେ ସଙ୍ଗେ ଦୂରେଇ ଯିବ ଏବଂ

ଗ୍ରାମବାସୀ ଆଶ୍ୱସ୍ତି ଲାଭ କରିବେ । ଏହା ଶୁଣି ଉକ୍ତ ସଖିତ ବୃଦ୍ଧା ସେଠାରୁ ଫେରିଆସି ଗ୍ରାମବାସୀଙ୍କ ଆଗରେ ଜଣାଇଲେ । ପରଦିନ ଗ୍ରାମର ଧର୍ମପ୍ରାଣ ଲୋକେ ଘଣ୍ଟ, ମୃଦଙ୍ଗ, ଶଙ୍ଖ ଓ ବାଦ୍ୟବାଜଣା ସହ ସେହି ସାଧୁମାନଙ୍କୁ ଆମନ୍ତ୍ରଣକରି ସେମାନଙ୍କ ସହ ସେମାନଙ୍କ ଇଷ୍ଟଦେବ ଶ୍ରୀ ଲକ୍ଷ୍ମୀନୃସିଂହ ବିଗ୍ରହଙ୍କୁ ସାରା ଗ୍ରାମରେ ପରିକ୍ରମା କରାଇଲେ । ଠାକୁର ପରିକ୍ରମା କଲାପରେ ତତ୍‌କ୍ଷଣାତ ଗ୍ରାମରୁ ହଇଜା ଦୂର ହୋଇଗଲା । ଏପରି ଦେଖି ଲୋକମାନେ ବିସ୍ମିତ ହୋଇଗଲେ । ସେହି ସାଧୁ ଦୁଇଜଣଙ୍କୁ ଗ୍ରାମରେ ସ୍ଥାୟୀଭାବେ ରହିବା ପାଇଁ ଅନୁରୋଧ କଲେ । ସାଧୁମାନେ ଲୋକଙ୍କ ଅନୁରୋଧର କୌଣସି ଉତ୍ତର ନଦେଇ ତା ପରଦିନ ରାତ୍ରିରୁ ଶ୍ରୀକ୍ଷେତ୍ର ଯିବାପାଇଁ ବାହାରି ପଡ଼ିଲେ । ସେତେବେଳେ ଶ୍ରୀକ୍ଷେତ୍ର ଯିବାକୁ ଗାଡ଼ିର ବିଶେଷ ସୁବିଧା ନଥିବାରୁ ଚିଲିକା ମଧ୍ୟଦେଇ ନୌକାରେ ଯିବାକୁ ପଡ଼ୁଥିଲା । ସାଧୁମାନେ ଶ୍ରୀ ନୀଳକଣ୍ଠେଶ୍ୱର ମନ୍ଦିରରେ ନଥିବା ଜାଣି ଗ୍ରାମର ଲୋକମାନେ ଚଉଦିଗରେ ଖୋଜିବାକୁ ବାହାରି ପଡ଼ିଲେ । ଯେଉଁମାନେ ଚିଲିକା ଅଭିମୁଖେ ଯାଇଥିଲେ ସେମାନେ ସାଧୁମାନଙ୍କୁ ନୌକାରେ ବସିଥିବାର ଦେଖି ସେମାନଙ୍କୁ ଆଠଗଡ଼ ଫେରି ଆସିବାକୁ ଅନୁରୋଧ କରି ନାନାପ୍ରକାର ପ୍ରଲୋଭନ ଦେଖାଇଥିଲେ । ତାହାଶୁଣି ସାଧୁମାନେ ବିଚଳିତ ନହୋଇ ସଙ୍ଗରେ ଥିବା ଶ୍ରୀ ଲକ୍ଷ୍ମୀନୃସିଂହ ବିଗ୍ରହଙ୍କୁ ଚିଲିକା ଜଳରେ ପକାଇଦେଲେ । ଏପରି ଦୃଶ୍ୟଦେଖି ଆଠଗଡ଼ର ଲୋକେ ସେହି ବିଗ୍ରହଙ୍କୁ ଜଳମଧ୍ୟରୁ ବହୁ କଷ୍ଟରେ ସଂଗ୍ରହକରି ଗ୍ରାମକୁ ଆଣି ଶ୍ରୀ ଜଗନ୍ନାଥଙ୍କ ମନ୍ଦିର ମଧ୍ୟରେ ବିଜେ କରାଇଲେ ।

କିଛିଦିନ ବିତିଗଲା ଗ୍ରାମବାସୀମାନେ ଶ୍ରୀ ନୀଳକଣ୍ଠେଶ୍ୱର ମନ୍ଦିରରେ ଆଶ୍ରୟ ନେଇଥିବା ଅନ୍ୟଜଣେ ସାଧୁଙ୍କୁ ଅନୁରୋଧ କରି ସାଧୁଙ୍କ କହିବା ଅନୁସାରେ ଶ୍ରୀ ଲକ୍ଷ୍ମୀନୃସିଂହ ବିଗ୍ରହଙ୍କୁ ଶ୍ରୀ ଜଗନ୍ନାଥ ମନ୍ଦିରରୁ ଆଣି ଶ୍ରୀ କୁଞ୍ଜବିହାରୀ ମଠରେ ପ୍ରତିଷ୍ଠିତ କରାଇଲେ । ଏହି ସାଧୁଙ୍କ ନାମଥିଲା ଶ୍ରୀ ଜଗନ୍ନାଥ ଦାଶ ; ଏହି ସାଧୁ କେବଳ ଫଳ ଆହାର କରୁଥିଲେ । ସାଧୁଙ୍କ ଫଳ ଆହାରକୁ ଲକ୍ଷକରି ଲୋକେ ସେହି ମଠକୁ 'ଫଳାହାରୀ ମଠ' ନାମରେ ନାମିତ କରିଥିଲେ । ସେହିଦିନ ଠାରୁ ଫଳାହାରୀ ମଠର ଶ୍ରୀ ଲକ୍ଷ୍ମୀ

ନୃସିଂହ ବିଗ୍ରହଙ୍କୁ ଗ୍ରାମର ଇଷ୍ଟଦେବତାରୂପେ ସମସ୍ତ ଗ୍ରାମବାସୀ ପୂଜା ଅର୍ଚ୍ଚନା କରି ଆସୁଛନ୍ତି ।

ଫଳହାରୀଙ୍କ ବାକ୍‌ସିଦ୍ଧି, ସାଧନା ଓ ଭକ୍ତି ସାରା ରାଜ୍ୟରେ ପ୍ରଚାରିତ ହୋଇଗଲା । ରାଜା ଓ ବଦାନ୍ୟ ବ୍ୟକ୍ତିମାନେ ଶ୍ରୀ ଲକ୍ଷ୍ମୀନୃସିଂହ ଠାକୁରଙ୍କ ଅମୃତ ମଣୋହି ପାଇଁ ଜମି ଦାନ କରିଥିଲେ । ଫଳହାରୀଙ୍କ ଉଦ୍ୟମରେ ଶ୍ରୀ କୁଞ୍ଜବିହାରୀ ପୀଠରେ ଶ୍ରୀ ନୃସିଂହସ୍ୱାମୀ ମନ୍ଦିର, ଶ୍ରୀ ନୀଳକଣ୍ଠେଶ୍ୱରଙ୍କ ମନ୍ଦିର ପ୍ରାଙ୍ଗଣରେ ମହାବୀର ହନୁମାନଙ୍କ ମନ୍ଦିର ତତ୍‌କାଳୀନ ରଜା ସନ୍ଦେବଙ୍କ ସହାୟତାରେ ଟେଂଡାଇବଣୀ ତଥା କଟକସୂର୍ଯ୍ୟ ନଗରସ୍ଥିତ ନାରାୟଣପୁର ଶାସନର ରାଧାରମଣସ୍ୱାମୀ ମଠ ନିର୍ମିତ ହୋଇଥିଲା । ଏଣେ ରାଜମହାଦେଈଙ୍କ ଦ୍ୱାରା ଗୋପୀନାଥ, କ୍ଷୀରଚୋରା ଗୋପାଳ ମୂର୍ତ୍ତି ସ୍ଥାପିତ ହୋଇଥିଲା ।

ଫଳହାରୀଙ୍କ ପରେ ସାଧୁ ସୀତାରାମ ଦାସ ମହନ୍ତ ଏହି ମଠର ପରିଚାଳନା ଦାୟିତ୍ୱ ବହନ କରିଥିଲେ । ଏହାଙ୍କ ସମୟରେ ମଠର ସମସ୍ତ ଭୂସମ୍ପତ୍ତି ବନ୍ଧକ ହୋଇଥିଲା । ସୀତାରାମ ଦାସ ମହନ୍ତଙ୍କ ପରେ ତାଙ୍କର ଯୋଗ୍ୟ ଶିଷ୍ୟ ଲଛମନ ଦାସ ମହନ୍ତ ମହାରାଜ ମଠର ପରିଚାଳନା ଦାୟିତ୍ୱ ବହନକରି ଗୁରୁଙ୍କ ଦ୍ୱାରା ବନ୍ଧକଥିବା ମଠର ଭୂସମ୍ପତ୍ତିକୁ ମୁକ୍ତ କରିଥିଲେ । ଲଛମନ ଦାସ ମହନ୍ତ ମହାରାଜ ତାଙ୍କର ନାବାଳକ ଶିଷ୍ୟ ସରଜୁ ଦାସଙ୍କୁ ଗାଦି ପ୍ରଦାନ କରି ଦେହ ତ୍ୟାଗ କରିଥିଲେ ।

୧୯୩୯ ଖ୍ରୀଷ୍ଟାବ୍ଦରେ ସରଜୁ ଦାସ ମହନ୍ତ ତୀର୍ଥାଟନରେ ଯାଇ ଆଉ ଫେରି ନଥିଲେ । ତେଣୁ ଏହି ମଠକୁ ୧୯୩୯ ଖ୍ରୀଷ୍ଟାବ୍ଦ ଠାରୁ ଓଡ଼ିଶା ହିନ୍ଦୁ ଧାର୍ମିକ ଦେବୋତ୍ତର ବିଭାଗ (O. H. R. E.) ଆଇନାନୁଯାୟୀ ନିଜ ଅଧୀନକୁ ନେଇ ପରିଚାଳନା କରି ଆସୁଛନ୍ତି । ଶ୍ରୀ ପଦ୍ମନାଭ ମହାପାତ୍ର ଓ ପରେ ପରେ ଶ୍ରୀ ସୁଶୀଲ କୁମାର ହୋତା ଏହାର ପରିଚାଳକ ରୂପେ ନିଯୁକ୍ତି ହୋଇଛନ୍ତି ।

## ମାଁ ସିଂହାସନୀ ପୀଠର ମାହାତ୍ମ୍ୟ—

ଅଷ୍ଟଦୁର୍ଗ ବା ଆଠଗଡ଼ର ଉତ୍ତର ଦଗରେ ମାଁ ସିଂହାସନୀଙ୍କ ମନ୍ଦିର ଅବସ୍ଥିତ । ପାଣ୍ଡିଶପଡ଼ା ନିକଟବର୍ତ୍ତୀ କଣିପଡ଼ା ହେଉଛି ମାଁଙ୍କ ପୀଠ । ମାଁଙ୍କ ପୀଠକୁ ଯିବାକୁ ହେଲେ ଘଞ୍ଚ ଜଙ୍ଗଲ ପଥଦେଇ ଯିବାକୁ ପଡ଼େ । ବିଭିନ୍ନ ପ୍ରକାର ହିଂସ୍ରଜନ୍ତୁ ପରିପୂର୍ଣ୍ଣ ଅଗମ୍ୟ ପଥରେ ମାଁଙ୍କ ନାମ ଧରିଲେ କୌଣସି ପ୍ରକାର ଭୟର ଆଶଙ୍କା ରହେନାହିଁ ।

ଥରେ କଳାପାହାଡ଼ ହିନ୍ଦୁଧର୍ମକୁ ନଷ୍ଟ କରିଦେବା ନିମନ୍ତେ ପ୍ରସ୍ତୁତ ହୋଇ ହିନ୍ଦୁ ରାଜାମାନଙ୍କ ବିରୁଦ୍ଧରେ ସଂଗ୍ରାମ ଚଳାଇ ହିନ୍ଦୁ ଦେବାଦେବୀ ମନ୍ଦିର ସମ୍ପୂହକୁ ଧ୍ୱଂସ କରିବା ପାଇଁ ବାହାରି ପଡ଼ିଲା । ତତ୍କାଳୀନ ପୁରୀ ଗଜପତି ରାମଚନ୍ଦ୍ର ଦେବ କଳାପାହାଡ଼ ସହିତ ଯୁଦ୍ଧରେ ପରାସ୍ତ ହୋଇ କୌଶଳକ୍ରମେ ରାଜ୍ୟ ତ୍ୟାଗକରି ଅରଣ୍ୟକୁ ଚାଲିଗଲେ । ଶତ୍ରୁ ସୈନ୍ୟମାନେ ଦୁର୍ଗ ଲୁଣ୍ଠନ କଲେ । ଶେଷରେ ରାଜା ରାମଚନ୍ଦ୍ର ଦେବ ନିରୂପାୟ ହୋଇ ଆରାଧ୍ୟ ଦେବତା ଶ୍ରୀ ଜଗନ୍ନାଥଙ୍କୁ ହୃଦୟରେ ଚିନ୍ତାକଲେ । ରାଜାଙ୍କ କରୁଣଭକ୍ତି ଆର୍ତ୍ତିରେ ଜଗନ୍ନାଥ ମହାପ୍ରଭୁ ରାଜାଙ୍କୁ ସ୍ୱପ୍ନାଦେଶରେ କହିଥିଲେ ଆଠଗଡ଼ ଯିବାପାଇଁ । ପ୍ରଭୁଙ୍କ ଆଦେଶ ପ୍ରକାରେ ଗଜପତି ରାମଚନ୍ଦ୍ର ଦେବ କାଂପୁର ଦେଇ ଆଠଗଡରେ ପହଞ୍ଚିଥିଲେ ।

•

ପୁରୀ ଗଜପତିଙ୍କ ଆଗମନର ବାର୍ତ୍ତାଶୁଣି ଆଠଗଡ଼ ରାଜା ଜଗନ୍ନାଥ ହରିଚନ୍ଦନ ଜଗଦ୍ଦେବ ତାଙ୍କୁ ଅରଣ୍ୟରୁ ପାଛୋଟି ଆଣିଥିଲେ ଓ ଗଜପତିଙ୍କ ଠାରୁ ସମସ୍ତ କଥା ଶୁଣିବା ପରେ ନିଜ ରାଜ୍ୟ ଅନ୍ତର୍ଗତ ପାଣ୍ଡିଶପଡ଼ା ମାଳ, ପନ୍ତଆମା ସର୍କଲର ଦମ୍‌ଦମା ନାମକ ଗୋଟିଏ ସ୍ଥାନରେ ଭୂମିତଳେ ପ୍ରାସାଦ ନିର୍ମାଣ କରାଇ ତାଙ୍କୁ ସେଠାରେ ଗୋପନରେ ରଖାଇଥିଲେ । ଇତି ମଧ୍ୟରେ ଶତ୍ରୁ ସୈନ୍ୟମାନେ ଗଜପତିଙ୍କ ପଥ ଅନୁସରଣ କରି ତାଙ୍କୁ ଖୋଜିବାରେ ଲାଗିଲେ । ଶତ୍ରୁ ସୈନ୍ୟମାନେ ପଛରେ ଅନୁସରଣ କରୁଥିବା ଜାଣି ମହାରାଜା ରାମଚନ୍ଦ୍ର ଦେବ ଭୟତ୍ରସ୍ତ ହୋଇ ମା' ଜଗତଜନନୀ ବନବାସିନୀ ଦୁର୍ଗାଙ୍କୁ ହୃଦୟରେ ସ୍ମରଣା କରିଥିଲେ । କରୁଣାମୟୀ ଜଗତ

ଜନନୀ ରାଜରାଜେଶ୍ୱରୀ ମା' ବନଦୁର୍ଗା ଭକ୍ତର କରୁଣାପନ୍ନ ବିନୟରେ ଦୟାପ୍ରଦର୍ଶନ କରି ବୃଦ୍ଧା ବେଶରେ କଳାପାହାଡ଼ ଏବଂ ତାଙ୍କ ସୈନ୍ୟଙ୍କ ଆସିବା ରାସ୍ତାରେ ଉଭାହୋଇ ସେମାନଙ୍କୁ ବିଭିନ୍ନ ପ୍ରକାର ସାନ୍ତ୍ୱନାମୂଳକ ଉପଦେଶମାନ ଦେଇଥିଲେ ଏବଂ ତତ୍ସଙ୍ଗେ ସଙ୍ଗେ କହିଥିଲେ ଯେ ସେ ଏପର୍ଯ୍ୟନ୍ତ ଏହି ରାସ୍ତା ଦେଇ କୌଣସି ଲୋକ ଯିବାର ଦେଖି ନାହାନ୍ତି । ବୃଦ୍ଧାଙ୍କ କଥାକୁ ଗୁରୁତ୍ୱ ନଦେଇ କଳାପାହାଡ଼ ସୈନ୍ୟମାନଂକ ସହ ସାରା ଜଙ୍ଗଲ ଖୋଜିଥିଲେ । ମାତ୍ର ମା'ଙ୍କ ଦୟାରୁ ମହାରାଜାଂକ କୌଣସି ସନ୍ଧାନ ନପାଇ ହତାଶ ହୋଇ ଫେରି ଯାଇଥିଲେ ।

ଯାହାର ପଥ ପ୍ରଦର୍ଶକ ସ୍ୱୟଂ ଜଗତ ଠାକୁର ଜଗନ୍ନାଥ, ଯାହାକୁ ମା'ଙ୍କ ଅପାର କରୁଣା ଭରା ଆଶ୍ରିତ ପଣତକାନି ତା'ର ବା କଏ କ'ଣ କରିପାରିବ ? ପୁରୀ ଗଜପତି ମହାରାଜା ଅତି କୁଶଳତା ପୂର୍ବକ ମା'ଙ୍କ ଦୟାରୁ ଉକ୍ତ ସ୍ଥାନରେ ଆତ୍ମଗୋପନ କରି ପାରିଲେ । ସେହିଦିନ ଠାରୁ ଗଜପତି ମହାରାଜା ସେହି ସ୍ଥାନରେ ରହି ସେହି ମା' ବନଦୁର୍ଗାଙ୍କୁ ଗୋଟିଏ କଳା ମୁଗୁନି ପଥର ମାଧ୍ୟମରେ ପୂଜାର୍ଚ୍ଚନା କରିବାକୁ ଲାଗିଲେ । ମା'ଙ୍କ କରୁଣାରୁ ପୁନଶ୍ଚ ରାଜ୍ୟ ପ୍ରାପ୍ତହେଲା ଏବଂ ରାଜ୍ୟକୁ ଫେରିଯିବା ସକାଶେ ସ୍ଥିରକଲେ । ଯିବାପୂର୍ବରୁ ତତ୍‌କାଳୀନ ଆଠଗଡ଼ ରାଜା ବୃନ୍ଦାବନ ହରିଚନ୍ଦନ ଜଗଦେବଙ୍କୁ ବିଶେଷ ଧନ୍ୟବାଦ ପ୍ରଦାନକରି ପାଣ୍ଡିରପଡ଼ା ମାଳ ଅଞ୍ଚଳର ପାଞ୍ଚକୋଶ ଆଠଗଡ଼କୁ ଶ୍ରୀ ବୃନ୍ଦାବନ ହରିଚନ୍ଦନ ଜଗଦେବଙ୍କ ସ୍ୱ ଅଧିନସ୍ଥ କରିଦେଲେ ଏବଂ ଶ୍ରୀକ୍ଷେତ୍ରକୁ ସଙ୍ଗରେ ନେଇ ଉପଯୁକ୍ତ ବନ୍ଧୁ ମର୍ଯ୍ୟାଦା ପୂର୍ବକ ପାଖରେ ବସାଇ ଆଠଗଡ଼ ଜଗଦେବଙ୍କ ଜୟଧ୍ୱନୀ ଉଚ୍ଚାରଣ କରିଥିଲେ । ବର୍ତ୍ତମାନ ସୁଦ୍ଧା ଶ୍ରୀକ୍ଷେତ୍ର ଠାକୁରଙ୍କ ପ୍ରତ୍ୟେକ ଏକାଦଶୀ ମହାଦୀପ ପ୍ରଜ୍ୱଳନ ସମୟେ, "ଶରଣ ପଞ୍ଜର ମାନ ଉଦ୍ଧାରଣ ଅଷ୍ଟଦୁର୍ଗ ହରିଚନ୍ଦନ ଜଗଦେବଙ୍କ ଜୟ" ଧ୍ୱନି ଉଚ୍ଚାରଣ କରାଯାଉଅଛି ।

ପୁରୀ ଗଜପତି ରାଜା "ମା' ବନଦୁର୍ଗା" ରୂପେ ଯେଉଁ ମୁଗୁନି ପଥରକୁ ପୂଜା କରୁଥିଲେ ତା'ର ବର୍ତ୍ତମାନ ଅବସ୍ଥିତି ଯେହି ମାଳ ଅନ୍ତର୍ଗତ

କଣ୍ଟିପଡ଼ା ଗ୍ରାମ ନିକଟସ୍ଥ ଦକ୍ଷିଣ ପାର୍ଶ୍ୱର ଗୋଟିଏ ପାହାଡ଼ ପାଦଦେଶରେ 'ସିଂହାସନୀ ପୀଠ' ନାମେ ଖ୍ୟାତ । ରାଜ ସେଠାରୁ ଚାଲିଗଲେ ମାତ୍ର ମା' ବନଦୁର୍ଗା କେବଳ ଶିଳାରୂପେ ସେଠାରେ ପଡ଼ି ରହିଥିଲେ ।

ଏପରି କିଛିଦିନ ବିତିଯିବା ପରେ ମା'ଙ୍କ କରୁଣାରୁ ସେହି କଣ୍ଟିପଡ଼ା ଗ୍ରାମର ଜଣେ ଆଦିବାସୀ ଓଡ଼ିଆ କନ୍ଧଙ୍କ ଅଭିଆଣ ଗାଈଟିଏ ଦୈନନ୍ଦିନ ଅତି ଦୁର୍ଗମ କଣ୍ଟକାକୀର୍ଣ୍ଣ ହିଂସ୍ରଜନ୍ତୁ ପରିପୂର୍ଣ୍ଣ, ସମସ୍ତ ଭୟକୁ ଖାତିର ନକରି ଉକ୍ତ ଶିଳାରୂପୀ ମା' ଜଗତ ଜନନୀ ସର୍ବବ୍ୟାଧି ନିବାରିଣୀ ବନଦୁର୍ଗାଂଙ୍କ ଉପରେ ନିଜର ସ୍ତନ ନିର୍ଗତ ଦୁଗ୍‌ଧ ପ୍ରଦାନକରି ଆସୁଥାଏ । ଏହିପରି କିଛିଦିନ ଅତିବାହିତ ହେବା ପରେ ଦିନେ ସେହି ଆଦିବାସୀଂକ ବୃଦ୍ଧା ସ୍ତ୍ରୀ କେତେଜଣ ଯୁବତୀ ଝିଅଂକ ସହ ବନ୍ୟ ସାମଗ୍ରୀ ସଂଗ୍ରହ କରିବା ନିମନ୍ତେ ବନ ମଧ୍ୟକୁ ଯାଇଥିଲେ । ବନ୍ୟ ସାମଗ୍ରୀ ସଂଗ୍ରହ କରିବା ସମୟରେ ବୃଦ୍ଧା ଜଣକ ଗାଈର ସ୍ୱତଃ ଦୁଗ୍‌ଧସ୍ରାବ କରିବା ଦୃଶ୍ୟଦେଖି ବିସ୍ମିତ ହୋଇଗଲେ । କାରଣ ଗାଈଟି କୁଆଁ କନ୍ଧ ନକରି ପଥର ଉପରେ ଦୁଗ୍‌ଧ ଧାର କପରି ବୁହାଉଛି ? କିଛି ସମୟ ନିରୀକ୍ଷଣ କରିବା ପରେ ବୃଦ୍ଧ ଜଣେକ ନିଜର ଗାଈବୋଲି ଜାଣିପାରି ଘରକୁ ଫେରିଆସି ତାଂକ ସ୍ୱାମୀଙ୍କୁ ସମସ୍ତ ଘଟଣା ଜଣାଇଲେ ।

ବୃଦ୍ଧ ସ୍ୱାମୀ ତାଙ୍କ ସ୍ତ୍ରୀଙ୍କ କଥାକୁ ଅବିଶ୍ୱାସ ମନେକରି ତା' ପରଦିନ ପ୍ରଭାତରୁ ନିତ୍ୟକର୍ମ ସାରି ଘଟଣା ସ୍ଥଳକୁ ସ୍ତ୍ରୀ କହିଥିବା ପ୍ରକାରେ ଅନୁସନ୍ଧାନ କରିବା ପାଇଁ ବାହାରିଲେ । ପୂର୍ବଦିନମାନଙ୍କ ଭଳି ସେହିଦିନ ମଧ୍ୟ ସେହି ଗାଈଟି ଠିକ୍ ସମୟରେ ଆସି ଶିଳାରୂପିଣୀ ମା' ଜଗଦମ୍ବାଂକ ଉପରେ ସ୍ୱସ୍ତନ ଦୁଗ୍‌ଧ ସ୍ରାବ କଲା । ଏହି ଦୃଶ୍ୟ ଦେଖି ବୃଦ୍ଧ ଜଣକ ବିସ୍ମିତ ହୋଇ ନିଜ ଗ୍ରାମ ନିକଟସ୍ଥ ପାଣ୍ଡିରିପଡ଼ା ଗ୍ରାମର ଜମିଦାର ଏବଂ କିଛି ଗ୍ରାମବାସୀଙ୍କୁ ଡାକିନେଇ ସେହି ଦୃଶ୍ୟ ଦେଖାଇଲା । ସମସ୍ତ ଘଟଣା ଗ୍ରାମବାସୀ ଏବଂ ଜମିଦାର ଦେଖି ସେଠାରେ ସାଷ୍ଟାଙ୍ଗ ପ୍ରଣାମ କରି ବୃଦ୍ଧ ଆଦିବାସୀଙ୍କୁ କହିଲେ, ଏଠାରେ ନିଶ୍ଚୟ କୌଣସି ଦେବ କମ୍ବା ଦେବୀ ପ୍ରକଟ ହୋଇଛନ୍ତି । ନଚେତ୍ ଏହି ଅଭିଆଣ ଗାଈ ଦୁଗ୍‌ଧ ଢାଳନ୍ତା

କପର ? ଏଥିଯୋଗୁଁ ଆଜଠାରୁ ଏହି ଶିଳାଙ୍କୁ ପୂଜାର୍ଚ୍ଚନା କରାଯାଉ । ବୃଦ୍ଧ ଆଦିବାସୀ ଜଣକ ଜମିଦାର ବାବୁଙ୍କୁ କହିଲେ, "କେଉଁ ଦେବତା ବା ଦେବୀ ଏଠାରେ ଜାତ ହୋଇଛନ୍ତି ଆମ୍ଭେତ ଜାଣିନାହୁଁ, କାହା ନାମରେ ପୂଜାର୍ଚ୍ଚନା କରିବା ?" ଜମିଦାର ବାବୁ ଆଦିବାସୀ ବୃଦ୍ଧଙ୍କୁ କହିଲେ ତୁମେ କେବଳ ପୂଜାକର ଅଳ୍ପଦିନ ମଧ୍ୟରେ ସମସ୍ତ ଘଟଣା ଜଣାପଡ଼ିବ । ସେହି ଦିନଠାରୁ ଜଙ୍ଗଲ ମଧ୍ୟସ୍ଥ ଉକ୍ତ ଶିଳାକୁ ବୃଦ୍ଧ ଜଣକ ପୂଜା କରିବାରେ ଲାଗିଲେ ।

ସୁଧି ବୃନ୍ଦ ! ବର୍ତ୍ତମାନ ଯେଉଁ ପୂଜକମାନେ ମାଁଙ୍କ ପୂଜାର୍ଚ୍ଚନା କରୁଛନ୍ତି ସେମାନେ ହେଉଛନ୍ତି ସେହି ଓଡ଼ିଆ କନ୍ଧ ଆଦିବାସୀ ବୃଦ୍ଧଙ୍କ ବଂଶଧର । କ୍ରମେ କ୍ରମେ ସେହି ପୀଠକୁ ଯିବାପାଇଁ ପାଦଚଲା ରାସ୍ତା ଖୋଳାଗଲା । ବୃଦ୍ଧ ପୂଜକ ନିଜର ପ୍ରାତଃ କୃତ୍ୟକର୍ମ ଶେଷକରି ନିଜର ଶକ୍ତି ଅନୁଯାୟୀ କିଛି ପୂଜା ସାମଗ୍ରୀ ସଙ୍ଗରେ ନେଇ ପ୍ରତିଦିନ ପୂଜାର୍ଚ୍ଚନା କରୁଥାନ୍ତି । ପ୍ରଭାତ ସମୟରେ ପୂଜକ ମାଁଙ୍କ ପାଖରେ ଉପସ୍ଥିତ ରହି ମହାବଳ ବାଘର ପାଦଚିହ୍ନ ଦେଖିବାକୁ ପାଉଥାନ୍ତି । ବେଳେ ବେଳେ ବାଘଟିକୁ ପ୍ରତ୍ୟକ୍ଷ ଭାବେ ଦର୍ଶନ କରୁଥାନ୍ତି । ବାଘର ସଙ୍କେତରୁ ପୂଜକ ଅନୁମାନ କରନ୍ତି ଯେ ଏହି ମୂର୍ତ୍ତି କେବଳ ଜଗତ୍ ଜନନୀ ମା' ବନଦୁର୍ଗା । ଏପରି ଭାବି ପୂଜକ ବନର ଅଧିଷ୍ଠାତ୍ରୀ ଦେବୀ ମାଁ ବନଦୁର୍ଗାଙ୍କ ନାମରେ ପୂଜାର୍ଚ୍ଚନା କରିବା ଆରମ୍ଭ କରିଦେଲେ । ଏହିପରି କିଛିଦିନ ଅତିବାହିତ ହେବାପରେ ସ୍ୱୟଂ ମାଁ ଜଗଦମ୍ବା ପୂଜକଙ୍କୁ ନିଦ୍ରିତାବସ୍ଥାରେ ସ୍ୱପ୍ନାଦେଶ ଦେଇ କହିଲେ ହେ ପୂଜକ ମୋତେ ବନଦୁର୍ଗା ନାମରେ ପୂଜା ନକରି ମାଁ ସିଂହବାହିନୀ ବା ସିଂହାସିନୀ ନାମରେ ପୂଜାକର । ମୋର ଏହି ନାମଟି ଜଗତରେ ବିଖ୍ୟାତ ହେବ ଏବଂ ଉକ୍ତ ନାମଟି ଜୀବ ଥରେ ମାତ୍ର ଉଚ୍ଚାରଣ କଲେ ତାହାର ସର୍ବାରିଷ୍ଟ ଖଣ୍ଡନ ହେବ ।

ଶ୍ରୀ ଦୁର୍ଗା ସପ୍ତଶତୀ (ଚଣ୍ଡୀ) ଦ୍ୱିତୀୟ ଅଧ୍ୟାୟରେ ଉଲ୍ଲେଖ ଅଛି—

"ଚଚଲା ବସୁଧା ଚେଲୁଃ ସକଳାଶ୍ଚ ମହୀଧରାଃ
ଜୟେତି ଦେବାଶ୍ଚ ମୁଦା ତାମୁଚୁଃ ସିଂହବାହିନୀମ୍ ।"

ଯେତେବେଳେ ମା' ଦୁର୍ଗା ମହିଷାସୁର ସହ ସୈନ୍ୟଙ୍କୁ ମାରିବା ନିମନ୍ତେ ଗର୍ଜନ କରି ଉଠିଲେ, ଠିକ୍ ସେତିକିବେଳେ ପୃଥିବୀ ଟଳମଳ ହେବାକୁ ଲାଗିଲା, ଆକାଶ ଥରିବାରେ ଲାଗିଲା ଏବଂ ପର୍ବତମାନ ଦୋହଲି ଉଠିଲା ସେତେବେଳେ ଦେବତାମାନେ ସିଂହବାହିନୀ ନାମ ଉଚ୍ଚାରଣ କରି ଜୟ ଜୟ ଧ୍ୱନୀ ଦେଇଥିଲେ ଏବଂ ଶାନ୍ତି ଲଭିଥିଲେ । ଏଣୁ ସିଂହବାହିନୀ ବା ସିଂହାସନୀ ନାମଟି ପ୍ରଚଳିତ ଅଟେ ।

ପରେ ପରେ ସିଂହାସନୀ ନାମଟି ପ୍ରସିଦ୍ଧ ହେବାକୁ ଲାଗିଲା । ମାଁଙ୍କ କରୁଣା ଲାଭକରି କେତେ ଅନ୍ଧ ଚକ୍ଷୁ ଲାଭକଲେ, ବଧିରମାନେ ଶୁଣିବାକୁ ପାଇଲେ, ମୂକମାନେ କଥା କହିଲେ, ଅପୁତ୍ର ଜନମାନେ ପୁତ୍ର ଲାଭକଲେ ଏହିପରି ଅସାଧ୍ୟ କାର୍ଯ୍ୟ ସାଧନ କରିପାରିଲେ । ମାଁଙ୍କ ମହିମା ଶୁଣି ଆଠଗଡ଼ ରାଜା ବୃନ୍ଦାବନ ହରିଚନ୍ଦନ ଜଗଦେବ ସ୍ୱୟଂ ଦେବୀ ପୀଠକୁ ଯାଇ କଳା ମୁଗୁନି ପଥର ଦେଖି ମା' ବିମଳାଙ୍କ ଅଂଶ ବିଶେଷ ବୋଲି ପୂଜାର୍ଚ୍ଚନା କରି ଯାଗ ଯଜ୍ଞାଦି କାର୍ଯ୍ୟ ନିଜ କୁଳ ପୁରୋହିତଙ୍କ ପରାମର୍ଶ କ୍ରମେ କରାଇଲେ ଏବଂ ତତ୍ସଙ୍ଗେ ସଙ୍ଗେ ମାଁଙ୍କ ଅମୃତ ମଣୋହି ନିମନ୍ତେ ୧୨ ଏକର ଜମି ଦାନ ସ୍ୱରୂପ ଖଞ୍ଜି ଦେଇଥିଲେ । ଏତଦ୍ ବ୍ୟତୀତ ଆଠଗଡ଼ର ଆରାଧ୍ୟ ଦେବୀ ନାମେ ଘୋଷିତକରି ପୂଜାରୀଙ୍କୁ ରଥିବଡ଼ଜେନା ଉପାଧିରେ ଭୂଷିତ କରିଥିଲେ ।

ଦିନକର ଘଟଣା ପୂଜକ ଚାଷ କରିବା ପାଇଁ ଜମିକୁ ବଳଦ ଲଙ୍ଗଳ ଧରି ଯାଇଥିଲେ । କିଛି ସମୟ ପରେ ବଳଦକୁ ଫିଟାଇ ଠାକୁରାଣୀଙ୍କ ପୂଜା କରିବା ନିମନ୍ତେ ଚାଲିଗଲେ । ପୂଜାବିଧି ସାରି କ୍ଷେତରେ ପହଞ୍ଚି ଦେଖିଲେ ଯେ ବଳଦ ଗୋଟିକୁ ମହାବଳ ବାଘ ନେଇ ଯାଇଛି । ପୂଜକ ବଳଦକୁ ବାଘ ଖାଇଦେବା ଜାଣି ମନଦୁଃଖରେ ଘରକୁ ଫେରି ପରଦିନ ଠାକୁରାଣୀ ମାଁଙ୍କ ଉପରେ ଅଭିମାନ ବଶତଃ ଭୋଗ ବନ୍ଦ କରିଦେଲେ । ଉକ୍ତ ରାତିରେ ମାଁ ସିଂହାସନୀ ପୂଜକଙ୍କୁ ସ୍ୱପ୍ନାଦେଶ ଦେଇ କହିଲେ, "ତୁମେ ପ୍ରଭାତରୁ ତୁମର ଥିବା ଗୋଟିଏ ବଳଦକୁ ନେଇ କ୍ଷେତକୁ ଯାଅ ।" ମାଁଙ୍କ ସ୍ୱପ୍ନାଦେଶ ପ୍ରକାରେ ପୂଜକ ବଳଦଟିକୁ ଧରି କ୍ଷେତକୁ ଯିବାମାତ୍ରେ ଗୋଟିଏ ମହାବଳ

ବାଘ ବଳଦ ସହ ତାଳଦେଇ ବୃକ୍ଷ କାର୍ଯ୍ୟରେ ଲଗିଦେଉଥିଲା । ଏହି ଘଟଣା ନିକଟବର୍ତ୍ତୀ ଗ୍ରାମବାସୀ ଏବଂ ଜମିଦାର ବାବୁ ପ୍ରତ୍ୟକ୍ଷରୂପେ ଦର୍ଶନ କରିଥିଲେ । ଏହିଦୃଶ୍ୟ ଦେଖିବା ପରେ ଜମିଦାର ବାବୁ ପୂଜାରିଙ୍କୁ ଗୋଟିଏ ବଳଦ ଦାନ ବାବଦରେ ପ୍ରଦାନ କରିଥିଲେ । ସେହିଦିନ ଠାରୁ ଅଳସୁଆ ବେଳେବେଳେ ମହାବଳ ବାଘ ଆସି ମାଁଙ୍କ ସମ୍ମୁଖରେ ଶୋଇଥାଏ ବୋଲି ପୂଜକ କହୁଛନ୍ତି ।

ଏହାର କିଛିଦିନ ପରେ ଖଲ୍ଲିକୋଟ ରଜା ବାହାଦୁର ହରିହର ମର୍ଦ୍ଦରାଜଙ୍କ ରାଜୁତି ସମୟରେ ମାଁ ସିଂହାସନୀ ପୀଠ ପାହାଡ଼ ଠାରୁ ଉତ୍ତର ପଶ୍ଚିମ ଦିଗରେ କୁଣ୍ଡାଖାଇ ନାମକ ଅନ୍ୟ ଏକ ପାହାଡ଼ ପର୍ଯ୍ୟନ୍ତ ବିରାଟ ବନ୍ଧଟିଏ ବାନ୍ଧିଥିଲେ । ତାହାକୁ ନିବଶପଲ୍ଲୀ ବନ୍ଧ ବୋଲି କୁହାଯାଉଅଛି । ସେହି ବନ୍ଧଟି ଯେତେବେଳେ ସମ୍ପୂର୍ଣ୍ଣ ଜଳପୂର୍ଣ୍ଣ ହୋଇଯାଏ ସେତେବେଳେ ମାଁଙ୍କ ପୀଠକୁ ଯିବା ରାସ୍ତାଟି ପାଣିରେ ବୁଡ଼ିଯିବା ଯୋଗୁଁ ଗମନାଗମନ ହୋଇପାରୁନଥାଏ । ଯାଫଳରେ ମାଁଙ୍କ ପୂଜାର୍ଚ୍ଚନା ଦିନେ ବନ୍ଦହୋଇଗଲା । ଗୋଟିଏ ଦିନ ପୂଜା ବନ୍ଦ ହୋଇଯିବାରୁ ସେହି ରାତିରେ ପୂଜକଙ୍କୁ ମାଁ ସ୍ୱପ୍ନରେ କହିଲେ କେବେହେଲେ ମଧ୍ୟ ମୋର ପୂଜା ବନ୍ଦ କରିବୁ ନାହିଁ । ଯେ କୌଣସି ବାଧାବିଘ୍ନ ଆସିଲେ ମୁଁ ତାହା ଦୂର କରିବି । ସତକୁ ସତ ବନ୍ଧଟି ଭାଙ୍ଗିଯାଇ ଶୁଷ୍କ ଅବସ୍ଥାରେ ପଡ଼ିରହିଛି । ଏଥିରେ ସମସ୍ତେ ଆଶ୍ଚର୍ଯ୍ୟ ହୋଇ ମାଁ ସିଂହାସନୀଙ୍କ ଜୟଧ୍ୱନୀ କରିଥିଲେ । ସେହିଦିନ ଠାରୁ ପୂଜକ ମାଁଙ୍କ ପୂଜାର୍ଚ୍ଚନା ଦିନେ ମାତ୍ର ବନ୍ଦ କରିନାହାନ୍ତି । ବର୍ତ୍ତମାନ ମାଁଙ୍କ ପୀଠ ଅତୀବ ପବିତ୍ର ଓ ଶାନ୍ତମୟ । ଘଞ୍ଚ ଜଙ୍ଗଲ ତଥା ଆଦିବାସୀଙ୍କ ଗହଣରେ ମାଁଙ୍କ ଅଧିଷ୍ଠାନ । ପ୍ରତିଦିନ ଭକ୍ତଙ୍କ ଭିଡ଼ ଲାଗି ରହୁଛି । ଭକ୍ତଙ୍କର ମନସ୍କାମ ମାଁ ସିଂହାସନୀଙ୍କ କୃପାରୁ ପୂରଣ ହୋଇ ପାରୁଛି । ବର୍ତ୍ତମାନ ପ୍ରତ୍ୟେକ ଛୁଟିଦିନ, ସଂକ୍ରାନ୍ତି, ମଙ୍ଗଳବାର ମାନଙ୍କରେ ଭକ୍ତମାନେ ମାଁଙ୍କ ପୀଠରେ ରୁଣ୍ଡହୋଇ ନିଜର କାମନା ଚରିତାର୍ଥ କରନ୍ତି ।